ଉପଯୋଗୀ 'ଉଡ୍ର' ଭାଷାର ପ୍ରୟୋଗ ଶାସ୍ତ୍ରସମ୍ମତ ବା ବିଧିସମ୍ମତ ବୋଲି ଭରତମୁନି ଉଲ୍ଲେଖ କରିଛନ୍ତି । ହୁଏନସାଂଙ୍କ ବିବରଣୀ, ପୁରୁଷୋତ୍ତମ ଦେବଙ୍କ ପ୍ରାକୃତ ବ୍ୟାକରଣ, ଅନିରୁଦ୍ଧ ଭଟ୍ଟଙ୍କ ପ୍ରାକୃତ କଳ୍ପତରୁ ଉଡ୍ର, ଉଡ୍ରୀ, ଉତ୍କଳୀ ଇତ୍ୟାଦି ଭାଷାର ବୈଶିଷ୍ଟ୍ୟ ସମ୍ବନ୍ଧରେ ବହୁ ପ୍ରାଚୀନ କାଳରୁ ସୂଚନା ପ୍ରଦାନ କରିଛନ୍ତି । ତେଣୁ କେହି କେହି ପଣ୍ଡିତ ଓଡ଼ିଆ ଭାଷାର ବୟସକୁ ଚର୍ଯ୍ୟାଗୀତ ପରବର୍ତ୍ତୀ ବୋଲି କହୁଥିବା ବେଳେ ସେମାନେ ଯେ ଏହି ଭାଷାଟିର ବିକାଶରୁ ମୂଳଯାଏ ପହଞ୍ଚିବାକୁ ପ୍ରୟାସ କରିନାହାନ୍ତି, ଏହା ସ୍ପଷ୍ଟ ।

ଦୁଇହଜାର ବର୍ଷରୁ ଆହୁରି ପ୍ରାଚୀନ ଓଡ଼ିଆ ଭାଷା ନିଜର ବୈଶିଷ୍ଟ୍ୟ ପାଇଁ ସେତେବେଳେ ଯେମିତି ପଣ୍ଡିତମାନଙ୍କ ଦୃଷ୍ଟି ଆକର୍ଷଣ କରି ଆଲୋଚନାର ପରିସରକୁ ଆସିଥିଲା, ପଞ୍ଚଦଶ ଶତାବ୍ଦୀ, ଷୋଡଶ ଶତାବ୍ଦୀ, ଅଷ୍ଟାଦଶ ଶତାବ୍ଦୀରେ ସେହିପରି ଦୂରଦର୍ଶୀ ପଣ୍ଡିତଙ୍କ ଉପେକ୍ଷାର ଶିକାର ହୋଇ ସଙ୍କଟର ସମ୍ମୁଖୀନ ହୋଇଥିଲା । କିନ୍ତୁ ସାରଳା ଦାସ, ଜଗନ୍ନାଥ ଦାସ, ଉପେନ୍ଦ୍ର ଭଞ୍ଜଙ୍କ ପରି ମହାନ୍ ସ୍ରଷ୍ଟାମାନଙ୍କ ନେତୃତ୍ୱରେ ଓଡ଼ିଆ ଭାଷାଭାଷୀ ସାଧକମାନେ ଏହାର ବୈଶିଷ୍ଟ୍ୟକୁ ପ୍ରମାଣ କରିବା ସହ ସମୃଦ୍ଧି ଓ ବିକାଶ ପାଇଁ ପଥ ପରିଷ୍କାର କରିଦେଇ ଗଲେ । ଏସବୁ ପ୍ରୟାସର ଆଧାରରେ ବିଂଶ ଶତାବ୍ଦୀର ଆରମ୍ଭରେ ଆଉ ଜଣେ ସେନାପତିଙ୍କ ନେତୃତ୍ୱରେ ଯେଉଁ ଲଢେଇ ହେଲା ଓଡ଼ିଆ ଭାଷା ବିଲୋପ ପାଇଁ ଚକ୍ରାନ୍ତରୁ ପୁଣି ଏ ଭାଷା ବଞ୍ଚିଗଲା ।

ଏସବୁ କଥା ଉଲ୍ଲେଖ କରିବାର ଉଦ୍ଦେଶ୍ୟ ହେଉଛି, ଓଡ଼ିଆ ଭାଷାର ଆଜିର ସ୍ୱରୂପ ଆଧାରରେ ବୈଶିଷ୍ଟ୍ୟ ଆଲୋଚନା କରିବାକୁ ଗଲାବେଳେ ଏହି ଭାଷାଟି ଯେ ଆରମ୍ଭର ନିଜର ସ୍ୱାତନ୍ତ୍ର୍ୟ ପାଇଁ ଦୁଇହଜାରରୁ ଅଧିକ ବର୍ଷ ପୂର୍ବରୁ ନିଜପାଇଁ ପରିଚୟ ସୃଷ୍ଟି କରିସାରିଛି, ଏହା ସ୍ୱୀକାର କରିବାକୁ ହେବ ।

ଭାଷାର ସ୍ୱଧର୍ମ ପରିବର୍ତ୍ତନଶୀଳତା ଓ ଆହରଣ ଦକ୍ଷତା ହେତୁ ପୃଥିବୀର ଅନ୍ୟ ଭାଷାମାନଙ୍କ ପରି ଓଡ଼ିଆ ଭାଷା ମଧ୍ୟ ଆଙ୍ଗିକ ଓ ଆତ୍ମିକ ଭାବେ ବହୁ ପରିବର୍ତ୍ତନର ପଥ ଦେଇ ଆସିଛି ଏବଂ ନିଜ ବିକାଶ ପଥରେ ଅନେକ କିଛି ହଜେଇ ଆସିଥିବା ବେଳେ ଅନେକ ନୂଆ ନୂଆ ଉପାଦାନ ଆହରଣ କରି ନିଜକୁ ସମୃଦ୍ଧ ଓ ସ୍ୱତନ୍ତ୍ର କରି ଚାଲିଛି । ବର୍ତ୍ତମାନ ପ୍ରଚଳିତ ଓଡ଼ିଆ ଭାଷାର ବୈଶିଷ୍ଟ୍ୟ ସମ୍ବନ୍ଧରେ କେତୋଟି ନିର୍ଦ୍ଦିଷ୍ଟ ତଥ୍ୟ ଭିତ୍ତିକ ଆଲୋଚନା କରାଯାଇପାରେ ।

### ଧ୍ୱନିତାତ୍ତ୍ୱିକ ବୈଶିଷ୍ଟ୍ୟ

ସ୍ୱର: ଓଡ଼ିଆ ଭାଷାରେ ପ୍ରଚଳିତ ବର୍ଣ୍ଣମାଳାରେ ୧୩ଟି ସ୍ୱରବର୍ଣ୍ଣର ଉଲ୍ଲେଖ ରହିଛି: ଅ, ଆ, ଇ, ଈ, ଉ, ଊ, ଋ, ୠ, ଌ, ଏ, ଐ, ଓ, ଔ ।

ଏଥିରୁ (ଌ ଲୁ) ସମ୍ପ୍ରତି ବର୍ଣ୍ଣମାଳାରେ ପ୍ରୟୋଗ ହେଉନାହିଁ ।

ଏଥିପୂର୍ବରୁ ୡ (ଦୀର୍ଘ 'ଲୁ')ର ଉଲ୍ଲେଖ ଲୋପପାଇ ସାରିଥିଲା ।

ହ୍ରସ୍ୱ 'ଋ' କେତେକ ସ୍ଥଳରେ ବ୍ୟବହାର ହେଉଛି– ଋଷି ।

ଦୀର୍ଘ 'ୠ'ର ପ୍ରୟୋଗ ଓଡ଼ିଆ ଭାଷାରେ ଆଦୌ ନାହିଁ ।

ଏତଦ୍‌ବ୍ୟତୀତ 'ଋ' ଉଚ୍ଚାରଣ ବ୍ୟଞ୍ଜନ ଲୋଡିତ (ର+ଉ) ସହ ସମାନ ।

ଏହାର ସ୍ୱରଗୁଣ ନଥିଲେ ମଧ୍ୟ ବ୍ୟାବହାରିକ ଦୃଷ୍ଟିରୁ ଏହା ଅନ୍ୟ ସ୍ୱରଧ୍ୱନି ପରି କୌଣସି ସ୍ୱରମାତ୍ରା ଗ୍ରହଣ କରେ ନାହିଁ । ଯେପରି ରା, ରି, ରୁ, ରେ, ରୋ, ରୈ, ରୌ ଇତ୍ୟାଦି ସମ୍ଭବ, ସେପରି ୠା, ୠି, ୠୁ, ୠେ, ୠୋ, ୠୈ, ୠୌ ଆଦୌ ସମ୍ଭବ ନୁହେଁ । ପରିବର୍ତ୍ତିତ ପରିସ୍ଥିତିରେ ଓଡ଼ିଆ ଭାଷାରେ ଏହାର ଉଚ୍ଚାରଣରେ ପ୍ରଥମରୁ 'ର୍' ସହିତ 'ଉ' ସ୍ୱରଧ୍ୱନିର ମିଶ୍ରଣ ହେଉଥିବାରୁ ଆଉ ଏକ ସ୍ୱରମାତ୍ରା ଗ୍ରହଣ ସମ୍ଭବ ନୁହେଁ ।

ଏହି ଧ୍ୱନିଟିକୁ ସ୍ୱରବର୍ଣ୍ଣ ଶ୍ରେଣୀରେ ରଖାଯାଇଥିଲେ ମଧ୍ୟ ଏହା ଓଡ଼ିଆ ଭାଷାର ଅବର୍ଗ୍ୟ ବର୍ଣ୍ଣକୁ ଯାଇପାରେ ।

**୧. ଭରତ ମୁନି: ନାଟ୍ୟଶାସ୍ତ୍ର (ଅ–୧୩) ଏବଂ (ଅ–୬)**

ଓଡ଼ିଆ ଭାଷାରେ 'ଇ' ଏବଂ 'ଉ' ଧ୍ୱନିର ଦୀର୍ଘ ଉଚ୍ଚାରଣ ନାହିଁ । ପ୍ରାସଙ୍ଗିକ ଭାବେ ହ୍ରସ୍ୱ 'ଇ' 'ଉ'ର ଦୀର୍ଘ ଉଚ୍ଚାରଣ ବ୍ୟବହାରରେ ଉପଲବ୍ଧ, ଯଥା: ଛି(ଇଇ), ତୁ (ଉଉ) । ଏହା ଭଙ୍ଗୀବା ଶୈଳୀ ମାତ୍ର, ସ୍ୱତନ୍ତ୍ର ପ୍ରୟୋଗ ନୁହେଁ । କେବଳ ଲିପିରେ ପାରମ୍ପରିକ ଭାବେ 'ଈ', 'ଊ' ଏବଂ 'ୀ' ଓ 'ୂ' କାରର ପ୍ରୟୋଗ ଉପଲବ୍ଧ । ଲିପି ଓ ଧ୍ୱନି ମଧ୍ୟରେ ଅସମାନତା ଅନେକ ଭାଷାର ସ୍ୱାଭାବିଭ ଲକ୍ଷଣ । ଭାରଣ ଧ୍ୱନି ପରିବର୍ତ୍ତନ ଲୋକମୁଖରେ ଯେତିକି ସମୟରେ ହୋଇଥାଏ, ତା'ର ବହୁଗୁଣ ସମୟ ଲିପି ପରିବର୍ତ୍ତନ ପାଇଁ ଲାଗିଥାଏ । ଇଂରାଜି ପରି ଭାଷାରେ ଲିପି ସହ ଧ୍ୱନିର ସମ୍ବନ୍ଧ ଆଦୌ ଗଭୀର କିମ୍ୱା ନିବିଡ ନୁହେଁ, ବରଂ ସ୍ଥଳ ବିଶେଷରେ ଆଶ୍ଚର୍ଯ୍ୟ ଭାବେ ଅସମ୍ବନ୍ଧିତ । (Know, no, Put, but....)

ଓଡ଼ିଆ ଭାଷାରେ ବର୍ତ୍ତମାନ ପ୍ରଚଳିତ ଧ୍ୱନି ବ୍ୟବସ୍ଥାକୁ ବିଚାର କଲେ ଏଥିରେ ୬ଟି ଶୁଦ୍ଧସ୍ୱର ଏବଂ ୨ଟି ସଂଯୁକ୍ତ ସ୍ୱରର ବ୍ୟବହାର ଉପଲବ୍ଧ ହୁଏ । ଯଥା: ଅ, ଆ, ଇ, ଉ, ଏ, ଓ, ଐ, ଔ ।

ଏହି ଧ୍ୱନିଗୁଡିକର ପ୍ରତିନିଧିତ୍ୱ କରିବାକୁ 'ଇ' ଏବଂ 'ଉ'ର ଦୁଇ ଦୁଇଟି ଲିପି ମିଳେ । ଯଥା– 'ଇ' ଏବଂ 'ଈ', 'ଉ' ଏବଂ 'ଊ' । ପାରମ୍ପରିକ ଭାବେ ଏ ଲିପି ଏବଂ ଏହାର ମାତ୍ରା ବା କାର ମଧ ଗୃହୀତ ହୋଇଛି । ହ୍ରସ୍ୱ, ଦୀର୍ଘ ଭେଦ ଲୋକଙ୍କ ଉଚ୍ଚାରଣରେ ଉପଲବ୍ଧ ନୁହେଁ ।

ଓଡ଼ିଆ ସ୍ୱରଧ୍ୱନିଗୁଡିକର ମାତ୍ରା ବା କାରଗୁଡିକ ନିମ୍ନମତେ ସୂଚିତ ହୁଅନ୍ତି ।

ଅ: ମାତ୍ରା ନାହିଁ

ଆ: ା (ଦକ୍ଷିଣ ପାର୍ଶ୍ୱରେ ବ୍ୟବହୃତ ହୁଏ– କା)

ଇ: ି (ଉପରେ–କି)

ୢ (ନିମ୍ନରେ – ଖ୍ରି)

ଈ: ୀ (ଦକ୍ଷିଣ ପାର୍ଶ୍ୱରେ– କୀ)

ଉ: ୁ (ନିମ୍ନରେ– କୁ)

ଊ: ୂ (ନିମ୍ନରେ– କୂ)

ଏ: େ (ବାମରେ– କେ)

ଐ: ୈ (ବାମ ଏବଂ ଉପରେ– କୈ)

ଓ: ୋ (ଉଭୟ ପାର୍ଶ୍ୱରେ– କୋ)

ଔ: ୌ (ଉଭୟ ପାର୍ଶ୍ୱ ଏବଂ ଉପରେ– କୌ)

ଦ୍ରଷ୍ଟବ୍ୟ: 'ର' ପାଇଁ ବ୍ୟବହୃତ ମାତ୍ରାକୁ କାର ଏବଂ ଫଳା ଉଭୟ ଭାବେ ପରିଚୟ କରାଯାଏ, ଯଦିଓ ସ୍ୱରମାତ୍ରାକୁ 'କାର' ଓ ବ୍ୟଞ୍ଜନ ମାତ୍ରାକୁ 'ଫଳା' କୁହାଯାଏ । 'ର' ପାଇ ବ୍ୟବହୃତ ମାତ୍ରା 'ୃ' (ରକାର/ଫଳା) – (ନିମ୍ନ: କୃ) ମାତ୍ରା ପ୍ରୟୋଗ ପାଇଁ ବ୍ୟବହୃତ ଲିପିରେ ଓଡ଼ିଆ ଭାଷାର ସ୍ୱାତନ୍ତ୍ର୍ୟ ସ୍ପଷ୍ଟ । ଓଡ଼ିଆ ଇ/ୢ, ବଙ୍ଗଳା/ହିନ୍ଦୀ ି (ବାମପାଖ) ଏ: େ (ଓ), ହିନ୍ଦିରେ, ଐ: ୈ (ଓ), ଛ (ବଂ), (ହି) ।

ଇଂରାଜୀ ଭାଷାରେ ବ୍ୟବହୃତ ଧ୍ୱନି ଓ ଲିପି ବ୍ୟବସ୍ଥାକୁ ସହଜବୋଧତା ପାଇଁ ଉଦାହରଣ ଭାବେ ନିଆଯାଇପାରେ । ସେହି ଭାଷାରେ ୧୨ଟି ଶୁଦ୍ଧ ସ୍ୱରଧ୍ୱନି ଏବଂ ୯ଟି ସଂଯୁକ୍ତ ସ୍ୱରଧ୍ୱନିର ବ୍ୟବହାର ଅଛି । ଧ୍ୱନିବିତ୍ ଜୋନ୍‌ସ ତାଙ୍କ ଅଭିଧାନରେ ୨୪ଟି ସ୍ୱର ଧ୍ୱନିର ଉଲ୍ଲେଖ କରିଥିଲେ ମଧ ଷ୍ଟାଣ୍ଡାର୍ଡ ଇଂରେଜ ବୁଝିବା ପାଇଁ ପ୍ରଫେସର ଗୋଲୋକ ବିହାରୀ ଧଳ ଇଂରେଜିରେ ୨୧ଟି ସ୍ୱରଧ୍ୱନି ପାଇଁ ମାତ୍ର ୫ଟି ସ୍ୱରଲିପି ବ୍ୟବହାରର ଉଦାହରଣ ପ୍ରଦାନ କରିଛନ୍ତି । ଏ ଦୃଷ୍ଟିରୁ ଓଡ଼ିଆ ଭାଷାରେ ୮ଟି ସ୍ୱରଧ୍ୱନି ପାଇଁ ୧୦ଟି ଧ୍ୱନି ଓ ୧୦ଟି ମାତ୍ରାର ବ୍ୟବସ୍ଥା ଅଛି । (ଅ'ର ନାହିଁ, ଇ'ର ୨ଟି) ।

୧. ପ୍ରଫେସର ଗୋଲୋକ ବିହାରୀ ଧଳ: ଇଂରେଜି ଉଚ୍ଚାରଣ ଶିକ୍ଷା (ଦ୍ୱିତୀୟ ମୁଦ୍ରଣ– ୧୯୭୨) ପୃ. ୧୧ ।

ଓଡ଼ିଆ ଭାଷାର ସ୍ୱରଧ୍ୱନିଗୁଡିକର ଉଚ୍ଚାରଣ ଅନ୍ୟ ଭାରତୀୟ ଭାଷାର ଉଚ୍ଚାରଣଠାରୁ ସ୍ୱତନ୍ତ୍ର । ପଡୋଶୀ ଆନ୍ଧ୍ରରେ ଦ୍ରାବିଡ ଗୋଷ୍ଠୀର ସ୍ୱରଧ୍ୱନିଗୁଡିକ ଅପେକ୍ଷାକୃତ

ଦୀର୍ଘ ଉଚ୍ଚାରିତ ହେଉଥିବାବେଳେ ଓଡ଼ିଆ ସ୍ୱରଧ୍ୱନିଗୁଡିକ ପ୍ରାୟତଃ ହ୍ରସ୍ୱ ଉଚ୍ଚାରିତ ହୁଏ । ଏପରିକି ଦୀର୍ଘ ଈ ଏବଂ ଦୀର୍ଘ ଊ ମଧ୍ୟ ହ୍ରସ୍ୱଭାବେ ଉଚ୍ଚାରିତ ହୁଏ ।

ପଡୋଶୀ ବଙ୍ଗଳା ଭାଷାରେ 'ଅ' ପ୍ରାୟତଃ ଗୋଲାକୃତ 'ଓ'ର ନିକଟବର୍ତ୍ତୀ ଭାବେ ଉଚ୍ଚାରିତ ହେଉଥିବା ବେଳେ ଓଡ଼ିଆ ଭାଷାରେ ପୂର୍ଣ୍ଣତଃ ଉଦାସୀନ ଧ୍ୱନି, 'ଆ' ଏକ ଦୀର୍ଘଧ୍ୱନିଭାବେ ସଂସ୍କୃତ ଓ ଅନ୍ୟ କେତେକ ଭାଷାରେ ବିବେଚିତ ହେଉଥିବାବେଳେ ଓଡ଼ିଆରେ ଏହାର ଦୀର୍ଘତା ଅନୁଭୂତ ହୁଏ ନାହିଁ । (କମ, କାମ– ଉଭୟର ଉଚ୍ଚାରଣରେ ସ୍ୱରଧ୍ୱନି ସମାନ ଭାବେ ଉଚ୍ଚାରିତ ହୁଏ । କା (ଆ) ମ ବୋଲି ଦ୍ରାବିଡ ଭାଷା ପରି ଉଚ୍ଚାରିତ ହୁଏ ନାହିଁ ।

ଓଡ଼ିଆ ବର୍ଣ୍ଣମାଳା ସ୍ୱରପର୍ଯ୍ୟାୟରେ ଉଲ୍ଲିଖିତ 'ଋ', 'ୠ' ମଧ୍ୟରୁ ଦୀର୍ଘ 'ୠ' ଲୋକ ପାଇବା ସହ 'ଋ' (ରୁ) ଉଚ୍ଚାରଣ ଅନ୍ୟ ଆର୍ଯ୍ୟଭାଷାଠାରୁ ସମ୍ପୂର୍ଣ୍ଣ ସ୍ୱତନ୍ତ୍ର । (ଋଷି: ଅନ୍ୟ ଭାଷାରେ ରିଷି, ଓଡ଼ିଆରେ– ରୁଷି) ।

'ଌ' ହ୍ରସ୍ୱ ଓ ଦୀର୍ଘ ଉଭୟ ସଂସ୍କୃତ ଭାଷାରେ ସୁରକ୍ଷିତ ଥିଲେ ମଧ୍ୟ ଓଡ଼ିଆ ଭାଷାରେ ବର୍ଣ୍ଣମାଳାରେ ଆଦୌ ନାହିଁ ।

ଐ: ଉତ୍ତର ଭାରତୀୟ ଭାଷାରେ ପ୍ରାୟତଃ 'ଏଇ' ଉଚ୍ଚାରିତ ହେଉଥିବା ବେଳେ ଓଡ଼ିଆରେ 'ଅଇ' (ବୈଶାଖ– ବଇଶାଖ, ଐରାବତ–ଅଇରାବତ) ଉଚ୍ଚାରିତ ହୁଏ ।

ଔ: ଏ ଧ୍ୱନିଟି 'ଅଉ' ନହୋଇ 'ଓଉ'ର ମିଶ୍ରିତ ଧ୍ୱନିଭାବେ ଉଚ୍ଚାରିତ ହୁଏ ।

(କୌଶଳ– କୋଉଶଳ: ଲେଖିବାବେଳେ ଅନେକତ୍ର 'କଉଶଳ' ପଦ୍ୟ– ପ୍ରୟୋଗ ଥିଲେ ମଧ୍ୟ ଲୋକମୁଖରେ 'ଓ' ଧ୍ୱନିର ଉଚ୍ଚାରଣ ସ୍ପଷ୍ଟ ।)

ପ୍ରସଙ୍ଗ କ୍ରମେ ଏ ସମସ୍ତ ଧ୍ୱନି ପାଇଁ ପ୍ରତିନିଧିତ୍ୱ କରୁଥିବା ଲିପିଗୁଡିକ ସ୍ପଷ୍ଟଭାବେ ଅନ୍ୟ ସମସାମୟିକ ଭାଷାର ଲିପିଠାରୁ ସ୍ୱତନ୍ତ୍ର, ଏହାର ଗୋଟିଏ ଦୁଇଟି ଉଦାହରଣ ଉପସ୍ଥାପନ କରାଯାଇପାରେ ।

ଉତ୍ତର ଭାରତର ଅନ୍ୟାନ୍ୟ ପ୍ରାନ୍ତରେ ବ୍ୟବହୃତ ଲିପିର ଉପରଭାଗ ସରଳରେଖା ହୋଇଥିବାବେଳେ ଓଡ଼ିଆ ଲିପିର ଉପରି ଭାଗ ଗୋଲାକୃତ । କେତେକ ଭାଷାବିତ୍ ଏହାକୁ ଦ୍ରାବିଡ ଲିପିର ପ୍ରଭାବ ବୋଲି ମତ ବ୍ୟକ୍ତ କରିଥାନ୍ତି । କିନ୍ତୁ ଲକ୍ଷ୍ୟ କରିବାର କଥା ଯେ, ଦ୍ରାବିଡ ଲିପିର ଅଧିକତର ନିମ୍ନଭାଗ ଗୋଲାକୃତ ଏବଂ ଉପର ଭାଗ ଖୋଲାଥିବାବେଳେ ଓଡ଼ିଆ ଲିପିର ଗଠନରେ ଏହାର ବିପରୀତ ଲକ୍ଷଣ ଉପଲବ୍ଧ, ଯଥା: (ତେ), ର (ଓ), (ତେ), ଈ(ଓ) ।

ଏହାଛଡା ପଡୋଶୀ ଦ୍ରାବିଡ ପରିବାରର ତେଲୁଗୁ ଭାଷାରେ 'ଅ' ଧ୍ୱନି ପ୍ରାୟତଃ ସ୍ୱତନ୍ତ୍ର ଭାବେ ଉଚ୍ଚାରିତ ହୁଏ ନାହିଁ । ବରଂ ଏହି ଭାଷାରେ ହ୍ରସ୍ୱ, ଦୀର୍ଘ ଭେଦରେ ଦୁଇଟି 'ଆ', ଦୁଇଟି 'ଏ', ଦୁଇଟି 'ଓ' ଧ୍ୱନି ଉପଲବ୍ଧ । ପ୍ରାଚୀନ ସଂସ୍କୃତ ଭାଷା ପରି ହ୍ରସ୍ୱ 'ଋ' ଏବଂ ଦୀର୍ଘ 'ୠ' ଏବଂ ହ୍ରସ୍ୱ ଌ ଏବଂ ଦୀର୍ଘ ୡ ପାଇଁ ସ୍ୱତନ୍ତ୍ର ଲିପି ରହିଛି । ବର୍ତ୍ତମାନର ଓଡ଼ିଆ ଭାଷାରେ ସ୍ୱରବର୍ଣ୍ଣମାଳାରେ ୠ ଏବଂ ଌୡ ସମ୍ପୂର୍ଣ୍ଣ ଲୋପ ପାଇସାରିଛି ।

ଓଡ଼ିଆ ଭାଷାର ଉଚ୍ଚାରଣ ପଦ୍ଧତିରେ ଶବ୍ଦଗୁଡିକ ସ୍ୱରାନ୍ତ, ଯାହା ଉତ୍ତରଭାରତର ଅନ୍ୟାନ୍ୟ ଆର୍ଯ୍ୟଭାଷାଠାରୁ ସ୍ୱତନ୍ତ୍ର । ଶବ୍ଦର ଶେଷରେ 'ଅ' ସ୍ୱର ଧ୍ୱନି ସାଧାରଣଭାବେ ପ୍ରାୟତଃ ଅନ୍ୟ ଆର୍ଯ୍ୟଭାଷାମାନଙ୍କରେ ଲୋପ ପାଉଥିବା ବେଳେ ଓଡ଼ିଆ ଭାଷାରେ ଏପରି ହୁଏ ନାହିଁ । ଅନ୍ୟ ଭାଷାର ପ୍ରଭାବରେ ଓଡ଼ିଆ ଭାଷାର କଥିତ ରୂପରେ ଅନେକ ଶେଷ–ସ୍ୱରଧ୍ୱନି ଲୋପ ହେଉଥିବାବେଳେ ଏହାର ମୂଳ ଉଚ୍ଚାରଣ ବ୍ୟବସ୍ଥା ଏବେ ମଧ୍ୟ ଅନେକତ୍ର ସୁରକ୍ଷିତ । ଠିକ୍ ('ଠିକ୍' ନୁହେଁ), ଭୁଲ ('ଭୁଲ୍' ନୁହେଁ), ରାମବାବୁ ('ରାମ୍ବାବୁ' ନୁହେଁ), ଗୋପାଳ ('ଗୋପାଳ୍' ନୁହେଁ), ଏମିତି ଅନେକ ସ୍ୱରାନ୍ତ ଶବ୍ଦର ପ୍ରୟୋଗ ଉପଲବ୍ଧ । ବିଶେଷତଃ ଦକ୍ଷିଣାଞ୍ଚଳ ଓଡ଼ିଆରେ ଏହା ସ୍ପଷ୍ଟଭାବେ ଉଚ୍ଚାରିତ ହୁଏ । (ଭୁଲ (ଲ୍ଅ) ହୋଇଗଲା । ଠିକ୍ (କ୍ଅ) ୦ ବର୍ତ୍ତୁଳଚନ୍ଦ୍ରାନନା) ।

ଏହି ସ୍ୱଳ୍ପ କେତୋଟି ଉଦାହରଣ ସହ ଆଲୋଚନାରୁ ସ୍ପଷ୍ଟ ପ୍ରମାଣିତ ହୁଏ ଯେ ଓଡ଼ିଆ ଭାଷା ତା'ର ନିଜସ୍ୱ ସ୍ୱାତନ୍ତ୍ର୍ୟ ବା ବୈଶିଷ୍ଟ୍ୟକୁ ନେଇ ପରିପୁଷ୍ଟ ହୋଇଛି । ଦୁଇ ହଜାରରୁ ଊର୍ଦ୍ଧ୍ୱ ବର୍ଷ ମଧ୍ୟରେ ସମଗୋତ୍ରୀ ଆର୍ଯ୍ୟ ଭାଷା ଏବଂ ପଡୋଶୀ ଦ୍ରାବିଡ ଭାଷା ସହ ସମ୍ବନ୍ଧ ଓଡ଼ିଆ ଭାଷାର ସମୃଦ୍ଧିରେ ସହାୟକ ହୋଇଛି ସତ, କିନ୍ତୁ ଓଡ଼ିଆ ଭାଷାର ସ୍ୱାତନ୍ତ୍ର୍ୟକୁ ପ୍ରଭାବିତ କରି ପାରିନାହିଁ ।

ବ୍ୟଞ୍ଜନ: ପୃଥିବୀର ସବୁ ଭାଷା ପରି ଓଡ଼ିଆ ଭାଷାରେ ସ୍ୱର ଓ ବ୍ୟଞ୍ଜନ ଦୁଇ ପ୍ରକାର ଧ୍ୱନି ବ୍ୟବସ୍ଥା ରହିଛି । ଓଡ଼ିଆ ଭାଷାରେ ବ୍ୟଞ୍ଜନ ଧ୍ୱନିଗୁଡ଼ିକୁ ବର୍ଗ୍ୟ ଓ ଅବର୍ଗ୍ୟ ଏପରି ଦୁଇଟି ଶ୍ରେଣୀରେ ବିଭକ୍ତ କରାଯାଇ ସାଧାରଣ ଭାବେ ସ୍ପର୍ଶ ବ୍ୟଞ୍ଜନଗୁଡ଼ିକୁ ବର୍ଗ୍ୟ ବ୍ୟଞ୍ଜନ ଭାବେ ଚିହ୍ନିତ କରାଯାଇଛି । ଅବଶ୍ୟ ସ୍ପର୍ଶସଂଘର୍ଷୀକୁ ବର୍ଗ୍ୟ ଶ୍ରେଣୀଭୁକ୍ତ କରାଯାଇଥିବା ବେଳେ ସ୍ପର୍ଶ ପାର୍ଶ୍ୱିକ ଓ ଲୋଡିତ ଧ୍ୱନିକୁ ଅବର୍ଗ୍ୟ ଶ୍ରେଣୀରେ ସ୍ଥାନିତ କରାଯାଇଛି । ମୁଖ୍ୟତଃ ଯେଉଁ ସ୍ପର୍ଶ ବା ସ୍ପର୍ଶ ସଂଘର୍ଷୀ ବ୍ୟଞ୍ଜନର ଉଚ୍ଚାରଣ ସ୍ଥଳ ଏକ ହେବା ସହ ଅଳ୍ପପ୍ରାଣ, ମହାପ୍ରାଣ, ଅଘୋଷ, ସଘୋଷ, ନାସିକ୍ୟ ଭେଦରେ ସାମାନ୍ୟ ଭିନ୍ନ ରୂପ ଗ୍ରହଣ କରିଛନ୍ତି, ସେମାନଙ୍କୁ ଗୋଟିଏ ଗୋଟିଏ ନିର୍ଦ୍ଦିଷ୍ଟ ବର୍ଗରେ ଅନ୍ତର୍ଭୁକ୍ତ କରାଯାଇଛି ।

ଏସବୁର ବିଶଦ ଆଲୋଚନା ପରିବର୍ତ୍ତେ କେବଳ ବୈଶିଷ୍ଟ୍ୟ ପ୍ରଦର୍ଶନ ପାଇଁ କେତୋଟି ଉପାଦାନର ଉଦାହରଣ ଉପସ୍ଥାପନ କରାଯାଉଛି ।

କ (କଣ୍ଠ୍ୟ) ବର୍ଗର ପଞ୍ଚମ ବର୍ଣ୍ଣ 'ଙ'ର ସ୍ୱତନ୍ତ୍ର ଉଚ୍ଚାରଣ ଓଡ଼ିଆ ଭାଷାରେ ଉପଲବ୍ଧ ନୁହେଁ ।

ସଂସ୍କୃତ 'ବାଙ୍ମୟ', 'ପରାଙ୍ମୁଖ' ପରି ଶବ୍ଦ ଓଡ଼ିଆ ଭାଷାରେ ସ୍ଥଳ ବିଶେଷରେ ଅନୁକୃତ ହେଉଥିବାର ଦେଖାଯାଏ । କିନ୍ତୁ ଏହାର ବହୁଳ ସ୍ୱାଭାବିକ ପ୍ରୟୋଗ ହୁଏନାହିଁ । 'ଙ୍' ଧ୍ୱନିଟି କେବଳ ଲିପିମାଳାରେ ରହି କଣ୍ଠ୍ୟ ସ୍ପର୍ଶ ବର୍ଗ୍ୟ ବ୍ୟଞ୍ଜନର ଅନୁନାସିକତା କ୍ଷେତ୍ରରେ ଯୁକ୍ତ ହୋଇଥାଏ, ଯଥା: ଙ୍କ (ଙ୍କ), ଙ୍ଖ (ଙ୍ଖ), ଙ୍ଗ (ଙ୍ଗ), ଙ୍ଘ (ଙ୍ଘ) ।

ଚ (ତାଲବ୍ୟ ସ୍ପର୍ଶ ସଂଘର୍ଷୀ) ବର୍ଗର ପଞ୍ଚମ ବର୍ଣ୍ଣ 'ଞ'ର ସ୍ୱତନ୍ତ୍ର ଉଚ୍ଚାରଣ ଓଡ଼ିଆ ଭାଷାରେ ଉପଲବ୍ଧ ନୁହେଁ । ସେହି ବର୍ଗର ଅନ୍ୟ ବର୍ଣ୍ଣମାନଙ୍କର ଅନୁନାସିକତା ପାଇଁ ଯୁକ୍ତ ହୋଇଥାଏ, ଯଥା: ଞ୍ଚ (ଞ୍ଚ), ଞ୍ଛ (ଞ୍ଛ), ଞ୍ଜ (ଞ୍ଜ), ଓଞ୍ଝ(ଞ୍ଝ) ।

ବ୍ୟାକରଣିକ ଯୁକ୍ତିଯୁକ୍ତତା ଆଧାରରେ 'ଂ'(ଅନୁସ୍ୱାର) ବ୍ୟବହାର କରି ଏହି ଯୁକ୍ତ ବ୍ୟଞ୍ଜନଗୁଡ଼ିକୁ ଉପସ୍ଥାପନ କଲେ (ଟଂକା), (ପଂଖା, (ମଂଚ), (ସଂଜ) ଇତ୍ୟାଦି । 'ଙ୍' ଏବଂ 'ଞ' ବର୍ଣ୍ଣର ଆବଶ୍ୟକତା ଓଡ଼ିଆ ଭାଷାରେ ନାହିଁ ।

ବର୍ଗ ବ୍ୟଞ୍ଜନର ଡ (ମୂର୍ଦ୍ଧଣ୍ୟ) ବର୍ଗର ପ୍ରଥମ ଓ ଦ୍ୱିତୀୟ ବର୍ଣ୍ଣ ଡ ଏବଂ ଢ ଶବ୍ଦର ଆରମ୍ଭରେ କିମ୍ବା ହଳନ୍ତ ଯୁକ୍ତ ହୋଇ ନଥିଲେ ଉତ୍‌କ୍ଷିପ୍ତ ଧ୍ୱନିଭାବେ ଉଚ୍ଚାରିତ ହୁଏ ଯାହା 'ଡ', 'ଢ' ଧ୍ୱନିର ସଂସ୍ୱନ । ତଥାପି ଏ ଦୁଇଟି ସଂସ୍ୱନକୁ ସ୍ୱତନ୍ତ୍ର ଭାବେ ଚିହ୍ନାଇବା ପାଇଁ ଲିପିମାଳାରେ ଡ ଓ ଢ (ବିନ୍ଦୁଯୁକ୍ତ) ଲିପିର ବ୍ୟବସ୍ଥା ରହିଛି । (ଡବା– ବାଡ଼, ଡଗ– ଗଡ଼) ।

ଓଡ଼ିଆ ବର୍ଣ୍ଣମାଳାର ଅବର୍ଗ୍ୟ ବ୍ୟଞ୍ଜନ ଶ୍ରେଣୀରେ ଉପଲବ୍ଧ (ଅନ୍ତସ୍ଥ) 'ଯ' ଉଚ୍ଚାରଣ ଓ ପ୍ରୟୋଗ ବିଧିରେ ଏକ ସ୍ୱତନ୍ତ୍ର ମୂଲ୍ୟ ବହନ କରେ । ଉଚ୍ଚାରଣ ଦୃଷ୍ଟିରୁ ଏହା ଚ (ତାଲବ୍ୟସ୍ପର୍ଶସଂଘର୍ଷୀ) ବର୍ଗର ତୃତୀୟ (ସଘୋଷ ଅଳ୍ପ ପ୍ରାଣ) ବର୍ଣ୍ଣ 'ଜ') ସହ ସମାନ । 'ଜାତ' ଏବଂ 'ଯାତ'ର ଉଚ୍ଚାରଣରେ କୌଣସି ପାର୍ଥକ୍ୟ ଉପଲବ୍ଧ ହୁଏ ନାହିଁ । କିନ୍ତୁ ସଂସ୍କୃତ ଭାଷାରୁ ଆସିଥିବା ଶବ୍ଦମାନଙ୍କରେ ଥିବା 'ୟ' ଅର୍ଧସ୍ୱର ସ୍ଥଳ ବିଶେଷରେ ଉଚ୍ଚାରଣ ସହଜତା ପାଇଁ 'ଜ' ହୋଇଥିବାର ଲକ୍ଷ୍ୟ କରାଯାଏ । ଏପରି ସ୍ଥଳେ ଏହି 'ଜ' ଧ୍ୱନିକୁ 'ଯ' ଲିପି ଭାବେ ଉପସ୍ଥାପନ କରାଯାଏ । ଯଥା: ୟମ–ଯମ, ୟାତ୍ରା–ଯାତ୍ରା, ନ୍ୟାୟ୍ୟ–ନ୍ୟାଯ୍ୟ, ସହାୟ–ସାହାଯ୍ୟ । କେତେକ ସ୍ଥଳରେ ଏହା ପରିବର୍ତ୍ତିତ ରୂପ ନେଉଥିବାବେଳେ କେତେକ ସ୍ଥଳରେ ଅପରିବର୍ତ୍ତିତ ଭାବେ ଉପଲବ୍ଧ । ଯଥା: ପର୍ୟ୍ୟାୟ–ପର୍ଯ୍ୟାୟ ।

ଓଡ଼ିଆ ଭାଷାରେ ଏହି ଧ୍ୱନିଟି ପାଇଁ ବ୍ୟବହୃତ ମାତ୍ରା 'ଏ'କୁ ଯ୍ୟ' ଫଳା ବୋଲି କୁହାଯାଏ, ଯାହା 'ଜ' ଏବଂ 'ୟ'ର ଏକ ମିଶ୍ରିତ ଉଚ୍ଚାରଣ । ଏହା ପୂର୍ବବର୍ଣ୍ଣର ଡାହାଣରେ ବ୍ୟବହୃତ ହୁଏ । ନିମ୍ନକୁ ଚାଲିଗଲେ ଏହି ଫଳାଟି ଅର୍ଦ୍ଧସ୍ୱର 'ୱ'ର ପ୍ରତିନିଧିତ୍ୱ କରିଥାଏ । ଏପରି ଏକ ଧ୍ୱନିର ବିକାଶ ଏବଂ ଏଥିନିମିତ୍ତ ସ୍ୱତନ୍ତ୍ର ଲିପିର ବ୍ୟବସ୍ଥା ଓଡ଼ିଆ ଭାଷାର ବୈଶିଷ୍ଟ୍ୟର ସ୍ୱଷ୍ଟ ପ୍ରମାଣ, ଯାହା ଅନ୍ୟ ଭାଷାରେ ଉପଲବ୍ଧ ନୁହେଁ । 'ଯ' ଧ୍ୱନି ଅର୍ଦ୍ଧସ୍ୱର 'ୟ' ଧ୍ୱନିର ବିକଳ୍ପ ମାତ୍ର ହୋଇଥିଲେ ମଧ୍ୟ ଏହା ସ୍ପର୍ଶସଂଘର୍ଷୀ 'ଜ' ଗୁଣ ପାଇଁ ପରିଚିତ । ସ୍ଥଳ ବିଶେଷରେ ଦ୍ୱିତ୍ୱ ହେଲାବେଳେ ଉଭୟଗୁଣର ସ୍ୱତଃ ପ୍ରୟୋଗ ହୋଇଥାଏ । ଯଥା: ସାହାଯ୍ୟ, ସୂର୍ଯ୍ୟ (ସୂର୍ଯ୍ୟ ଶ ସୂର୍ଜ୍ୟ ଶ ସ୍‌ଉର୍‌ଜ୍‌ୟ୍‌ଅ) । ଓଡ଼ିଆ ଭାଷାର ଅର୍ଦ୍ଧସ୍ୱର 'ୟ'ର ବ୍ୟବହାର ଧ୍ୱନି ଓ ଲିପିରେ ଥାଇ ମଧ୍ୟ 'ଯ' ପରି ଏବଂ ଧ୍ୱନ୍ୟାତ୍ମକ ଲିପିର ବିକାଶ ସ୍ୱାଭାବିକ ଭାବେ ହୋଇଛି । ଏହା ଅବର୍ଗ୍ୟ 'ଯ' ଏବଂ ଅନ୍ତସ୍ଥ 'ଯ'ର ନାମରେ ପରିଚିତ ହୋଇଛି । ବର୍ଗ୍ୟ–ବ୍ୟବସ୍ଥାରେ ଶୃଙ୍ଖଳାର ବ୍ୟତିକ୍ରମ ବୋଲି 'ଅବର୍ଗ୍ୟ' ଏବଂ 'ଅନ୍ତର୍ମୁଖୀ ଧ୍ୱନି' ଅର୍ଦ୍ଧସ୍ୱର 'ୟ'ର ବିକଳ୍ପ ହୋଇଥିବାରୁ ଅନ୍ତସ୍ଥ ନାମରେ ନାମିତ ।

'ଲ' ଏବଂ 'ଳ' ଓଡ଼ିଆ ଭାଷାର ଆଉ ଏକ ବୈଶିଷ୍ଟ୍ୟ । 'ଲ' ଶବ୍ଦର ଆରମ୍ଭ, ମଧ୍ୟ ଓ କେତେକ ବୈଦେଶିକ ଶବ୍ଦରେ ଅନ୍ତ୍ୟସ୍ଥାନରେ ଉପଲବ୍ଧ ହେଉଥିବା ବେଳେ 'ଳ' କେବଳ ଶବ୍ଦର ମଧ୍ୟସ୍ଥଳରେ ଉପଲବ୍ଧ । (ବ୍‌ଅଳ୍‌ଅ (ବଳ), ଦ୍‌ଅଳ୍‌ଅ(ଦଳ), କ୍‌ଆଳ୍‌ଅ (କାଳ) । ସମଗୋତ୍ରୀୟ ଉତ୍ତର ଭାରତୀୟ ଭାଷାରେ 'ଳ' ପଲବ୍ଧ ହୁଏନାହିଁ । ଦକ୍ଷିଣ ପଶ୍ଚିମାଞ୍ଚଳ ଭାରତର କେତେକ ଭାଷାରେ 'ଳ' ଧ୍ୱନି ଉପଲବ୍ଧ ହୁଏ । ତେବେ ପ୍ରାଚୀନ ବୈଦିକ ଏବଂ ସଂସ୍କୃତ ଭାଷାରେ ଏହି ଧ୍ୱନି ଉପଲବ୍ଧ ହୋଇଥାଏ, ଯଥା: ଆଳବାଳ । କିନ୍ତୁ ଉତ୍ତର ଭାରତର ଅନେକ ଭାଷାରେ ସମ୍ପ୍ରତି ଏ ଧ୍ୱନି ବ୍ୟବହୃତ ହୁଏ ନାହିଁ । ଓଡ଼ିଆ ଭାଷାରେ ଏହି ଧ୍ୱନିର ବହୁଳ ପ୍ରୟୋଗ ଉପଲବ୍ଧ । ବୈଦିକ କାଳରୁ 'ଳ' ଧ୍ୱନି ଓଡ଼ିଆରେ ସୁରକ୍ଷିତ ରହିଛି ।

'ୱ' ଅର୍ଦ୍ଧସ୍ୱର ଓଡ଼ିଆ ଭାଷାରୁ ପ୍ରାୟତଃ ଲୋପ ପାଇଥିଲା । କେବଳ କେତେକ ତତ୍‌ସମ ଶବ୍ଦର ଯୁକ୍ତ ବ୍ୟଞ୍ଜନରେ ଏହା ବ୍ୟବହୃତ ହୋଇ ଆସୁଥିଲା । ଯଥା: ପକ୍ୱ, ସତ୍ତ୍ୱ, ସମ୍ପ୍ରତି ଏହି ଧ୍ୱନିଟି କେତେକ ବିଦେଶାଗତ ଶବ୍ଦ ସହିତ ସ୍ୱତନ୍ତ୍ରଭାବେ ବ୍ୟବହୃତ ହେଉଛି । ୱାରେଣ୍ଟ, ୱାଗନ୍ । ସମଗୋତ୍ରୀୟ ଅନ୍ୟ ଭାଷାମାନଙ୍କରେ ବିଶେଷଭାବେ ଦେବନାଗରୀ ଲିପି ବ୍ୟବହାର କରୁଥିବା ଭାଷାରେ ଏହି ଧ୍ୱନି ପାଇଁ ସ୍ୱତନ୍ତ୍ର ଲିପି ବ୍ୟବସ୍ଥା ଥିବାବେଳେ ଓଡ଼ିଆ ବର୍ଣ୍ଣମାଳାରେ ବର୍ଗ୍ୟ (ଓଷ୍ଠ୍ୟସ୍ପର୍ଶ) ବ ଏବଂ ଅବର୍ଗ୍ୟ (ଅର୍ଦ୍ଧସ୍ୱର) ବ (ୱ) ସମାନଭାବେ ଲେଖାଯାଉଥିଲା । ୟ' (ଯ) ପାଇଁ ପ୍ରୟୋଗ କରାଯାଉଥିବା ମାତ୍ରା 'ଏ' ଫଳା ପରି ମାତ୍ରାଚିହ୍ନ ଅନ୍ୟ ବଞ୍ଜନ ଲିପିର ନିମ୍ନ(କ୍ୱ) ଭାଗରେ ଦିଆଯାଇ ଏହି ଧ୍ୱନିଟିକୁ ଚିହ୍ନିତ କରାଯାଉଥିଲା । କିନ୍ତୁ ଏହି ଚିହ୍ନ 'ମ୍' ସହିତ ଯୋଗହେଲେ (ମ୍ୱ), ଏହାକୁ ବର୍ଗ (ଓଷ୍ଠ୍ୟସ୍ପର୍ଶ) 'ବ' ଧ୍ୱନିର ମାନ୍ୟ ମିଳୁଥିଲା । ବର୍ତ୍ତମାନ ଅବର୍ଗ୍ୟ 'ବ' ସ୍ଥାନରେ 'ୱ' (କେତେକ ବ)ର ପ୍ରୟୋଗ ହେବା ସଙ୍ଗେ ଯୁକ୍ତ ବ୍ୟଞ୍ଜନରେ ପୂର୍ବପଦ୍ଧତି ପ୍ରଚଳନ ଜାରି ରହିଛି ।

ଓଡ଼ିଆ ଭାଷାରେ ତାଲବ୍ୟ, ମୂର୍ଦ୍ଧଣ୍ୟ, ଦନ୍ତ୍ୟ ଭେଦରେ ଶ,ଷ,ସ ତିନୋଟି ଉଷ୍ମ ବା ସଂଘର୍ଷୀ ଧ୍ୱନିର ବ୍ୟବସ୍ଥା ଥିବା ସତ୍ତ୍ୱେ ମୁଖ୍ୟତଃ ଦନ୍ତ୍ୟ 'ସ'ର ଉଚ୍ଚାରଣ ଉପଲବ୍ଧ ହୁଏ । କେତୋଟି ନିର୍ଦ୍ଦିଷ୍ଟ ସ୍ଥାନ (ଗଞ୍ଜାମର ଶାସନମାନଙ୍କରେ) ତାଲବ୍ୟ 'ଶ' (ଶ୍ୟାନ୍ତି) ଉଚ୍ଚାରଣ କେତେକ ଲୋକଙ୍କ କଥାରେ ଶୁଣିବାକୁ ମିଳିଥାଏ । ର୍ ଏବଂ ଣ୍ ଧ୍ୱନି ସହ ଯୁକ୍ତ ବ୍ୟଞ୍ଜନ (କର୍ଷଣ, ବର୍ଷା, କୃଷ୍ଣ, ବିଷ୍ଣୁ)ରେ ମୂର୍ଦ୍ଧଣ୍ୟ 'ଷ'ର ବ୍ୟବହାର ସ୍ୱତଃ ହୋଇଥାଏ । କିନ୍ତୁ ଓଡ଼ିଶାର ସାଧାରଣ ବ୍ୟକ୍ତି ଏସବୁ ଭେଦ ପ୍ରତି ଆଦୌ ସଚେତନ ନୁହେଁ । ବରଂ ଶ, ଷ, ସ କୁ ସମାନ ଭାବେ 'ସ' ଉଚ୍ଚାରଣ କରିବାର ସ୍ୱାଭାବିକ ଉଦାହରଣ ପର୍ଯ୍ୟାପ୍ତ ଭାବେ ମିଳିଥାଏ । ବହୁ ପାଠୁଆ ମଧ୍ୟ ଲେଖାରେ ତିନୋଟି 'ସ'ର ମୁକ୍ତ ବ୍ୟବହାର କରିଥା'ନ୍ତି ।

'କ୍‌ଷ୍‌ଅ' (କ୍ଷ) ଯୁକ୍ତବ୍ୟଞ୍ଜନଟି ଓଡ଼ିଆ ବର୍ଣ୍ଣମାଳାରେ ସ୍ୱତନ୍ତ୍ର ସ୍ଥାନ ପାଇଥିଲେ ମଧ୍ୟ ଏହାର ମୂଳ ଉଚ୍ଚାରଣ

ଓଡ଼ିଆରେ ସୁରକ୍ଷିତ ନୁହେଁ । ବରଂ ଏହା 'କ୍+ଷ୍+ଅ' ପରିବର୍ତ୍ତେ 'ଖ୍+ୟ୍+ଅ' ରୂପେ ଉଚ୍ଚାରିତ ହୁଏ । ପୁଣି 'ଇ'କାର ଏବଂ 'ଏ' କାର ଯୁକ୍ତ ହେଲେ ଏହି ଧ୍ୱନିଟି କେବଳ 'ଖ' (ଆକ୍ଷି–ଆଖି, କ୍ଷୀର–ଖିର, କ୍ଷେତ–ଖେତ) ଭାବେ ଉଚ୍ଚାରିତ ହୋଇଥାଏ । ଅନ୍ୟତ୍ର ଏହା ସ୍ପଷ୍ଟଭାବେ 'ଖ୍ୟ' (କ୍ଷମା–ଖ୍ୟମା, କ୍ଷାତି–ଖ୍ୟାତି, କ୍ଷୁଧା–ଖ୍ୟୁଧା) ଉଚ୍ଚାରିତ ହୋଇଥାଏ । କେବଳ ଲିପିମାଳାରେ ଥିଲେ ମଧ୍ୟ ଏହାର ଧ୍ୱନ୍ୟାତ୍ମକ ମୂଲ୍ୟ ଓଡ଼ିଆ ଭାଷାରେ ପରିବର୍ତ୍ତିତ ହୋଇସାରିଛି ।

ଉଚ୍ଚାରଣ ଦୃଷ୍ଟିରୁ ଓଡ଼ିଆ ଭାଷାରେ ସ୍ୱରଧ୍ୱନି 'ଋ', 'ଌ' ନିଜର ସତ୍ତା ହରାଇ ସାରିଛନ୍ତି । ଋ (ରୁ) ଧ୍ୱନି ନିଜସ୍ୱ ଶୈଳୀରେ ବ୍ୟଞ୍ଜନଗୁଣାତ୍ମକ ହୋଇ ସାରିଛି । ବ୍ୟଞ୍ଜନ ବର୍ଣ୍ଣମାଳାରେ 'ଙ', 'ଞ' ଆପଣାର ଉଚ୍ଚାରଣଗତ ନିଜସ୍ୱ ଲକ୍ଷଣ ସମ୍ପୂର୍ଣ୍ଣ ହରାଇଛନ୍ତି । ଜ,ଯ ଏବଂ ଳ, ଲ, ଶ, ଷ, ସ, କ୍ଷ'ର ବୈଚିତ୍ର୍ୟ ପରି ଓଡ଼ିଆ ଯୁକ୍ତ ବ୍ୟଞ୍ଜନରେ 'ଜ୍ଞ' ଉଚ୍ଚାରଣ ଏହି ଭାଷାରେ ସ୍ୱାତନ୍ତ୍ର୍ୟର ଆଉ ଏକ ପ୍ରମାଣ । ଏହି ଧ୍ୱନିଟି ବର୍ଗ୍ୟ (ସ୍ପର୍ଶସଂଘର୍ଷୀ)ଜ୍ ଏବଂ ସେହି ବର୍ଗର ପଞ୍ଚମବର୍ଣ୍ଣ (ନାସିକ୍ୟ) 'ଞ'ର ମିଶ୍ରଣ ଗଠିତ ହୋଇଥିଲେ ମଧ୍ୟ ଏହାର ଉଚ୍ଚାରଣ ବର୍ଗ୍ୟ (କଣ୍ଠ୍ୟ) ଗ୍ ଏବଂ ଅର୍ଦ୍ଧସ୍ୱର 'ୟ'ର ମିଶ୍ରଣ ସହ ଅନୁନାସିକ ଉଚ୍ଚାରିତ ରୂପ 'ଗ୍ୟଁ' ହୋଇଥାଏ । ଯଥା: ଜ୍ଞାତି (ଗ୍ୟଁାତି), ଯଜ୍ଞ (ଗ୍ୟଁ) ।

ଧ୍ୱନିଗୁଡିକୁ ପ୍ରତିନିଧିତ୍ୱ କରିବା ପାଇଁ ପୃଥିବୀର ଅନେକ ଭାଷାରେ ନିଜସ୍ୱ ଲିପି ବ୍ୟବସ୍ଥା ନାହିଁ । ଅନେକ ପ୍ରତିଷ୍ଠିତ ଓ ପରିଚିତ ଭାଷା ନିଜକୁ ସ୍ୱତନ୍ତ୍ର ବୋଲି ପ୍ରମାଣିତ କରିଥିଲେ ମଧ୍ୟ ନିଜସ୍ୱ ଲିପି ନାହିଁ । ଅନ୍ୟ ଭାବରେ କହିଲେ ଗୋଟିଏ ଗୋଟିଏ ପ୍ରକାର ଲିପି ବ୍ୟବସ୍ଥା ଏକାଧିକ ଭାଷାରେ ପ୍ରୟୋଗ ହେଉଥିବାର ଉଦାହରଣ ମିଳିଥାଏ । ବହୁ ଆଦିବାସୀ ଭାଷାରେ ଲିପି ବ୍ୟବସ୍ଥା ନଥିବା ବେଳେ ସାନ୍ତାଳୀ ଭାଷା ପାଇଁ ଲିପି ପ୍ରସ୍ତୁତ କରାଯାଇଛି । ଅନେକ ଉତ୍ତର ଭାରତୀୟ ଭାଷା ଦେବନାଗରୀ ଲିପିକୁ ଆପଣେଇ ନେଇଥିବା ବେଳେ ବଙ୍ଗଳା ଓ ଅସମୀୟା ଭାଷା ଏକ ପ୍ରକାର ଲିପି ବ୍ୟବହାର କରୁଛନ୍ତି । ଓଡ଼ିଆ ଭାଷାର ଲିପି ବ୍ୟବସ୍ଥା ଧ୍ୱନ୍ୟାତ୍ମକ ଏବଂ ଏହାର ସ୍ୱରୂପ ଅନ୍ୟ ଭାଷାମାନଙ୍କଠାରୁ ସ୍ୱତନ୍ତ୍ର ଏବଂ ସୁନ୍ଦର ମଧ୍ୟ । ପୂର୍ବରୁ ଆଲୋଚିତ ଅଳ୍ପକେତୋଟି ବର୍ଣ୍ଣକୁ ଛାଡିଦେଲେ ଅନ୍ୟଗୁଡିକରେ ଧ୍ୱନି ଓ ଲିଖନ ପଦ୍ଧତି ପରସ୍ପର ସହ ନିବିଡଭାବେ ସମ୍ପୃକ୍ତ । ସ୍ୱରମାତ୍ରା (କାର) ଏବଂ ବ୍ୟଞ୍ଜନ ମାତ୍ରା (ଫଳା) ପ୍ରୟୋଗରେ ମଧ୍ୟ ଧ୍ୱନ୍ୟାତ୍ମକ ପ୍ରତିଲିଖନ ପାଇଁ ଓଡ଼ିଆ ଭାଷାରେ ସ୍ୱତନ୍ତ୍ର ଶୈଳୀର ପ୍ରୟୋଗ ଏହି ଭାଷାର ବୈଶିଷ୍ଟ୍ୟକୁ ସ୍ପଷ୍ଟ ପ୍ରମାଣିତ କରେ । ନିମ୍ନରେ କେତୋଟି ସ୍ୱତନ୍ତ୍ର ବ୍ୟବସ୍ଥାର ଉଦାହରଣ ପ୍ରଦାନ କରାଯାଉଛି ।

ଇ'କାର–ି ଏବଂ ୍ (ଓଡ଼ିଆ) ସ୍ଥଳଭେଦରେ ଉପର ଓ ନିମ୍ନରେ ବ୍ୟବହୃତ ।

ଜ ହିନ୍ଦୀ, ବଙ୍ଗଳା ଇତ୍ୟାଦିରେ ବାମପାର୍ଶ୍ୱରେ ବ୍ୟବହୃତ ।

ଉ'କାର–ୁ (ନିମ୍ନରେ–ଓଡ଼ିଆ) –(ନିମ୍ନରେ–ୃହିନ୍ଦୀ)

ଏ'କାର– େ (ବାମରେ–ଓଡ଼ିଆ)– ୍(ଉପରେ–ଦେବନାଗରୀ)

କ'ଫଳା– କ୍ଷ (ନିମ୍ନରେ –ଓଡ଼ିଆ) (ଦକ୍ଷିଣପାଖରେ ପୂର୍ଣ୍ଣ କ ଏବଂ ବାମରେ ଅଧା ଷ– ଦେବନାଗରୀ)

ତ' ଫଳା–୍ (ନିମ୍ନରେ ଦିଆଗଲେ ପ୍ରଥମେ ଉଚ୍ଚାରିତ ହୁଏ: ତ୍ପ–ଉତପଳ–ଉତ୍ପଳ)

୨(ନିମ୍ନରେ ଦିଆଗଲେ ପରେ ଉଚ୍ଚାରିତ ହୁଏ: ପ୍ତ–ତପ୍ତ)

ଆହୁରି ଅନେକ ଲିପିଗତ ବୈଶିଷ୍ଟ୍ୟ ରହିଛି, ଯାହାର ବିଚାର ପ୍ରତ୍ୟେକଟି ପାଇଁ ସ୍ୱତନ୍ତ୍ରଭାବେ କରାଯାଇପାରେ । ଏହି ସ୍ୱଳ୍ପ କେତୋଟି ଉଦାହରଣ ଆଧାରରେ ଓଡ଼ିଆ ଭାଷାର ଧ୍ୱନି ବ୍ୟବସ୍ଥା ଯେ ବହୁ ଭାବରେ ଅନ୍ୟ ଭାଷାମାନଙ୍କଠାରୁ ସ୍ୱତନ୍ତ୍ର ଏବଂ ଏହି ଧ୍ୱନିଗୁଡିକ ପାଇଁ ପ୍ରଚଳିତ ଲିପି ବ୍ୟବସ୍ଥା ମଧ୍ୟ ସ୍ୱତନ୍ତ୍ର, ଏକଥା ସ୍ପଷ୍ଟ ପ୍ରମାଣିତ ହୁଏ । ଭାରତର ଭିନ୍ନଭିନ୍ନ ପ୍ରାନ୍ତରେ ଦ୍ରାବିଡ, ବ୍ରାହ୍ମୀ, ଖରୋଷ୍ଠୀ ଇତ୍ୟାଦି

ଲିପି ପରମ୍ପରାର ବିଭିନ୍ନ ରୂପ ବିକଶିତ ହୋଇଛି । ଏହି ପ୍ରକ୍ରିୟାରେ ଓଡ଼ିଆ ଲିପିର ଯେଉଁ ସୂଚନା ଅଶୋକଙ୍କ ଧଉଳି ଶିଳାଲେଖରେ ବା ଖାରବେଳଙ୍କ ଖଣ୍ଡଗିରି ଶିଳାଲେଖରେ ମିଳିଥିଲା, ତା'ର ପୂର୍ଣ୍ଣାଙ୍ଗ ରୂପ ଏକାଦଶ ଶତାବ୍ଦୀ ପରେ ଦକ୍ଷିଣ କଳିଙ୍ଗ ଲିପି, ପରେ ପ୍ରାଚୀନ ଓଡ଼ିଆ ଲିପି ଓ କ୍ରମେ ଆଧୁନିକ ସ୍ୱତନ୍ତ୍ର ଓଡ଼ିଆ ଲିପି ଭାବେ ବିକଶିତ ହୋଇଛି ।

**ରୂପତାତ୍ତ୍ୱିକ :**

ଓଡ଼ିଆ ଭାଷାର ଆରମ୍ଭକାଳ ପ୍ରାୟ ଖ୍ରୀଷ୍ଟପୂର୍ବ ଦ୍ୱିତୀୟ ଶତକ ବୋଲି ଭରତ ମୁନିଙ୍କ ନାଟ୍ୟଶାସ୍ତ୍ର ଆଧାରରେ ଗ୍ରହଣ କରାଗଲେ, ସେତେବେଳକୁ ଯେ ଓଡ଼ିଆ ଭାଷା, ଯାହା 'ଉଡ୍ର' ନାମରେ ପରିଚିତ ଥିଲା, ଏହାର ନିଶ୍ଚିତ ଭାବେ ରୂପତାତ୍ତ୍ୱିକ ବୈଶିଷ୍ଟ୍ୟ ସ୍ପଷ୍ଟ ହୋଇଥିବ, ଏଥିରେ ଦ୍ୱିମତ ନାହିଁ । ପରବର୍ତ୍ତୀ ବୟାକରଣିକମାନେ ମଧ୍ୟ ଏକଥା ସ୍ୱୀକାର କରିଥିବାର ସୂଚନା ମିଳେ । ଏହି ଭାଷାଟି ଲୋକମୁଖରେ ବିବର୍ତ୍ତିତ ହୋଇ ଆଜି ଯେଉଁ ରୂପରେ ମିଳୁଛି, ସେଥିରେ ଏହାର ସ୍ୱାତନ୍ତ୍ର୍ୟ ନିର୍ବିବାଦରେ ସ୍ୱୀକୃତ ହୋଇଛି ।

ଏହି ଆଲୋଚନା ପରିସରରେ ଓଡ଼ିଆ ଭାଷାର ରୂପତାତ୍ତ୍ୱିକ ବିଚାର କରା ନଯାଇ କେବଳ କେତେକ ବୈଶିଷ୍ଟ୍ୟ ଉପସ୍ଥାପନ କରାଯାଉଛି ।

ଓଡ଼ିଆ ଭାଷାର ବିଶେଷ୍ୟଗୁଡ଼ିକ ପ୍ରାଣୀ ବାଚକ, ଅପ୍ରାଣୀବାଚକ ଭାବେ ଭେଦହେଲେ ମଧ୍ୟ ଏହାର ଲିଙ୍ଗଭେଦ ନାହିଁ, ଯାହା ଉତ୍ତର ଭାରତୀୟ ଅନେକ ଭାଷାରେ ଉପଲବ୍ଧ । ଯଥା: ସୁନ୍ଦର ପୁଅଟି, ସୁନ୍ଦର ଝିଅଟି, ସୁନ୍ଦର ଫୁଲଟି... 'ଝିଅ' ପୂର୍ବରୁ 'ସୁନ୍ଦରୀ' ବ୍ୟବହୃତ ହୋଇପାରେ । କିନ୍ତୁ ଏହା ବାଧ୍ୟତାମୂଳକ ନୁହେଁ । ଆଉ ମଧ୍ୟ 'ପୁଅଟି ଯାଉଛି' ଓ 'ଝିଅଟି ଯାଉଛି' ବାକ୍ୟରେ କର୍ତ୍ତାର ଲିଙ୍ଗ ଭେଦ କ୍ରିୟାପଦକୁ ପ୍ରଭାବିତ କରୁନାହିଁ ।

ଓଡ଼ିଆ ବିଶେଷ ଓ ସର୍ବନାମ ପଦଗୁଡ଼ିକ ବିଭକ୍ତି ଗ୍ରହଣ କଲାବେଳେ ଅନେକତ୍ର ଏହା ଶୂନ୍ୟ ବିଭକ୍ତି ଚିହ୍ନକୁ ହିଁ ଗ୍ରହଣ କରିଥାଏ ।

ମୁଁ ଘରକଲେଜ ଯାଉଛି । ଏଠାରେ ମୁଁ ସହିତ ପ୍ରଥମା ବିଭକ୍ତି ଚିହ୍ନ ନାହିଁ ।

ସେହିପରି 'କଲେଜ' ସହିତ ଦ୍ୱିତୀୟା ବିଭକ୍ତି ଚିହ୍ନ 'କୁ' ମଧ୍ୟ ନାହିଁ । ଏପରି କାରଣରୁ ଏହି ଭାଷାଟି ସଂସ୍କୃତ ଭାଷାର ନିୟମଠାରୁ ସମ୍ପୂର୍ଣ୍ଣ ଅଲଗା । ସଂସ୍କୃତ ଭାଷାରେ କର୍ତ୍ତା, କର୍ମ ଓ କ୍ରିୟାପଦକୁ ବାକ୍ୟର ଯେକୌଣସି ସ୍ଥାନକୁ ନିଆଯାଇପାରେ, ଯଥା: 'ବିଲେଇ ମୂଷା ଖାଏ' । ଏହା 'ମୂଷା ବିଲେଇ ଖାଏ' ହୋଇପାରିବ ନାହିଁ । ଦ୍ୱିତୀୟା ବିଭକ୍ତିର ରୂପ ଯଦି 'ଶୂନ୍ୟ' ହେଉ ନଥା'ନ୍ତା, ତେବେ ତାହା ଗ୍ରହଣୀୟ ହୋଇଥା'ନ୍ତା, ଯଥା– ମୂଷା (କୁ) ବିଲେଇ ଖାଏ ।

ସଂସ୍କୃତର ୨୦ଟି ଉପସର୍ଗ ବାହାରେ ଓଡ଼ିଆରେ କେତେକ ଉପସର୍ଗ ଉପଲବ୍ଧ, ଯାହା ସଂସ୍କୃତ ପଣ୍ଡିତମାନଙ୍କ ଦ୍ୱାରା ମଧ୍ୟ ପ୍ରୟୋଗ କରାଯାଇଥାଏ । ଯଥା: (ଅ) କଥ୍ୟ, (ଅ)କ୍ଷମ, (କୁ)ପୁତ୍ର, (କୁ) ସଂସ୍କାର, (ସ)ଫଳ, (ସ)ବର୍ଣ୍ଣ ।

ଏହା ବ୍ୟତୀତ ଆଉ କେତେକ ଦେଶଜ ଓ ବୈଦେଶିକ ଉପସର୍ଗ ଓଡ଼ିଆ ଭାଷାରେ ନିଜସ୍ୱ ସମ୍ପଦଭାବେ ପ୍ରୟୋଗ ହୋଇଥାଏ । ଯଥା: (ନା) ବାଳକ, (ନା)ପସନ୍ଦ, (ସହ)ଯୋଗ, (ସହ) ବାସ, (ବେ)ସରକାରୀ, (ବେ)ସାମରିକ, (ଦର)ବୁଢ଼ା, (ଦର) ହାସ ।

ଇଆ, ଆଇ, ତି, ଆମି, ଡି ପରି ଆହୁରି ଅନେକ ପରପ୍ରତ୍ୟୟ ଯୋଗରେ ନୂତନ ଶବ୍ଦ ଗଠିତ ହେବାର ପ୍ରଚୁର ଉଦାହରଣ ଓଡ଼ିଆ ଭାଷାରେ ଉପଲବ୍ଧ, ଯାହା ଅନ୍ୟ କୌଣସି ଭାଷାରୁ ଆନୀତ ନୁହେଁ, ବରଂ ଏଗୁଡ଼ିକ ନିଜସ୍ୱ ସମ୍ପଦ ।

ଗାଉଁଲିଆ, ଲଢାଇ, ଲଢେଇ, ପାଗଳାମି, ଜୁଆଡ଼ି, ଖଟାଳିଆ, ପାଣିଚିଆ, କାହୁରା, ଖରାଟିଆ ଇତ୍ୟାଦି ଶବ୍ଦଗୁଡ଼ିକରେ ଓଡ଼ିଆ ଭାଷାର ପରପ୍ରତ୍ୟୟଗୁଡ଼ିକର ଶବ୍ଦ ଗଠନକାରୀ କ୍ଷମତା ସ୍ପଷ୍ଟ । ଡାକ୍ତର ଓ ମାଷ୍ଟର ଶବ୍ଦରେ 'ଆଣୀ' ପ୍ରତୀୟ ଓଡ଼ିଆ ଭାଷାର ବୈଶିଷ୍ଟ୍ୟର ଉଦାହରଣ ।

ନିଜକୁ ସମୃଦ୍ଧ କରିବା ପାଇଁ ଓଡ଼ିଆ ଭାଷା ଅନ୍ୟ ଭାଷାରୁ କେବଳ ପ୍ରତ୍ୟୟ ନୁହେଁ, ବରଂ ଶବ୍ଦମାନଙ୍କୁ ଆଣି ଏକାଠି କରି ନୂତନ ଶବ୍ଦ ତିଆରି କରିଛି । ଯଥା: ରେଳଗାଡ଼ି, ଶିକ୍ଷାବୋର୍ଡ୍, ବିଟ୍‌ଘର, ଜାମାପଟା, କଳିକଜିଆ ।

ସ୍ୱତନ୍ତ୍ର ନୂଆ ନୂଆ ଶବ୍ଦ ତିଆରିରେ ଓଡ଼ିଆ ଭାଷାର ସ୍ୱାତନ୍ତ୍ର୍ୟ ମଧ୍ୟ କମ୍ ନୁହେଁ । ସୁନ୍ଦର ସମୃଦ୍ଧ ଭାଷାରେ କିପରି ନୂଆନୂଆ ଶବ୍ଦ କଳ୍ପନାରୁ ମଧ୍ୟ ସୃଷ୍ଟି କରାଯାଇପାରେ, ତାହା ମଧ୍ୟ ଏହି ଭାଷାଟିରେ ମିଳେ । ଗଛବୃଚ୍ଛ, ପେଟପାଟଣା, ବାଗସାଗ, ଚଷାଭୂଷା ।

ଅଖା, ଅଲଗୁଣି, ଅହ୍ଲୁଣିଆ ପରି ଅସଂଖ୍ୟ ଦେଶଜ ଶବ୍ଦ ସହ ତତ୍‌ସମ, ତଦ୍‌ଭବ, ବୈଦେଶିକ ଶବ୍ଦ ଓ ନବଗଠିତ ଶବ୍ଦ ସମୂହକୁ ନେଇ ଓଡ଼ିଆ ଭାଷା ନିଜ ଭଣ୍ଡାରକୁ ସମୃଦ୍ଧ କରିଛି । ପୃଥିବୀର ଅନ୍ୟ ଯେକୌଣସି ଭାଷା ପରି ଏହି ଭାଷାଟି ସମସ୍ତ ଗୁଣର ଅଧିକାରୀ ହେବା ସଙ୍ଗେ ଏହାର ସମୃଦ୍ଧ ରୂପବିନ୍ୟାସ ଯେତିକି ପ୍ରାଚୀନ ସେତିକି ନବୀନଭାବେ ନିଜକୁ ପ୍ରତିଷ୍ଠା କରିଛି।

ଓଡ଼ିଆ ଶବ୍ଦଗୁଡିକ ବାକ୍ୟରେ ବ୍ୟବହୃତ ହେବାବେଳେ ବିଭକ୍ତି ଚିହ୍ନ କିମ୍ବା ଶୂନ୍ୟଚିହ୍ନ ଗ୍ରହଣ କରନ୍ତି । ଏହି ସମୟରେ ସଂସ୍କୃତ ଭାଷାରେ ଶବ୍ଦର ମୂଳରୂପ ଅନେକତ୍ର ବିଭକ୍ତିଯୋଗରେ ପରିବର୍ତ୍ତିତ ହେଉଥିବାବେଳେ ଓଡ଼ିଆରେ ତାହା ପ୍ରାୟତଃ ହୁଏନାହିଁ । (ପିଲାଟି, ପିଲାକୁ, ପିଲାଦ୍ୱାରା, ପିଲାଠାରୁ, ପିଲାର, ପିଲାଠାରେ ଇତ୍ୟାଦି) ।

ସର୍ବନାମ ପଦରେ କିନ୍ତୁ ତୀର୍ଯ୍ୟକ୍‌ରୂପର ଉଦାହରଣ ମିଳେ, ଯାହା ଅନ୍ୟ ଭାଷାରେ ମଧ୍ୟ ଉପଲବ୍ଧ ।

ଓଡ଼ିଆ ଭାଷାରେ ବ୍ୟବହୃତ ଅବ୍ୟୟମାନଙ୍କ ମଧ୍ୟରୁ କେତେକ ତା'ର ନିଜସ୍ୱ । ସ୍ଥଳବିଶେଷରେ କ୍ରିୟା ବିଶେଷଣ ପଦ ଅବ୍ୟୟ ରୂପେ ବ୍ୟବହୃତ ହେବାର ଉଦାହରଣ ମଧ୍ୟ ମିଳେ । ଚଞ୍ଚଳ (ଆସ), ବେଶ୍ (ହୋଇଛି) । ସେହିପରି ବିଶେଷଣର ବିଶେଷଣ ମଧ୍ୟ ଅବ୍ୟୟ ପଦ ପରି ପ୍ରୟୋଗ ହୁଏ । ଅତି (ସୁନ୍ଦର), ଭାରି (ଭଲ) । ଅନ୍ୟାନ୍ୟ ବିଭିନ୍ନ ପ୍ରକାର ଅବ୍ୟୟପଦ ମଧ୍ୟରୁ କେବଳ କେତୋଟି ସ୍ୱତନ୍ତ୍ର ଓଡ଼ିଆ ଅବ୍ୟୟ ପଦର ଉଦାହରଣ ନିଆଯାଇପାରେ । ଯଥା: ଆଉ, ଓ, ଆଉରି (ସଂଯୋଜକ), ନା (ପ୍ରଶ୍ନବାଚକ: ଯିବୁ ନା ?), ଏଇନେ (ସମୟସୂଚକ), ମାନେ (ବ୍ୟାଖ୍ୟାକାରକ: ଅର୍ଥାତ୍), ଆଁ, ଏଁ (ବିସ୍ମୟବାଚକ), ଆଲୋ, ରେ, ହେଇ (ସଂବୋଧବାଚକ), ଟି (ପ୍ରଶ୍ନବାଚକ–ଯିବଟି ?), ମ (ନିଶ୍ଚୟସୂଚକ: ହଁମ), ଲାଗି (ନିମିତ୍ତ ବାଚକ: ତୋ ଲାଗି) । ଉହୁଁ (ନାସ୍ତିବାଚକ) ।

ଗୋଟିଏ ଭାଷାର ବୈଶିଷ୍ଟ୍ୟ ତା'ର କ୍ରିୟାପଦରୁ ହିଁ ସ୍ପଷ୍ଟ ହୋଇଥାଏ । କ୍ରିୟାପଦକୁ ବାକ୍ୟର କେନ୍ଦ୍ର ବୋଲି ସ୍ୱୀକାର କରାଯାଏ । କ୍ରିୟାପଦ ଗଠନରେ ଧାତୁ ଓ ପ୍ରତ୍ୟେୟମାନଙ୍କର ବୈଶିଷ୍ଟ୍ୟ ଗୋଟିଏ ଭାଷାକୁ ଅନ୍ୟ ଭାଷାଠାରୁ ସ୍ୱତନ୍ତ୍ର ବୋଲି ପ୍ରତିପାଦନ କରିବାରେ ସହାୟକ ହୋଇଥାଏ । ଏଣୁ ଓଡ଼ିଆ ଭାଷାର ବୈଶିଷ୍ଟ୍ୟ ଆଲୋଚନାରେ ଏହି ଗୁରୁତ୍ୱପୂର୍ଣ୍ଣ ଅଙ୍ଗଟି ପ୍ରତି ଦୃଷ୍ଟି ପକାଇବାକୁ ହେବ ।

ସମାପିକା, ଅସମାପିକା ଭେଦରେ କ୍ରିୟା ଦୁଇପ୍ରକାର । ଅସମାପିକା କ୍ରିୟାପଦ ଧାତୁ ଓ ସମ୍ପନ୍ନ ବା ଅସମ୍ପନ୍ନ ପ୍ରତ୍ୟୟକୁ ନେଇ ଗଠିତ ହୋଇଥାଏ । (ଯାଇ, ଯାଉ) ।

ସେଠାକୁ ଯାଇ ଦେଖିଲା (ଇ: ସମ୍ପନ୍ନ ପ୍ରତ୍ୟୟ) ।

ଯାଉ/ ଯାଉ ଯାଉ ଦେଖିଲା (ଉ: ଅସମ୍ପନ୍ନ ପ୍ରତ୍ୟୟ) ।

ଓଡ଼ିଆ କ୍ରିୟା ପଦରେ ଦୁଇଟି ଏପରି ପ୍ରତ୍ୟୟ ମଧ୍ୟରୁ ଗୋଟିଏ ସମ୍ପନ୍ନ ଓ ଗୋଟିଏ ଅସଂପନ୍ନ ସୂଚକ । ଏହି ପ୍ରତ୍ୟୟର ଭୂମିକା ସମାପିକା କ୍ରିୟାରେ ମଧ୍ୟ ରହିଛି । ତେବେ ସମାପିକା କ୍ରିୟାପଦ ଗଠନରେ ସହାୟକ ଧାତୁ/ କ୍ରିୟା, କାଳ ପ୍ରତ୍ୟୟ ଓ ପୁରୁଷବଚନ ସୂଚକ ପ୍ରତ୍ୟୟ ଯୋଗ ହୋଇଥାଏ । ଓଡ଼ିଆ ଭାଷାର କ୍ରିୟାପଦ ଗଠନରେ ଏ ସମସ୍ତ ଉପାଦାନ ଉପଲବ୍ଧ । ସଂପନ୍ନ ଓ ଅସଂପନ୍ନ ପ୍ରତ୍ୟୟରେ ଯେପରି ଓଡ଼ିଆ ଭାଷାର ନିଜସ୍ୱ ବୈଶିଷ୍ଟ୍ୟ ରହିଛି, ସେହିପରି ମୂଳଧାତୁ ଏବଂ ଅନ୍ୟପ୍ରତ୍ୟୟ

ବ୍ୟବହାରରେ ମଧ୍ୟ ଆହରଣ ସହ ମୌଳିକତା ସ୍ପଷ୍ଟ ଉପଲବ୍ଧ । ସ୍ୱଳ୍ପ କେତୋଟି ଉଦାହରଣ ନିମ୍ନରେ ପ୍ରଦତ୍ତ ହେଲା ।

ଓଡ଼ିଆ ଧାତୁ: ଓଳ୍ (ଓଳେଇବା), ସେହିପରି ଆଣ୍ଡିବା, ଖୁଣ୍ଟିବା, ଗୁଞ୍ଜିବା, କାମୁଡିବା, ହାପୁଡିବା ଇତ୍ୟାଦି କ୍ରିୟାପଦରେ ନିଛକ ଓଡ଼ିଆ ଧାତୁର ପ୍ରୟୋଗ ଉପଲବ୍ଧ ।

ସଂପନ୍ନ ବା ଅସଂପନ୍ନ ପ୍ରତ୍ୟୟ ପ୍ରୟୋଗରେ ସ୍ଥଳ ବିଶେଷରେ ରୂପଗତ ପରିବର୍ତ୍ତନ ମଧ୍ୟ ଲକ୍ଷ୍ୟ କରାଯାଏ । ଯଥା: ପଢ୍ ✲ ଆଏ–ଇ ✲ ଲେ (ପଢାଇଲେ/ ପଢେଇଲେ) । ପଢ୍ ✲ ଅ/ଆ–ଉ ✲ ଛ (ପଢଉଛ/ ପଢାଉଛ) ।

ଏଠାରେ ଇ/ଉ ପୂର୍ବରୁ ଆ/ଏ କିମ୍ବା ଅ/ଆ କେବଳ ସହାୟକଭାବେ ସଂଯୁକ୍ତ ହୋଇଛି । ସେହି ଧାତୁରେ ଅନ୍ୟ ପ୍ରସଙ୍ଗରେ ଏପରି ରୂପ ନଥାଇପାରେ । (ପଢିଲି, ପଢୁଛି) ।

ସ୍ଥଳବିଶେଷରେ ସମାପିକା କ୍ରିୟା ଗଠନ ପାଇଁ ସହାୟକ ଭାବେ 'ଥା' ରୂପ ଯୋଗ କରାଯାଏ । ଯାଇଥିଲି, ଯାଇଥିବି, ଯାଉଥିଲା, ଯାଇଥିବ, ଯାଇଥାନ୍ତା । 'ଥ' ରୂପଟି ସହିତ କାଳ ପ୍ରତ୍ୟୟ ଓ ପରେ ପରେ ପୁରୁଷ ବଚନ ପ୍ରତ୍ୟୟ ଯୁକ୍ତ ହୋଇଥାଏ । ଉପର ଉଦାହରଣରେ 'ଲ', 'ବ' ଦ୍ୱାରା ଅତୀତ ଓ ଭବିଷ୍ୟତକାଳ ସୂଚୀତ ହେଉଛି । ସାଧାରଣଭାବେ ବର୍ତ୍ତମାନକାଳରେ 'ଥ' ରୂପର ପ୍ରୟୋଗ ହୁଏନାହିଁ । ଯଥା: ଯାଇଛି, ଯାଉଛି, ଖାଇଛି, ଖାଉଛି, ପଢିଛି, ପଢୁଛି । 'ଛ୍' ପୂର୍ବରୁ 'ଅ'ର ବ୍ୟବହାର ଅନେକତ୍ର ଉପଲବ୍ଧ ହୋଇଥାଏ । ଯଥା: ଖାଇଅଛି, ଯାଇଅଛି, ପଢୁଅଛି ଇତ୍ୟାଦି ।

କ୍ରିୟାପଦର ଶେଷରେ ପୁରୁଷ ବଚନ ପ୍ରତ୍ୟୟ ଯୁକ୍ତ ହୋଇଥାଏ । ଓଡ଼ିଆ ଭାଷାରେ ଏଗୁଡିକରୁ କେତେଟି ଉଦାହରଣ ନେଇ ଭାଷାଟିର ବୈଶିଷ୍ଟ୍ୟ ପ୍ରତିପାଦନ କରାଯାଇପାରେ । ପ୍ରଥମ ପୁରୁଷ ଏକବଚନ–ଇ– ଖାଇଛି, ଖାଇବି, ଯିବି, ଯାଇଥିଲି । ବହୁବଚନ–ଉ– ଖାଇଛୁ, ଖାଇବୁ, ଯିବୁ, ଯାଇଥିଲୁ । ଦ୍ୱିତୀୟପୁରୁଷ ଏକବଚନ– ଉ– ଖାଇଛୁ, ଖାଇବୁ, ଯିବୁ, ଯାଇଥିଲୁ । ବହୁବଚନ–ଅ– ଖାଇବୁ, ଖାଇବ, ଯିବ, ଯାଇଥିବ । ତୃତୀୟ ପୁରୁଷ ଏକବଚନ– ଅ–– ଖାଇବ, ଯିବ, ଯାଇଥିବ । ଇ–ଖାଇଛି– ।

ଲକ୍ଷ୍ୟ କରାଯାଇପାରେ ଗୋଟିଏ ଗୋଟିଏ ପ୍ରତ୍ୟୟ ଭିନ୍ନ ପ୍ରସଙ୍ଗରେ ମଧ୍ୟ ବ୍ୟବହାର ହେଉଥିବାର ଉଦାହରଣ ମିଳେ । ଏ ବୈଶିଷ୍ଟ୍ୟ ଗୋଟିଏ ପୂର୍ଣ୍ଣାଙ୍ଗ ଭାଷାରେ ସ୍ୱତଃ ସୃଷ୍ଟି ହୋଇଥାଏ । ପ୍ରାୟ ସମସ୍ତ ଭାଷାରେ ଏପରି ବ୍ୟତିକ୍ରମ ସ୍ୱାଭାବିକ ରୂପେ ମିଳେ । ତେଣୁ ଓଡ଼ିଆ ଭାଷା ପାଇଁ ମଧ୍ୟ ଏହି ରୂପଗତ ବ୍ୟତିକ୍ରମ ଏକ ବୈଶିଷ୍ଟ୍ୟ ମାତ୍ର ।

ସଂଖ୍ୟାଭିତ୍ତିକ ବହୁବଚନ ବ୍ୟତୀତ ସମ୍ମାନାର୍ଥେ ବହୁବଚନର ପ୍ରୟୋଗ କର୍ତ୍ତା (ବିଶେଷ୍ୟ/ସର୍ବନାମ)ରେ ପ୍ରତିଫଳିତ ହୋଇପାରେ କିମ୍ବା ନ ହୋଇପାରେ, କିନ୍ତୁ ଏହାର ପ୍ରଭାବ କ୍ରିୟାପଦରେ ସ୍ପଷ୍ଟ ଉପଲବ୍ଧ ହୋଇଥାଏ ।

ମୁଁ ଯାଉଛି– ରାଜକୀୟ ଉକ୍ତି: ଆମ୍ଭେ ଯାଉଅଛୁ । (ସାଧାରଣ: ଆମେମାନେ ଯାଉଅଛୁ/ଛୁ) ।

ତୁ ଯା– ସମ୍ମାନାର୍ଥେ: ତୁମେ/ତୁମ୍ଭେ ଯାଅ (ସାଧାରଣ: ତୁମେମାନେ ଯାଅ) ।

ସେ ଯାଏ– ସମ୍ମାନାର୍ଥେ– ସେ ଯାଆନ୍ତି । (ସାଧାରଣ: ସେମାନେ ଯାଆନ୍ତି) ।

ରାମ ଯାଏ– ସମ୍ମାନାର୍ଥେ– ରାମ (ବାବୁ/ଚନ୍ଦ୍ର) ଯାଆନ୍ତି । (ରାମମାନେ ଯାଆନ୍ତି ନୁହେଁ) ।

ଉପରେ ସୂଚିତ ବାକ୍ୟରେ ବହୁବଚନ ପାଇଁ ବ୍ୟବହୃତ କ୍ରିୟାରୂପ ସଂଖ୍ୟାରେ ଏକ ହେଲେ ମଧ୍ୟ ସମ୍ମାନାର୍ଥେ 'ଏକ' ସୂଚିତ କର୍ତ୍ତା ପାଇଁ ବ୍ୟବହୃତ ହୋଇଛି ।

କ୍ରିୟାପଦ ଗଠନରେ ପ୍ରେରଣାର୍ଥକ ଏବଂ ଆଦେଶଭାବ ସୂଚିତ ହେବା ନିମିତ୍ତ ଧାତୁ ସହ ଅ/ଆ/ଓ 'ଯୋଗହେବାର ଉଦାହରଣ ମିଳିଥାଏ, ଯାହା ପୂର୍ବ ସୂଚିତ ପ୍ରତ୍ୟୟମାନଙ୍କ ପୂର୍ବରୁ ପ୍ରୟୋଗ କରାଯାଏ । ଯଥା:

କ(ର୍‌ଅ) ଉଛି-କରଉଛି, କ (ର୍‌ଆ) ଉଛି- କରାଉଛି, କ(ର୍‌ଓ)ଉଛି- କରୋଉଛି ।

ଅସଂପନ୍ନ ପ୍ରତ୍ୟେୟ ପୂର୍ବରୁ 'ଅ/ଆ/ଓ'ର ବ୍ୟବହାର ଥିବାବେଳେ ଧ୍ୱନ୍ୟାତ୍ମକ ସମତା ପାଇ ସଂପନ୍ନ ପ୍ରତ୍ୟୟ ପୂର୍ବରୁ 'ଆ/ଏ' ଯୋଗ ହୋଇଥାଏ । ଯଥା: କ(ର୍‌ଆ)ଇଛି-କରାଇଛି, କ(ର୍‌ଏ)ଇଛି- କରେଇଛି ।

ନାସ୍ତିବାଚକ ଚିହ୍ନ ସାଧାରଣଭାବେ କ୍ରିୟାପଦର ପରେ ବ୍ୟବହୃତ ହେଉଥିଲେ ମଧ୍ୟ ଆଞ୍ଚଳିକ ଭେଦରେ ପୂର୍ବରୁ ଏବଂ କ୍ରିୟାପଦର ମଝିରେ, ସହାୟକ ସୂଚକ 'ଥ' ପୂର୍ବରୁ ଅସମାପିକା କ୍ରିୟାର ପୂର୍ବରୁ ଯୋଗ ହୋଇଥାଏ । ଯଥା: କରିନାହିଁ (ଶେଷରେ) । ନାଇଁ କରି (ପୂର୍ବସ୍ଥିତି-ପଶ୍ଚିମାଂଚଳ) । କରି ନଥିଲେ ('ଥ' ପୂର୍ବରେ), ନକରି (ଅସମାପିକା-ପୂର୍ବରେ) ।

ଓଡ଼ିଆ ଭାଷାର କ୍ରିୟାପଦ ଗଠନରେ ସଂସ୍କୃତ 'ଅନ୍ତ' ପ୍ରତ୍ୟୟର ସ୍ୱତନ୍ତ୍ର ଭୂମିକା ରହିଥିଲେ ମଧ୍ୟ ଏହାର ପ୍ରୟୋଗରେ କେତେକ ସ୍ୱାତନ୍ତ୍ର୍ୟ ସ୍ପଷ୍ଟ ଉପଲବ୍ଧ ହୁଏ ।

ତୃତୀୟପୁରୁଷ ବହୁବଚନ (ସାଧାରଣ ଓ ସମ୍ମାନାର୍ଥକ)ରେ ଏହାର ପ୍ରୟୋଗ ହୋଇଥାଏ । ଯଥା: ସେ (ମାନେ) ଯାଇଛନ୍ତି/ ବସିଛନ୍ତି/ ଯାଇନାହାନ୍ତି/ ଆସନ୍ତୁ/ ବସନ୍ତୁ ।

ସମ୍ଭାବନା/ ଆକାଂକ୍ଷା/ ସର୍ତ୍ତ ପାଇଁ 'ଅନ୍ତ' ପ୍ରତ୍ୟୟ କ୍ରିୟାପଦ ଗଠନରେ ବ୍ୟବହୃତ ହୋଇଥାଏ । ଯଥା: ହୁଅନ୍ତା (କି), ଆସନ୍ତେ (କି), ଆସନ୍ତା (ଯଦି) ।

ଉଲ୍ଲେଖନୀୟ ଯେ ଧାତୁ ସହ 'ଅନ୍ତ' ପ୍ରତ୍ୟୟ ଯୁକ୍ତ ହୋଇ ବିଶେଷଣପଦ ମଧ୍ୟ ଗଠିତ ହୁଏ । ଯଥା: ଜଳନ୍ତା, ଉଡନ୍ତା, ଚଳନ୍ତା (ଆନ୍ତ୍+ଆରୂପ) ।

ଚଳନ୍ତି (ସମୟ), ସରନ୍ତି (ସୋମବାର), (ଅନ୍ତ + ଇ ରୂପ) ।

ଅତୀତକାଳର ପ୍ରତ୍ୟୟ 'ଲ' ମଧ୍ୟ ସର୍ତ୍ତକାଳରେ ପ୍ରୟୋଗ ହୋଇଥାଏ । ଯଥା : ସେ ଆସିଲେ ମୁଁ ଯିବି, ସକାଳୁ ଉଠିଲେ ଦେହ ସୁସ୍ଥ ରହେ ।

ଏହି 'ଲ' ପ୍ରତ୍ୟୟ ମଧ୍ୟ ଧାତୁରୁ ବିଶେଷଣପଦ ସୃଷ୍ଟି କରିଥାଏ । ଶୋଇଲାପୁଅ, ହଜିଲାପାଟ ।

(ଦ୍ରଷ୍ଟବ୍ୟ-ଅନ୍ୟ କୃଦନ୍ତ ପ୍ରତ୍ୟୟ ଯୋଗରେ ମଧ୍ୟ ବିଶେଷଣରୂପ ଗଠିତ ହୁଏ, ତାହା ଏଠାରେ ଅପ୍ରାସଂଗିକ) ।

ଓଡ଼ିଆ କ୍ରିୟାପଦ ସମ୍ବନ୍ଧରେ ସଂକ୍ଷେପରେ କେତୋଟି ଉଦାହରଣ ଆଧାରରେ ଯେତିକି ବିଚାର ଆଲୋଚନା କରାଗଲା, ଏହା ଓଡ଼ିଆ ଭାଷାର ବୈଶିଷ୍ଟ୍ୟକୁ ସ୍ପଷ୍ଟ ପ୍ରମାଣିତ କରେ । ଏକ ସ୍ୱତନ୍ତ୍ର ଭାଷାଭାବରେ ଏହି ସ୍ତରକୁ ଆସିବା ପଛରେ ପ୍ରାୟ ଦୁଇହଜାରରୁ ଅଧିକ ବର୍ଷର ଯେଉଁ କ୍ରମବିକାଶ ପ୍ରକ୍ରିୟା ରହିଛି, ତାହା ହିଁ ଓଡ଼ିଆ ଭାଷାକୁ ଏକ ସ୍ୱତନ୍ତ୍ର ଭାଷାର ମାନ୍ୟ ପ୍ରଦାନ କରିଛି । ଶବ୍ଦଗଠନ, ପଦଗଠନ, ବିଭକ୍ତି ପ୍ରତ୍ୟୟ, ଅବ୍ୟୟ, କ୍ରିୟାପଦ ଇତ୍ୟାଦିରେ ଯେଉଁ କେତୋଟି ବୈଶିଷ୍ଟ୍ୟ ଆଲୋଚନା କରାଗଲା, ଏହାର ବିଶଦ ବ୍ୟାଖ୍ୟା କରାଯାଇ ବିଚାର କରାଗଲେ ଓଡ଼ିଆ ଭାଷାର ନିଜସ୍ୱ ବୈଶିଷ୍ଟ୍ୟ ଅନ୍ୟମାନଙ୍କଠାରୁ ସ୍ପଷ୍ଟ ବାରି ହୋଇପଡିବ । ପଣ୍ଡିତ ନୀଳକଣ୍ଠ ଦାସଙ୍କ ରଚିତ ବ୍ୟାକରଣରେ ଏ ସମ୍ବନ୍ଧରେ ଅଧିକ ତଥ୍ୟ ପ୍ରମାଣ ଉପସ୍ଥାପନ କରାଯାଇଛି ।

ବାକ୍ୟ: 'ବାକ୍ୟ' ଯେକୌଣସି ଭାଷାର ଯୋଗାଯୋଗର ମୁଖ୍ୟ ମାଧ୍ୟମ । ଗଠନ ଦୃଷ୍ଟିରୁ ଏହାର ସ୍ୱରୂପ ସରଳ, ଯୌଗିକ, ଜଟିଳ, ମିଶ୍ର ଯାହା ହେଉନା କାହିଁକି, ପ୍ରୟୋଗ ଦୃଷ୍ଟିରୁ ଏହାର ଏକ ବାହ୍ୟରୂପ ଓ ଅନ୍ତଃରୂପ ଏପରି ଦୁଇଟି ବ୍ୟବସ୍ଥା ରହିଛି । ପ୍ରାସଙ୍ଗିକଭାବେ ବାକ୍ୟର ଅନେକ ଅପ୍ରକାଶିତ ଅଂଶକୁ ମଧ୍ୟ ଶ୍ରୋତା ବୁଝିଯାଏ । ଯଥା: 'ଆପଣ ଘରୁ ଆସିବାବେଳେ ସବୁକାମ ସାରି ଆସିଛ ତ ?' ଗୋଟିଏ ବାକ୍ୟ ।

'ହଁ'- ଗୋଟିଏ ବାକ୍ୟ । 'ହଁ, ସାରି ଆସିଛି'- ଗୋଟିଏ ବାକ୍ୟ ।

ଉତ୍ତରଟିରେ ପ୍ରାସଙ୍ଗିକଭାବେ ଅନ୍ୟାନ୍ୟ ଉହ୍ୟ କଥା ବୁଝି ହୋଇଯାଉଛି । ଏପରି ବ୍ୟବସ୍ଥାରୁ ସ୍ୱତଃ ପ୍ରମାଣିତ ହୁଏ ଯେ ପୃଥିବୀର ଅନ୍ୟ ଭାଷାମାନଙ୍କ ପରି ଓଡ଼ିଆ ଏକ ମର୍ଯ୍ୟାଦା ସଂପନ୍ନ ପୂର୍ଣ୍ଣାଙ୍ଗ ଭାଷା । ଓଡ଼ିଆ ଭାଷାରେ





ବାକ୍ୟଗଠନର ନିୟମ ବ୍ୟବସ୍ଥା ପାରମ୍ପରିକ ସଂସ୍କୃତ ଭାଷାଠାରୁ ସ୍ୱତନ୍ତ୍ର । ସଂସ୍କୃତ ଭାଷାରେ କର୍ତ୍ତା କର୍ମ କ୍ରିୟାର ସ୍ଥାନ ନିର୍ଦ୍ଦିଷ୍ଟ ନୁହେଁ । ଯଥା: ଅହଂ ଗୃହଂ ଗଚ୍ଛାମି । ଗୃହଂ ଗଚ୍ଛାମି ଅହଂ, ଗୃହଂ ଅହଂ ଗଚ୍ଛାମି.... ପ୍ରତ୍ୟେକଟି ବ୍ୟାକରଣ ସିଦ୍ଧ ଏକ ଭାବ/ ଅର୍ଥ ପ୍ରକାଶରେ ବାଧକ ନୁହେଁ । କିନ୍ତୁ ଓଡ଼ିଆ ଭାଷାରେ କର୍ତ୍ତା, କର୍ମ, କ୍ରିୟା ପ୍ରୟୋଗର କ୍ରମ ନିର୍ଦ୍ଦିଷ୍ଟ । କେବଳ ପଦ୍ୟରଚନା କିମ୍ବା ନାଟକୀୟ ସଂଳାପରେ ଆବଶ୍ୟକ ଛନ୍ଦର ବାଧ୍ୟବାଧକତାରେ କେତେକ ପରିବର୍ତ୍ତନ କରାଯାଇପାରେ । କିନ୍ତୁ ସାଧାରଣଭାବେ ଲୋକମୁଖର ଭାଷାରେ କ୍ରମ ସୁରକ୍ଷିତ । ପୂର୍ବରୁ ଏହି ଆଲୋଚନାରେ ବିଭକ୍ତି ପ୍ରସଙ୍ଗରେ ଏହାର ସୂଚନା ପ୍ରଦତ୍ତ ହୋଇଛି । ବିଭକ୍ତି ଚିହ୍ନ ସଂସ୍କୃତ ଭାଷାରେ ପଦସହ ସଂଲଗ୍ନ ହୋଇ ରହିବା ସାଧାରଣ ନିୟମ ହୋଇଥିବାବେଳେ ଓଡ଼ିଆ ଭାଷାରେ କେତେକ ସ୍ଥଳରେ ଏହାର ବ୍ୟତିକ୍ରମ ଦେଖାଯାଏ । ପ୍ରଥମା ବିଭକ୍ତିରେ 'ଟା', 'ଟି' ନିର୍ଦ୍ଦିଷ୍ଟ ସୂଚକ ଚିହ୍ନ ବିଭକ୍ତି ପ୍ରତ୍ୟୟ ପରି ବୋଧ ହେଲେ ମଧ୍ୟ ଏହା ବିଭକ୍ତିର କାର୍ଯ୍ୟ ନକରି କେବଳ ସଂଖ୍ୟାସୂଚକ 'ଏକ'ର ନିର୍ଦ୍ଦିଷ୍ଟ ଅର୍ଥକୁ ନିର୍ଦ୍ଦେଶ କରେ । ପିଲା (ଯେକୌଣସି ଏକ ପିଲା) ଖେଳୁଛି । ପିଲାଟି (ନିର୍ଦ୍ଦିଷ୍ଟ ଗୋଟିଏ ପିଲା) ଖେଳୁଛି ।

ସେହିପରି ବହୁବଚନରେ ପିଲା (ବହୁବଚନ) ଖେଳୁଛନ୍ତି । ପିଲାଏ (ବହୁବଚନ) ଖେଳୁଛନ୍ତି । ପିଲାମାନେ (ବହୁବଚନ) ଖେଳୁଛନ୍ତି । ଏଠାରେ କ୍ରିୟାପଦ ଆଧାରରେ କର୍ତ୍ତାର ବଚନ ବୋଧ ହେଉଥିଲେ ମଧ୍ୟ କୌଣସି ବିଭକ୍ତି ଚିହ୍ନ ନାହିଁ । 'ମାନ' ଏବଂ 'ଏ' କେବଳ ବହୁବଚନର ପ୍ରତ୍ୟୟ ଭାବେ ପ୍ରୟୋଗ ହୋଇଛି ।

ଦ୍ୱିତୀୟା ବିଭକ୍ତିରେ 'ଙ୍କ', 'କୁ' ଏବଂ ଘ ଚିହ୍ନର ସ୍ୱଚ୍ଛନ୍ଦ ପ୍ରୟୋଗ ମିଳିଥାଏ । 'ବଜାରକୁ ଯାଉଛି' । 'ବଜାର ଯାଉଛି' ବାକ୍ୟରେ 'ବଜାରକୁ' ଏବଂ 'ବଜାର' ଉଭୟ କର୍ତ୍ତା ନୁହନ୍ତି, ଓଡ଼ିଆ ଭାଷାର ଏପରି ବାକ୍ୟରେ କର୍ମକାରକ ଓ ଦ୍ୱିତୀୟ ବିଭକ୍ତିର ରୂପ ଭାବେ ପ୍ରୟୋଗ ହୋଇଥାଏ । ଶାବଳ ମାରୁଛି (ଶାବଳ–ରେ–) (ତୃତୀୟ) କୋଡି ହାଣିବା (କୋଡିରେ–) (ତୃତୀୟ) ଅବଶ୍ୟ ସମାସ କ୍ଷେତ୍ରରେ ଏପରି ଶବ୍ଦର ସ୍ୱତନ୍ତ୍ର ବିଚାର କରାଯାଇପାରେ । ଓଡ଼ିଆ ଭାଷାରେ ବାକ୍ୟରେ ବିଭକ୍ତି ଚିହ୍ନ ଅପେକ୍ଷା ପ୍ରାସଙ୍ଗିକତାର ଗୁରୁତ୍ୱ ଅଧିକ । ଏ ଦୃଷ୍ଟିରୁ ବ୍ୟାକରଣିକ ଶୃଙ୍ଖଳା ଅପେକ୍ଷା ଅର୍ଥପ୍ରକାଶ ବା ଭାବ ଆଦାନପ୍ରଦାନରେ ଏହି ଭାଷା ଅଧିକ ଦୃଷ୍ଟି ଦେଇଥାଏ । ଗୋଟିଏ ଗୋଟିଏ ବ୍ୟାକରଣିକ ପ୍ରତ୍ୟୟ ପ୍ରସଙ୍ଗ କ୍ରମେ ଭିନ୍ନ ଭିନ୍ନ ବିଭକ୍ତିକୁ ପ୍ରକାଶ କରେ । 'ଏ'– ପ୍ରଥମା ବିଭକ୍ତି ବହୁବଚନ (ପିଲେ, ପିଲାଏ) ଦ୍ୱିତୀୟା– (ହାତେ ଆସେ ହାତୁ ପଡିବା ପାଇଁ ସେ), ତୃତୀୟା (ବ୍ରହ୍ମ ଅସ୍ତ୍ରେ ଭେଦକରି), ଚତୁର୍ଥୀ– (ତାଙ୍କେ ଦିଅ), ସପ୍ତମୀ– ଘରେ ବାହାରେ । ଓଡ଼ିଆ ଭାଷାର ବାକ୍ୟରେ ପଦଗଠନ ସମୟରେ ଷଷ୍ଠୀ ବିଭକ୍ତି ଚିହ୍ନ 'ର୍' ଏକ ସ୍ୱତନ୍ତ୍ର ଭୂମିକା ନିର୍ବାହ କରେ । ସ୍ଥଳବିଶେଷରେ ଅନ୍ୟ ବିଭକ୍ତି ପ୍ରତ୍ୟୟର ସହଜତା ପାଇଁ 'ର୍' ରୂପଟି ସହଯୋଗୀ ବା ଆଧାର ରୂପେ କାର୍ଯ୍ୟ କରେ । ଯଥା: ର୍ + ଏ (ଛୁରୀରେ, ହାତରେ, ଗାଆଁରେ) । ର୍ + ଉ (ଗାଆଁରୁ, ଗଛରୁ) (ତା'ଠାରୁ । ର୍ + ଇ (ତାହାରି, ତାଙ୍କରି) ।

ଓଡ଼ିଆ ବାକ୍ୟ ଗଠନରେ କେତେକ 'କ୍ରିୟାହୀନ ବାକ୍ୟ' ଉଲ୍ଲେଖ କରିଥାନ୍ତି । କିନ୍ତୁ ବାସ୍ତବରେ ବାହ୍ୟ ରୂପରେ କ୍ରିୟାପଦ ନଥିଲେ ମଧ୍ୟ ଏହା ସ୍ୱତଃ ଉହ୍ୟ ରହିଥାଏ । ଯଥା: ସେ ଗୋଟିଏ ଭଲ ଲୋକ । ଏପରି ବାକ୍ୟରେ 'ଅଟେ' ରୂପକ ଏକ କ୍ରିୟାପଦର ସ୍ଥିତିକୁ ସ୍ୱୀକାର କରାଯାଏ । ଏହିପରି ଅଟେ, ଅଛି, ହୁଏ, ଥାଏ ଇତ୍ୟାଦି ଅସ୍ତିବାଚକ ଏବଂ ନାହିଁ, ନୁହେଁ ପରି ନାସ୍ତିବାଚକ ରୂପ ବାକ୍ୟରେ କ୍ରିୟାପଦର ଦାୟିତ୍ୱ ନିର୍ବାହ କରିଥାଏ ।

ପାରମ୍ପରିକ ବ୍ୟାକରଣ ଆଧାରରେ ଓଡ଼ିଆ ଭାଷାରେ ବାକ୍ୟଗଠନ ସରଳ, ଯୌଗିକ, ଜଟିଳ ବା ମିଶ୍ର ରୂପର ବ୍ୟବହାର ଏହି ଭାଷାର ପୂର୍ଣ୍ଣତାର ଲକ୍ଷଣ । ସମଗୋତ୍ରୀୟ ଆର୍ଯ୍ୟଭାଷା, ପଡୋଶୀ ଦ୍ରାବିଡ ଭାଷା ଏବଂ ଏ ମାଟିର ଆଦିବାସୀ ଭାଷାରୁ ବହୁ ସମ୍ପଦ ସଂଗ୍ରହ କରି ଓଡ଼ିଆ ଭାଷା ନିଜକୁ ସମୃଦ୍ଧ କରିଛି । ଏଥିସହ ଫାର୍ଶୀ, ଉର୍ଦ୍ଦୁ, ଆରବୀ, ପର୍ତ୍ତୁଗୀଜ, ଇଂରାଜୀ ଏବଂ ସାମ୍ପ୍ରତିକ

ସମୟରେ ପୃଥିବୀର ଅନେକ ଭାଷାରୁ (ସୁନାମି) ଶବ୍ଦକୁ ଆପଣେଇ ଆହୁରି ବିକଶିତ ହୋଇ ଚାଲିଛି । ଧ୍ୱନି, ଲିପି, ଶବ୍ଦ, ପଦ, ବାକ୍ୟ ଏବଂ ଆହରଣ ଓ ସମନ୍ୱୟ ଗୁଣରେ ବିମଣ୍ଡିତ ଓଡ଼ିଆ ଭାଷା ଖ୍ରୀଷ୍ଟପୂର୍ବ ଦ୍ୱିତୀୟ ଶତକରେ ନାଟ୍ୟ ସଂଳାପ ଭାବେ, ପରେ ଖାରବେଳଙ୍କ ଶିଳାଲେଖରେ, ଭୌମକର, କେଶରୀବଂଶ, ଗଙ୍ଗବଂଶ, ସୂର୍ଯ୍ୟବଂଶ, ଭୋଇବଂଶର ଶାସନକାଳରେ, ଶ୍ରୀଜଗନ୍ନାଥଙ୍କ ସନ୍ଧାନ, ପ୍ରତିଷ୍ଠା ଓ ରୀତିନୀତିର ବିବର୍ତ୍ତନରେ, ସନାତନ, ଜୈନ, ବୌଦ୍ଧ, ଶୈବ, ଶାକ୍ତ, ବୈଷ୍ଣବ ଦର୍ଶନ ତତ୍ତ୍ୱରେ, ପରିବ୍ରାଜକମାନଙ୍କ ଅନୁଭବରେ, ପଣ୍ଡିତମାନଙ୍କ ଚର୍ଚ୍ଚା ଓ ସୃଷ୍ଟିରେ, ବୟାକରଣିକମାନଙ୍କ ବିଚାରରେ ସ୍ଥାନ ପାଇ ନିଜ ପାଇଁ ଏକ ପରମ୍ପରାସିଦ୍ଧ ପ୍ରାମାଣିକ ସ୍ଥାନ ଓ ପରିଚୟ ସୃଷ୍ଟି କରିଛି ।

(*ସୌଜନ୍ୟ* : ନିର୍ଦ୍ଦେଶକ, ଓଡ଼ିଆ ଭାଷା ପ୍ରତିଷ୍ଠାନ, ଭୁବନେଶ୍ୱର–୧)

---

ସେନାପତି ବଗିଚା, କ୍ରୁମୁଟିପାଟଣା
ଜିଲ୍ଲା– ପୁରୀ–୦୨





# ଅଲ୍‌ଚିକି ଲିପି ଉଦ୍ଭାବକ : ପଣ୍ଡିତ ରଘୁନାଥ ମୁର୍ମୁ

ଠାକୁରଦାସ ହାଁସଦାଃ

ଭାରତର ଆଦିବାସୀ ସମ୍ପ୍ରଦାୟ ଲୋକମାନଙ୍କ ମଧ୍ୟରେ ସାନ୍ତାଳ ସମ୍ପ୍ରଦାୟର ଲୋକମାନେ ବହୁଳ ମାତ୍ରାରେ ଅଛନ୍ତି । ଭାରତ ଭିତରେ ଏମାନେ ମୁଖ୍ୟତଃ, ଓଡିଶା ପ୍ରଦେଶ, ଝାରଖଣ୍ଡ, ବିହାର, ପଶ୍ଚିମବଙ୍ଗ, ମଧ୍ୟପ୍ରଦେଶ, ଛତିଶଗଡ, ଆସାମ ଓ ତ୍ରିପୁରା ରାଜ୍ୟମାନଙ୍କରେ ଥିବାବେଳେ, ଭାରତ ବାହାରେ ଏମାନେ ନେପାଳର ଝାପା, ମୋରାଙ୍ଗ ଓ ସୁନ୍‌ସାରି ଜିଲ୍ଲା, ବଙ୍ଗଳା ଦେଶର ଛୋଟନାଗ୍‌ପୁର, ରାଜମହଲ ଓ ଦଲମା ପାହାଡ ଅଂଚଳର ପାଦଦେଶରେ, ଦାମୋଦର ଉପତ୍ୟକାରେ, ଭୁଟାନ୍ ଏବଂ ମିଆଁମାର୍‌ର ସୀମା ଅଂଚଳମାନଙ୍କରେ ବସବାସ କରନ୍ତି । ଏହି ସାନ୍ତାଳି ଲୋକମାନଙ୍କର ସଭ୍ୟତା, ସମାଜ, ସଂସ୍କୃତି, ଭାଷା, ପର୍ବପର୍ବାଣି, ଦେବା-ଦେବୀ, ନୀତି-ନିୟମ ଓ ବ୍ୟବହାର ଖୁବ୍ ଉଚ୍ଚକୋଟୀର ଅଟେ । ଏମାନେ ମନୁଷ୍ୟ ସଭ୍ୟତାର Austro Asiatic ଭାଷା କହୁଥିବା ମୁଣ୍ଡାରି ସମ୍ପ୍ରଦାୟର ଲୋକ ଅଟନ୍ତି ଏବଂ ଏମାନେ ମୁଖ୍ୟତଃ କୃଷି ଉପରେ ଜୀବିକା ନିର୍ବାହ କରିଥାନ୍ତି । ମୁଣ୍ଡା, ସାନ୍ତାଳ ଏବଂ ହୋ ଆଦିବାସୀ ସମ୍ପ୍ରଦାୟମାନେ ଏହି ସଭ୍ୟତାରେ ଅନ୍ତର୍ଭୁକ୍ତ । ଏହି ସମ୍ପ୍ରଦାୟର ଭାଷାରେ ସେମାନେ ନିଜକୁ ଖେରୱାଲ୍ ବଂଶ ବୋଲି ସମ୍ବୋଧିତ କରିଥାନ୍ତି । ତେଣୁ, ଖେରୱାଲ୍ ବଂଶ କହିଲେ ଏହି ସାନ୍ତାଳ, ମୁଣ୍ଡା ଓ ହୋ ସମ୍ପ୍ରଦାୟର ଲୋକଙ୍କୁ ବୁଝାଇ ଥାଏ ଏବଂ ଏକଇ ଜନନୀର ତିନି ସୁ-ପୁତ୍ର ସ୍ୱରୂପ ସେମାନେ ପରସ୍ପରକୁ ଅନ୍ତର ଆତ୍ମାରେ ଆଦର କରି ବିପଦ-ଆପଦରେ ମଧ୍ୟ ସାହାଯ୍ୟ କରିଥାନ୍ତି । ସାନ୍ତାଳ ସମ୍ପ୍ରଦାୟର ଲୋକମାନେ ଆମ ଓଡିଶାର ୬୨ ପ୍ରକାର ଆଦିବାସୀମାନଙ୍କଠାରୁ ଅନ୍ୟତମ । ଏମାନଙ୍କ ଭାଷାର ଏକ ସ୍ୱତନ୍ତ୍ର ଲିପି ରହିଛି, ଏହାକୁ 'ଅଲ୍‌ଚିକି' କୁହାଯାଏ । ଅଲ୍‌ଚିକିର ଉଦ୍ଭାବକ ପଣ୍ଡିତ ରଘୁନାଥ ମୁର୍ମୁ ୧୯୨୫ ମସିହାରେ ଏହାକୁ ଉଦ୍ଭାବନ କରିଥିଲେ ଏବଂ ଏହା ୨୦୦୩ ମସିହା ଡିସେମ୍ବର ମାସ ୨୨ ତାରିଖ ଦିନ ଭାରତ ସରକାରଙ୍କ ଦ୍ୱାରା ସମ୍ବିଧାନ ସ୍ୱୀକୃତି ମିଳିବା ଫଳରେ, ଏହା ରାଷ୍ଟ୍ରଭାଷା ରୂପେ ପରିଗଣିତ ହୋଇଅଛି । ଏହି ଦିନଟି ସାନ୍ତାଳି ଆଦିବାସୀମାନଙ୍କର ବଡ ଖୁସିର ଦିନ ଅଟେ ଏବଂ ସେମାନେ ଏହି ଦିବସଟିକୁ 'ସାନ୍ତାଳି ଭାଷା ଦିବସ' ହିସାବରେ ସାରା ଭାରତରେ ଅଲ୍‌ଚିକି ପାର୍‌ସି ମାହା ଦିବସ ରୂପେ ପାଳନ କରନ୍ତି ।



**ଆଦିବାସୀ ସାନ୍ତାଳ ସମ୍ପ୍ରଦାୟର ଏହି ଅଲ୍‌ଚିକି ଅକ୍ଷରଗୁଡିକ ପ୍ରକୃତି ସହିତ ଜଡିତ ହୋଇ ରହିଛି, ଏହାର ମହତ ପ୍ରକୃତି ପରି ସ୍ୱଚ୍ଛ ଏବଂ ସତ୍ୟ ଅଟେ ।**

ରଘୁନାଥ ମୁର୍ମୁ ରାଇରଙ୍ଗପୁର ସନ୍ନିକଟ ଡାଣ୍ଡବୁସ୍ ଗ୍ରାମରେ ୧୯୦୫ ମସିହା ବୈଶାଖ ମାସ ବୁଦ୍ଧ ପୂର୍ଣ୍ଣିମା ଦିନ ଜନ୍ମ ଗ୍ରହଣ କରିଥିଲେ । ପିଲାଟିର ଜନ୍ମ ପରଦିନ

ଏକ ସାଧୁ ବାବା ତାଙ୍କରି ଘରକୁ ଆସିଥିଲେ ଏବଂ କହିଥିଲେ– ଏହି ପିଲାଟି ଦିନେ ଜଣେ ମହାପୁରୁଷ ହେବ, ନିଜର କାମ ଓ ଯଶ ପାଇଁ ସାନ୍ତାଳି ସମାଜରେ ବିଦ୍ୟମାନ ହେବ ଏବଂ ଯୁଗଯୁଗ ଧରି ଅମର ରହି ପୂଜା ପାଇବ । ବାସ୍ତବରେ ସେ ସାଧୁ ଜଣକ କହିଥିବା କଥା ସତ୍ୟରେ ପାଲଟିଗଲା ଏବଂ କାଳକ୍ରମେ ସେ ଜଣେ ମହାପୁରୁଷ ହୋଇ ଏ ପୃଥିବୀରେ ଯୁଗ ଯୁଗ ଧରି ଅମର ହୋଇ ରହିଲେ । ସେ ପିଲାଟି ଆଉ କେହି ନଥିଲେ ସ୍ୱୟଂ ପଣ୍ଡିତ ରଘୁନାଥ ମୁର୍ମୁ । ତାଙ୍କରି ଏହି ଜନ୍ମଦିନଟି ସାରା ଭାରତରେ ଓ ଭାରତ ବାହାରେ ଗୁରୁକୁନାମି ରୂପେ ପାଳନ କରାଯାଉଅଛି । ରଘୁନାଥ ମୁର୍ମୁଙ୍କର ପିତାଙ୍କର ନାମ ସିଦ ମୁର୍ମୁ ଓ ଭଲ ନାମ ନନ୍ଦଲାଲ ମୁର୍ମୁ ଏବଂ ମାତାଙ୍କର ନାମ ସଲମା ମୁର୍ମୁ । ଏହି ଦମ୍ପତିଙ୍କର ଦୁଇ ଝିଅ ପରେ ଦୁଇ ପୁଅ ହୋଇଥିଲେ । ଏହି ପିଲାମାନଙ୍କର ନାମସବୁ ଯଥାକ୍ରମେ– ବାହା ମୁର୍ମୁ, ସନା ମୁର୍ମୁ, ରଘୁନାଥ ମୁର୍ମୁ ଏବଂ ଦୁବରାଜ ମୁର୍ମୁ । ପିତା ନନ୍ଦଲାଲ ଜଣେ ନିପୁଣ ଓ ସୁନ୍ଦର ବଢେଇ କାମ ଜାଣିଥିଲେ ଏବଂ ସେ ଏଥିରେ ଖ୍ୟାତିଅର୍ଜନ କରିଥିଲେ । ମଧ୍ୟବିତ୍ତ ପରିବାରର ସେ ଜଣେ ଦକ୍ଷ ଚାଷୀ ଥାଇ ମଧ୍ୟ ବଢେଇ କାମ ବେଶ୍ ଜାଣିଥିଲେ । ତାଙ୍କରି ଗ୍ରାମରେ ସେ ପୂଜାରୀ (ନାୟ୍କେ) ମଧ୍ୟ ଥିଲେ । ଡାଣ୍ଡବୁସ ଗ୍ରାମର ବିଭିନ୍ନ ଧର୍ମପୀଠ ଯଥା ଜାହିରା (ଜାହେର୍ ବଙ୍ଗା), ଘରପୂଜା(ଭିତାର୍ ବଙ୍ଗା), ଗୋ–ଶାଳା ପୂଜା(ଗହାଲ୍ ବଙ୍ଗା) ଓ ଗାଁ–ଦାଣ୍ଡ ପୂଜା(ଗଶାଣେ ବଙ୍ଗା) ଆଦି ଧର୍ମପୀଠମାନଙ୍କଠାରେ ଏବଂ ବିଭିନ୍ନ ପର୍ବପର୍ବାଣିମାନଙ୍କରେ ପିତା ସିଦ ମୁର୍ମୁ ପୂଜାପାଠ କରୁଥିଲେ । ତତ୍ ସଙ୍ଗେ ସଙ୍ଗେ ଗ୍ରାମର ପରିବାର କିମ୍ବା ସାହି ଭିତରେ ବାଦ–ବିବାଦ ଲାଗିଲେ, ସେ ବିଚାର କରି ନ୍ୟାୟମାନ ପ୍ରଦାନ କରୁଥିଲେ । ପର୍ବ ପାଳନ କରିବାର ତିଥି ଓ ବାରମାନ ସ୍ଥିର କରୁଥିଲେ, ଫଳରେ ସାନ୍ତାଳ ସମାଜରେ ତାଙ୍କୁ ଲୋକମାନେ ବେଶ୍ ମାନୁଥିଲେ ଓ ତାଙ୍କୁ ଖାତିର ମଧ୍ୟ ମିଳୁଥିଲା । ଅନେକାଂଶ ସମୟରେ ବାଳକ ରଘୁନାଥ ମୁର୍ମୁ ପିତାଙ୍କୁ ବଢେଇ ଓ କୃଷି କାମରେ ସାହାଯ୍ୟ କରୁଥିଲେ ଏବଂ ପିତାଙ୍କଠୁ ଭଲ ବଢେଇ କଳା ଓ କାରୁକାର୍ଯ୍ୟ ଶିଖିଥିଲେ, ଯାହା ପରବର୍ତ୍ତୀ ଅଲ୍‌ଚିକି ଉଦ୍ଭାବନ ସମୟରେ ଦୃଷ୍ଟାନ୍ତ ଦେଖିବାକୁ ମିଳିଥାଏ । ସମାଜରେ ସେକାଳରେ ଘଟୁଥିବା ବାଦ ବିବାଦ ଏବଂ ବିଭେଦ ତାଙ୍କୁ ଅଧିକାଂଶ ସମୟରେ ସାମ୍ନା କରିବାକୁ ପଡୁଥିଲା । ପିଲାଦିନରୁ ସେ ଅତ୍ୟନ୍ତ ପରିଶ୍ରମୀ, ବିଚକ୍ଷଣ ଏବଂ ବୁଦ୍ଧିମାନ୍ ଥିଲେ । ପିଲାଦିନରୁ ହିଁ ତାଙ୍କର ଜାତିଗତ ଦେଶ ପ୍ରେମ ଥିଲା ଏବଂ ସମାଜର କୁସଂସ୍କାର ଦୂର କରିବା ପ୍ରତି ସର୍ବଦା ଚେଷ୍ଟିତ ଥିଲେ । ନିଜ ସାନ୍ତାଳି ସମାଜର ଲୋକମାନେ ଦିନ ମଜୁରିଆ, ଚାଷୀ, ବଢେଇ ଏବଂ ଛୋଟ–ବଡ ଚାକିରିଆ ଥିବାରୁ ସେମାନଙ୍କର ଜୀବନ ଯାପନରେ କିପରି ଉନ୍ନତି ଘଟିବ ସେଥିପାଇଁ ସେ ବିଶେଷ ଚିନ୍ତିତ ଥିଲେ ।

ରଘୁନାଥ ମୁର୍ମୁଙ୍କର ଶିକ୍ଷା ଗମ୍ଭାରିଆ ବିଦ୍ୟାଳୟରୁ ଆରମ୍ଭ କରି ବହଳଦା ବିଦ୍ୟାଳୟରେ, ପରେ ବାରିପଦା ଉଚ୍ଚ ବିଦ୍ୟାଳୟରୁ ଉଚ୍ଚଶିକ୍ଷା ଲାଭ କଲା ପରେ ଶିକ୍ଷା ସମାପନ କରିଥିଲେ । ସେକାଳର ଶିକ୍ଷାର ମହତ ଏବେକାର ଶିକ୍ଷା ଅପେକ୍ଷା ଅନେକ ବେଶି । ପଣ୍ଡିତ ରଘୁନାଥ ମୁର୍ମୁ ସନ୍ ୧୯୨୪ ମସିହାରେ ବାରିପଦା ହାଇସ୍କୁଲରେ ପାଠପଢିବା ପାଇଁ ଆସିଥିଲେ । ଠିକ ସେହି ବର୍ଷ ହିଁ ତାଙ୍କର ପିଲାଦିନର ସ୍କୁଲ ସାଙ୍ଗ ଏବଂ ସମ୍ପର୍କୀୟ ମାମୁ ସାଉନା ମୁର୍ମୁ କାଦୁଆଣିରୁ ସଦର ମହକୁମା ବାରିପଦାକୁ ଗୁରୁଶିକ୍ଷା ପ୍ରଶିକ୍ଷଣ ନେବାପାଇଁ ଆସି ଏକ ଛାତ୍ରାବାସରେ ରହିଥାନ୍ତି । ମୟୂରଭଞ୍ଜ ସେତେବେଳେ ଏକ ଗଡଜାତ ରାଜ୍ୟ ଭାବରେ ପରିଗଣିତ ହେଉଥିଲା ଏବଂ ମହାରାଜ ସାର୍ ଶ୍ରୀ ପ୍ରତାପ ଚନ୍ଦ୍ର ଭଞ୍ଜଦେଓ (ଶାସନ କାଳ ୨୧–୪–୧୯୨୮ରିଖଠାରୁ ତା:୧–୧–୧୯୪୯ରିଖ) ମୟୂରଭଞ୍ଜ ଦେଶକୁ ଶାସନ କରୁଥିଲେ । ମହାରାଜା ରାଜବାଟୀ ବାରିପଦାରେ ବସି ସମଗ୍ର ମୟୂରଭଞ୍ଜ ଦେଶରେ ଶାସନ ଚଳାଉଥିଲେ । ରାଜପ୍ରାସାଦରୁ ରଘୁନାଥ ମୁର୍ମୁ ପଢୁଥିବା ବାରିପଦା ଉଚ୍ଚ ବିଦ୍ୟାଳୟର ଦୂରତା ମାତ୍ର ତିନି କିଲୋମିଟର ଥିଲା । ଏହିଠାରେ ଏକଦା ରାଜା ଶାସନ ଚାଲିଥିବା ବେଳେ ହିଁ ପଣ୍ଡିତ ରଘୁନାଥ ମୁର୍ମୁଙ୍କର ପାଠପଢା ସହିତ ଅଲ୍‌ଚିକି ଅକ୍ଷର ଉଦ୍ଭାବନ କରିବା କାମ ମଧ୍ୟ ପ୍ରବଳ ବେଗରେ ଚାଲିଥିଲା । ମାମୁ ସାଉନା ମୁର୍ମୁ ଭଣଜା

ରଘୁନାଥ ମୁର୍ମୁଙ୍କୁ ଅକ୍ଷର ଉଦ୍ଭାବନ କରିବା ପ୍ରକ୍ରିୟାରେ ଅନେକ ସାହାଯ୍ୟ ଓ ଉତ୍ସାହ ଦେଉଥିଲେ, ଯାହା ରଘୁନାଥ ମୁର୍ମୁଙ୍କୁ ଦିନେ ଏକ ନିର୍ଦ୍ଦିଷ୍ଟ ଲକ୍ଷ୍ୟପଥରେ ପହଂଚାଇ ଦେଇଥିଲା । ପଣ୍ଡିତ ରଘୁନାଥ ମୁର୍ମୁ ପାଠ ପଢିବା ସହିତ ଲିପି ତିଆରି କରିବା ପ୍ରକ୍ରିୟାରେ ଦିନ ରାତି ଲାଗିପଡି ସନ ୧୯୨୫ ମସିହାରେ ସାନ୍ତାଳି ଭାଷାର ଅଲ୍‌ଚିକି ଲିପିର ସମସ୍ତ ୩୦ଟି ଅକ୍ଷର ଆବିଷ୍କାର କରିପାରିଥିଲେ । ସେତେବେଳକୁ ପଣ୍ଡିତ ରଘୁନାଥ ମୁର୍ମୁ 'ନବମ ଶ୍ରେଣୀର ମେଧାବୀ' ଛାତ୍ର ଥିଲେ ଏବଂ ଶ୍ରେଣୀରେ ମଧ୍ୟ ସେ ହିଁ ପ୍ରଥମ ସ୍ଥାନ ଅଧିକାର କରୁଥିଲେ । ପଣ୍ଡିତ ରଘୁନାଥ ମୁର୍ମୁ ଆବିଷ୍କାର କରିଥିବା ଅଲ୍‌ଚିକି ଲିପି ଦୁଇ ପ୍ରକାରର ଯଥା– ୧) ଛାପା ଅକ୍ଷର ଏହାକୁ କେବଳ ବହିପତ୍ର, ଲିଫଲେଟ୍ ଛାପିବାରେ ବ୍ୟବହୃତ ହେଉଥିବାରୁ ଏହାକୁ ସାନ୍ତାଳିରେ ଛାପା ଅଲ୍ ବୋଲି କୁହାଯାଏ ଏବଂ ୨) ହସ୍ତଲିପି –

## -: ଅଲ୍‌ଚିକି ଅକ୍ଷର ମାଳା :-

| ଛାପା ଅକ୍ଷର (Printing Letter) | ହସ୍ତ ଲିପି (Cursive writing Letter) |
|---|---|
| ᱚ ᱛ ᱜ ᱝ ᱞ<br>ଅ ଅତ୍ ଅଗ୍ ଅଂ ଅଲ୍ | ᱚ ᱛ ᱜ ᱝ ᱞ<br>ଅ ଅତ୍ ଅଗ୍ ଅଂ ଅଲ୍ |
| ᱟ ᱠ ᱡ ᱢ ᱣ<br>ଆ ଆକ୍ ଆଜ୍ ଆମ୍ ଆଭ୍ | ᱟ ᱠ ᱡ ᱢ ᱣ<br>ଆ ଆକ୍ ଆଜ୍ ଆମ୍ ଆଭ୍ |
| ᱤ ᱥ ᱦ ᱧ ᱨ<br>ଇ ଇସ୍ ଇହ୍ ଇଁଞ୍ ଇର୍ | ᱤ ᱥ ᱦ ᱧ ᱨ<br>ଇ ଇସ୍ ଇହ୍ ଇଁଞ୍ ଇର୍ |
| ᱩ ᱪ ᱫ ᱬ ᱭ<br>ଉ ଉଚ୍ ଉଦ୍ ଉଣ୍ ଉୟ୍ | ᱩ ᱪ ᱫ ᱬ ᱭ<br>ଉ ଉଚ୍ ଉଦ୍ ଉଣ୍ ଉୟ୍ |
| ᱮ ᱯ ᱰ ᱱ ᱲ<br>ଏ ଏପ୍ ଏଡ୍ ଏନ୍ ଏଲ୍ | ᱮ ᱯ ᱰ ᱱ ᱲ<br>ଏ ଏପ୍ ଏଡ୍ ଏନ୍ ଏଲ୍ |
| ᱳ ᱴ ᱵ ᱶ ᱷ<br>ଓ ଓଟ୍ ଓବ୍ ଓଙ୍ ଓହ୍ | ᱳ ᱴ ᱵ ᱶ ᱷ<br>ଓ ଓଟ୍ ଓବ୍ ଓଙ୍ ଓହ୍ |
| ସଂଖ୍ୟା ମାନ- ᱐=୦,᱑=୧,᱒=୨,᱓=୩,᱔=୪,᱕=୫,᱖=୬,᱗=୭,᱘=୮,᱙=୯ | |
| ମାତ୍ରା ଚିହ୍ନମାନ- ᱸ ᱹ ᱻ ᱼ ᱽ<br>ମୁଁଟୁଡାଃ, ଗାହ୍ଲାଟୁଡାଃ, ରେଲା, ଫାର୍କା, ଅହଦ୍ | |

ᱛ(ଅତ୍) ମାନେ ଭୂମି, ᱜ(ଅଗ୍) ମାନେ ଧୂଆଁ ଦେବା, ᱝ(ଅଂ) ମାନେ ଫୁଙ୍କିବା, ᱞ(ଅଲ୍) ମାନେ ଲେଖିବା, ᱠ(ଆକ୍) ମାନେ ସେ, ᱢ(ଆମ୍) ମାନେ ତମେ, ᱧ(ଇଁଞ୍) ମାନେ ମୁଁ, ᱨ(ଇର୍) ମାନେ କାଟିବା, ᱫ(ଉଦ୍) ମାନେ ଛତୁ, ᱱ(ଏନ୍) ମାନେ ଖଳାରେ ହଳାଚାପି ଧାନ ଅମଳ କରିବା ଆଦି ଦୃଷ୍ଟାନ୍ତ ରହିଅଛି । କେତେକ ଅଲ୍‌ଚିକି ଲିପି ମଣିଷର ଚକିତ ଭାବକୁ ବୁଝାଇ ଥାଏ, ସେଗୁଡ଼ିକ ହେଲା - ᱣ(ଆଉ), ᱥ(ଇସ୍), ᱦ(ଇହ୍), ᱭ(ଉୟ୍), ᱷ(ଓହ୍) ଇତ୍ୟାଦି ।

ଏହାକୁ ସାନ୍ତାଳି ଭାଷାରେ 'ଉଷାର ଅଲ୍' ବୋଲି କୁହାଯାଏ ।

ଏହି ଦ୍ୱିତୀୟ ବିଭାଗରେ ଲିପି ସାହାଯ୍ୟରେ ବିଭିନ୍ନ ଚିଠିପତ୍ର, ଦସ୍ତଖତ ଓ ଦଲିଲମାନଙ୍କରେ ଅତି ସହଜରେ ଲେଖାଯାଇପାରେ । ସାନ୍ତାଳି ଭାଷାର ଏହି ଅଲ୍‌ଚିକି ଲିପି, ଅନ୍ୟାନ୍ୟ ଜାତିର ଭାଷା ପରି ଏହାର ବିଶେଷତ୍ୱ ମଧ୍ୟ ଅନେକ ରହିଅଛି । ଏଥିରେ ସମୁଦାୟ ୩୦ଟି ଅକ୍ଷର ମଧ୍ୟରୁ ୬ଗୋଟି ସ୍ୱରବର୍ଣ୍ଣ ଓ ୨୪ ଗୋଟି ବ୍ୟଞ୍ଜନ ବର୍ଣ୍ଣମାନ ରହିଛି । ଏହା ବ୍ୟତୀତ ୫ଗୋଟି ମାତ୍ରା ଚିହ୍ନମାନ ମଧ୍ୟ ରହିଅଛି, ଯାହା ଶବ୍ଦମାନ ଗଠନ ପ୍ରକ୍ରିୟାରେ ବ୍ୟବହୃତ ହୋଇଥାଏ । ଏହି ୩୦ଟି ଅଲ୍‌ଚିକି ଲିପିକୁ ୫ଗୋଟି ଧାଡିରେ ବିଭକ୍ତ କରାଯାଇଅଛି ଏବଂ ପ୍ରତ୍ୟେକ ଧାଡିରେ ୬ଟି ଲେଖାଏଁ ଲିପି ରହିଛି । ପ୍ରତ୍ୟେକ ଧାଡିର ପ୍ରଥମ ଲିପିଟି ସ୍ୱର ବର୍ଣ୍ଣ ଅଟେ ଏବଂ ଏହା ବ୍ୟଞ୍ଜନ ବର୍ଣ୍ଣକୁ ଶବ୍ଦ ଗଠନ କରିବାରେ ସାହାଯ୍ୟ କରିଥାଏ । ଅଲ୍‌ଚିକି ଲିପି ଅନ୍ୟ କୌଣସି ଜାତିର ଲିପି କିମ୍ବା ଭାଷାକୁ ଅନୁକରଣ କରାଯାଇ ନାହିଁ । ବାସ୍ତବରେ, ପ୍ରତ୍ୟେକ ଅଲ୍‌ଚିକି ଲିପିର ନିର୍ଦ୍ଦିଷ୍ଟ ପରିଚୟ, ସ୍ୱତନ୍ତ୍ରତା ଓ ବିଶେଷତ୍ୱ ମଧ୍ୟ ରହିଅଛି । ଯେପରିକି– ଆଦିବାସୀ ସାନ୍ତାଳ ସମ୍ପ୍ରଦାୟର ଏହି ଅଲ୍‌ଚିକି ଅକ୍ଷରଗୁଡିକ ପ୍ରକୃତି ସହିତ ଜଡିତ ହୋଇ ରହିଛି, ଏହାର ମହତ ପ୍ରକୃତି ପରି ସ୍ୱଚ୍ଛ ଏବଂ ସତ୍ୟ ଅଟେ । ମାତ୍ର ଏହାର ପ୍ରଚାର ଓ ପରିପ୍ରକାଶର ଅଭାବ ଥିବାରୁ ଏହାର ବିକାଶ ଘଟିପାରୁ ନାହିଁ, କି ଏହା ଖ୍ୟାତି ଅର୍ଜନ କରିପାରୁ ନାହିଁ । ସାନ୍ତାଳି ଭାଷାର ଶବ୍ଦଗୁଡିକ ଅନ୍ୟ ଯେକୌଣସି ଭାଷାର ଅନୁବାଦ କରିହୁଏ ନାହିଁ କି ଅନ୍ୟ ଲିପିରେ ଲେଖିବା ମଧ୍ୟ ଅନେକ କଷ୍ଟକର ଅଟେ, ବାସ୍ତବରେ କହିବାକୁ ଗଲେ ସାନ୍ତାଳି ଭାଷାର କେତେକ ଶବ୍ଦଗୁଡିକ ଅନୁବାଦ କରିହୁଏ ନାହିଁ, ବରଂ ଏପରି କରୁଥିବା ବ୍ୟକ୍ତି ଅଧିକ ମାତ୍ରାରେ ଭୁଲ ଭଟକା କରିଥାନ୍ତି ।

ପଣ୍ଡିତ ରଘୁନାଥ ମୁର୍ମୁ କେବଳ ନବମ ଶ୍ରେଣୀର ଛାତ୍ର ହୋଇ ଏହି ଦୁଇ ପ୍ରକାରର ସାନ୍ତାଳି ଆଦିବାସୀ ଲିପି ଦ୍ୱୟକୁ ବାହାର କରିବା ଏକ ସାଧାରଣ ଛାତ୍ର ପାଖରେ ସମ୍ଭବପର ନୁହେଁ । ତେଣୁ, ସେ ଜଣେ ସାଧାରଣ ଛାତ୍ର ନଥିଲେ । ସେ ପିଲାଟି ଦିନରୁ ମହାଜ୍ଞାନୀ ଓ ଚାଲାକ ଥିଲେ, ଆଦିବାସୀ ସାନ୍ତାଳି ପରିବାରରେ ଜନ୍ମ ନେଇଥିଲେ ସତ କିନ୍ତୁ ତାଙ୍କର ଚିନ୍ତାଧାରା ଓ ଦିଗ୍‌ଦର୍ଶନ ଯଥେଷ୍ଟ ପରିମାଣରେ ବେଶି ଥିଲା । ଏହିପରି ଭାବରେ ସାନ୍ତାଳି ଲିପି ସାଙ୍ଗକୁ ଉଚ୍ଚ ଶିକ୍ଷା ପାଠପଢା କାମ ଚାରି ବର୍ଷ କାଳ ବାରିପଦା ସଦର ମହକୁମାରେ ରାଜାଙ୍କ ଦ୍ୱାରା ନିର୍ମିତ ଛାତ୍ରାବାସରେ ରହି ପଣ୍ଡିତ ରଘୁନାଥ ମୁର୍ମୁ ତା.୨୮-୪-୧୯୨୮ରିଖ ଦିନ ହାଇସ୍କୁଲ ପରୀକ୍ଷାରେ ଦ୍ୱିତୀୟ ସ୍ଥାନ ପାଇ କୃତକାର୍ଯ୍ୟ ହୋଇଥିଲେ । ରଘୁନାଥ ମୁର୍ମୁ ପାଠପଢ଼ା କାମ ସାରି ଘରେ ବେକାର ବସି ନଥିଲେ, ଘରର ଆର୍ଥିକ ଅବସ୍ଥା ସେତେବେଳେ ଏତେଟା ଭଲ ନଥିଲା । ତେଣୁ, ଏହାକୁ ଦେଖି ସେ ଚାଷ କାମରେ ଲାଗି ପଡିଥିଲେ ଏବଂ ଏହା ସହିତ କିଛି ଅର୍ଥ ଉପାର୍ଜନ କରିବା ପାଇଁ ଚେଷ୍ଟା କଲେ । ପଣ୍ଡିତ ରଘୁନାଥ ମୁର୍ମୁ ନିଜ ଘରେ ହିଁ ଏକ 'ତନ୍ତକଳ' ବସେଇ ଲୁଗା ବୁଣିବା ଆରମ୍ଭ କଲେ ଏବଂ ରାଇରଙ୍ଗପୁର ଅଂଚଳରେ ଥିବା ବିଭିନ୍ନ ଗାଁ ହାଟ ଓ ବଜାରମାନଙ୍କରେ ଉନ୍ନତ ମାନର ଗାମୁଛା, ଲୁଙ୍ଗି, ଧୋତି,

ଶାଢୀ ଆଦି ବିକ୍ରୟ କରି ଘରର ଗୁଜୁରାଣ ଭଲରେ ମେଣ୍ଟାଇଲେ ।

ଏହା ପରେ କିଛି ଦିନ ରାଇରଙ୍ଗପୁର ତହସିଲ କଚେରିରେ କାମ ମଧ୍ୟ କଲେ । ସନ ୧୯୩୧ ମସିହାରେ ରଘୁନାଥ ମୁର୍ମୁ ସରକାରଙ୍କର ଜନଗଣନା କାମରେ ନିଜକୁ ନିୟୋଜିତ କରିଥିଲେ । ଏହିପରି ଛୋଟବଡ କାମ କରୁଥିବା ବେଳେ ବାରିପଦା ପାଓ୍ୱାର ହାଉସରେ କାରିଗର ପ୍ରଶିକ୍ଷଣ ନେବାପାଇଁ ଦରଖାସ୍ତ ଆବେଦନ କଲେ । କିଛି ଦିନ ଗଲା ପରେ କାରିଗର ତାଲିମ କେନ୍ଦ୍ରରୁ ତାଙ୍କର ଯୋଗ ଦେବାପାଇଁ ପତ୍ର ଘରେ ଆସି ପହଂଚିବାରୁ, ରଘୁନାଥ ମୁର୍ମୁ ବାରିପଦା ପାଓ୍ୱାର ହାଉସ କାରିଗର ପ୍ରଶିକ୍ଷଣ ଶିବିରରେ ଯୋଗଦେଲେ । କାରିଗର ପ୍ରଶିକ୍ଷଣ ଶିବିର, ବାରିପଦା ପାଓ୍ୱାର ହାଉସଠାରେ ବିଭିନ୍ନ କାରିଗରି କାମ ଶିକ୍ଷା ଲାଭ କରିବା ପାଇଁ ସରକାରଙ୍କ ଦ୍ୱାରା ପ୍ରଶିକ୍ଷଣ ଦିଆଯାଉଥିଲା ଏବଂ ଏଥିରେ କୃତକାର୍ଯ୍ୟ ହେଉଥିବା ଛାତ୍ରମାନଙ୍କୁ ବିଭିନ୍ନ ଶିକ୍ଷାନୁଷ୍ଠାନମାନଙ୍କରେ ଚାକିରି ଦିଆଯାଉଥିଲା । ଏହି କାରିଗର ଶିକ୍ଷା କେନ୍ଦ୍ରରେ ବଢ଼େଇ କାମ ସହିତ, ସିଲେଇ ଶିକ୍ଷା, ତନ୍ତ କାମ, ବିଜୁଳି ବିଦ୍ୟା, କଣ୍ଟେଇ ତିଆରି କାମ ଆଦି ବିଭିନ୍ନ ଉନ୍ନତ ମାନର ଶିକ୍ଷା ଛାତ୍ରମାନଙ୍କୁ ଦିଆଯାଉଥିଲା । ରଘୁନାଥ ମୁର୍ମୁ ମଧ୍ୟ ଏହିଠାରେ ପ୍ରଶିକ୍ଷଣ ନେଉଥିଲେ । ସନ୍ ୧୯୩୨ ମସିହାରେ ସେ ଏହି କାରିଗର ପ୍ରଶିକ୍ଷଣର ବାର୍ଷିକ ପରୀକ୍ଷାରେ ଭଲ ନମ୍ବର ରଖି ପାସ୍ କଲେ । କାରିଗର ତାଲିମ ସରିଗଲା ପରେ, ରଘୁନାଥ ମୁର୍ମୁ ନିଜ ଗାଁ ଘର ଡାଣ୍ଡବୁସକୁ ଫେରିଗଲେ । ରଘୁନାଥ ମୁର୍ମୁ ଏଥର ଅନ୍ୟ କୌଣସି କାମଧନ୍ଦା ବାହାରେ ନ କରି ନିଜଘରେ ଥିବା ନିଜର ପୂର୍ବ 'ତନ୍ତକଳ'ରେ ଲୁଗାବୁଣିବା କାମକୁ ପୁଣି ଆରମ୍ଭ କଲେ । ରଘୁନାଥ ମୁର୍ମୁଙ୍କର ଲୁଗାବୁଣା କାମ ତାଙ୍କର ପେସା କାମ ନୁହେଁ ମାତ୍ର, ଅର୍ଥର ଅଭାବକୁ କିପରି ଭାବରେ ତ୍ୱରାନ୍ୱିତ କରାଯାଇ ପାରିବ, ସେଥିପ୍ରତି ରଘୁନାଥଙ୍କୁ ବେଶ୍ ଜଣାଥିଲା । ରଘୁନାଥ ତାଙ୍କର ପିଲାଦିନୁ ଘର ବାହାରେ ରହି ପାଠ ପଢ଼ିଛନ୍ତି । ସେ ଅଭାବ ଅସୁବିଧାକୁ କିଭଳି ଭାବରେ ମୁକାବିଲା କରାଯାଇପାରିବ ସେସବୁ କଥା ତାଙ୍କୁ ଭଲ ଭାବରେ ଜଣାଥିଲା । ପ୍ରାରମ୍ଭରୁ ପିଲା ରଘୁନାଥ ମୁର୍ମୁ ନିଜ ଗ୍ରାମରେ ବିଦ୍ୟାଳୟ ନଥିବାରୁ ତିନି କିଲୋମିଟର ଦୂର ଗମ୍ଭାରିଆ ପ୍ରାଥମିକ ବିଦ୍ୟାଳୟରେ ପଦଯାତ୍ରା କରି ପାଠପଢା ଆରମ୍ଭ କରିଥିଲେ । ଏହା ପରେ ସେ ତୃତୀୟ ଶ୍ରେଣୀରୁ ୭ମ ଶ୍ରେଣୀ ପର୍ଯ୍ୟନ୍ତ ୬ବର୍ଷ କାଳ ବହଳଦା 'ତୁନୁବାସା'ଠାରେ ରହି ପାଠ ପଢିଲେ । ରଘୁନାଥ ମୁର୍ମୁ ଏହାପରେ ୮ମ ଶ୍ରେଣୀରୁ ଏକାଦଶ ଶ୍ରେଣୀ ପର୍ଯ୍ୟନ୍ତ ବାରିପଦା ହାଇସ୍କୁଲର ଛାତ୍ରାବାସରେ ରହି ପାଠ ପଢିଛନ୍ତି । ତେଣୁ, ଅଭାବ, ଅନଟନ, ଦୁଃଖ, କଷ୍ଟ କ'ଣ ଏବଂ ଏହାକୁ କିଭଳି ଭାବରେ ମୁକାବିଲା କରାଯାଇପାରିବ, ତାହା ରଘୁନାଥ ମୁର୍ମୁଙ୍କୁ ବେଶ୍ ଜଣାଥିଲା ।

ବିଭିନ୍ନ ଡିଜାଇନ୍ ଓ ରଙ୍ଗ ବେରଙ୍ଗର ଲୁଗା, ଗାମୁଛା, ଧୋତି, ବେଡ୍‌ସିଟ୍, ଦରି, ଗାଲିଚା, କାରପେଟ୍, ସତରଞ୍ଜିମାନ ବୁଣିବା ଆରମ୍ଭ କଲେ । ତାଙ୍କଦ୍ୱାରା ବୁଣାଯାଇଥିବା ଲୁଗାପଟାଗୁଡିକ ଗାଁ–ଗଣ୍ଡାରେ, ହାଟ–ବଜାରରେ ଓ ବାହାରେ ବେଶ୍ ଆଦର ହୋଇ ଚାହିଦା ହେବାରେ ଲାଗିଲା ଏବଂ ଏଥିରୁ ବେଶ୍ ଅର୍ଥ ମଧ୍ୟ ଉପାର୍ଜନ କରି ଘରର ଅଭାବକୁ ଦୂର କରିପାରିଲେ । କାରିଗର ପ୍ରଶିକ୍ଷଣ ନେଉଥିବା ବେଳେ ଓ ଘରେ ନିଜସ୍ୱ ତନ୍ତକଳରେ ବିଭିନ୍ନ ଉନ୍ନତ କିସମର ଲୁଗାପଟା ବୁଣିବାର କାରିଗରି କୌଶଳ କାମ ପାଇଁ ରଘୁନାଥ ଅନେକ ସୁନାମ ଅର୍ଜନ କରିବା ଫଳରେ ସେ ସମସ୍ତଙ୍କ ଆଗରେ ଚର୍ଚ୍ଚାର ବିଷୟ ହୋଇରହିଲେ । ଏହି କଥା ଚାରିଆଡେ ପ୍ରଚାରିତ ହେବା ଫଳରେ, ରାଜାଙ୍କର ଲୋକ ଓ ଦେଓ୍ୱାନ ସାହେବ ମହାରାଜ ପ୍ରତାପ ଚନ୍ଦ୍ର ଭଞ୍ଜଦେଓଙ୍କୁ ଜଣାଇଲେ । ଏହାପରେ ଦେଓ୍ୱାନ ସାହେବ Dr. P.K Sen ରଘୁନାଥ ମୁର୍ମୁଙ୍କର ନାମ Industrial Co-operative Training ପାଇଁ ସୁପାରିସ୍ କଲେ ଏବଂ ମହାରାଜା ମଧ୍ୟ ଏହାକୁ ମଞ୍ଜୁରି ଦେବା ଫଳରେ ରଘୁନାଥଙ୍କୁ ପ୍ରଶିକ୍ଷଣ ନେବା ପାଇଁ ପଶ୍ଚିମ ବଙ୍ଗର ବିଭିନ୍ନ ତାଲିମ କେନ୍ଦ୍ର ଯଥା– କଲିକତା, ଶିରାମପୁର, ଗୋସବା, ବଲପୁର ଏବଂ ଭାଗଲପୁର ଆଦି ତାଲିମ ଶିବିରମାନଙ୍କରେ ତାଲିମମାନ ସେ ନେଲେ ।

ଏହିସବୁ ତାଲିମ କେନ୍ଦ୍ରମାନଙ୍କରେ ତାଲିମ ସାରିଲା ପରେ, ମୟୂରଭଞ୍ଜ ମହାରାଜା ସାର୍ ଶ୍ରୀ ପ୍ରତାପ ଚନ୍ଦ୍ର ଭଞ୍ଜଦେଓ, ପଣ୍ଡିତ ରଘୁନାଥ ମୁର୍ମୁଙ୍କୁ ଏକ ଭଲ ଚାକିରିରେ ନିୟୋଜନ କଲେ । ଏହା ଫଳରେ ପଣ୍ଡିତ ରଘୁନାଥ ମୁର୍ମୁ Purna Chandra Industrial Training Institution, Baripadaଠାରେ ଅନୁଦେଷ୍ଟା (Instructor) ପଦବୀରେ ଚାକିରି କଲେ ଏବଂ ଏହିଠାରେ ପ୍ରଶିକ୍ଷଣ ନେଉଥିବା ଛାତ୍ରମାନଙ୍କୁ ତାଲିମ ପ୍ରଦାନ କଲେ । ଏହିଠାରେ ଚାକିରି କଲା ପରେ ରଘୁନାଥ ଟିକେ ନିଃଶ୍ୱାସ ମାରିଲେ ମାତ୍ର, ୬ମାସ ଚାକିରି କଲା ପରେ ପିତା ନନ୍ଦଲାଲ ବେଶି ଦିନ ପୁତ୍ର ସୁଖ ଅନୁଭବ କରିପାରିଲେ ନାହିଁ ଏବଂ ସେ ଆରପାରିକୁ ଚାଲିଗଲେ । ଫଳରେ ରଘୁନାଥ ମୁର୍ମୁ ଅନେକ ଜଞ୍ଜାଳରେ ପଡିଗଲେ, ଆଗରୁ ଭଉଣୀ ପରେ ପରେ ଭାଇ ଦୁବରାଜର ମଧ୍ୟ ମୃତ୍ୟୁ ହୋଇଯାଇଥିଲା । ଆଉ ଏବେ ବାପା ଚାଲିଗଲେ । ଏହିପରି ଭାବରେ ରଘୁନାଥ ମୁର୍ମୁ ହତଭାଗା ହୋଇଗଲେ, ତାଙ୍କରି ଘର ସମ୍ଭାଳିବାକୁ ଆଉ କେହି ରହିଲେ ନାହିଁ । ପିତା ନନ୍ଦଲାଲ ମୁର୍ମୁଙ୍କର ପରଲୋକ ହେଲା ପରେ, ଘର ସମସ୍ୟା ଅସହାୟ ହୋଇପଡିଲା, ରଘୁନାଥ ମୁର୍ମୁଙ୍କୁ ନିଜେ ଚାଷକାମ ଦେଖିବାକୁ ପଡିଲା, ଘରେ ସାନଭାଇର ବିଧବା ସ୍ତ୍ରୀ ଓ ତା'ର ପିଲାଛୁଆ ଏଥିସହିତ ପୁନଶ୍ଚ, ତାଙ୍କର ଦୁଃଖିନୀ ବୃଦ୍ଧା ମାଆ । ନିଜ ସହଧର୍ମିଣୀ ଓ ପଲାଛୁଆ ସହିତ ଏ ସମସ୍ତଙ୍କୁ ଏକାକୀ ସମ୍ଭାଳିବା ସମ୍ଭବପର ନଥିଲା । ଏପଟେ ମୟୂରଭଞ୍ଜ ମହାରାଜା ଦେଇଥିବା ଚାକିରି ଖଣ୍ଡିକ ପୁଣି କିପରି ଭାବରେ ତ୍ୱରାନ୍ୱିତ କରିବେ ! ପୁଣି ଏହିଭଳି ପରିସ୍ଥିତି ଭିତରେ, ସାନ୍ତାଳି ଜାତିର ଭାଷା, ସାହିତ୍ୟ, ଲିପି, ସମାଜ, ସଂସ୍କୃତି ଓ ଶିକ୍ଷାର ବୋଝ କେଉଁଟାକୁ ସେ ସମ୍ଭାଳିବେ । ଘରେ କାମ କରିବା ପାଇଁ ଗୋଟେ ପିଲା ଥିଲା ମାତ୍ର ସେ ବାରମ୍ବାର ଜ୍ୱରରେ ପଡୁଥିବାରୁ ସେ ମଧ୍ୟ କାମ କରିପାରୁନଥିଲା । ଏଣୁ ରଘୁନାଥ ମୁର୍ମୁଙ୍କ ବିନା ତାଙ୍କ ଘର ସଂସାର ଭାସି ଯାଉଥିଲା, ନିଜ ଘର ସଂସାର ତାଙ୍କୁ ସମ୍ଭାଳିବାକୁ ହିଁ ପଡିବ ଅନ୍ୟଥା ତାଙ୍କ ପାଖରେ ଆଉ କୌଣସି ଉପାୟ ନାହିଁ । ପରିଶେଷରେ, ରଘୁନାଥ ମୁର୍ମୁ ନିଷ୍ପତ୍ତି ନେଲେ ତାଙ୍କୁ ଘରକୁ ଯିବାକୁ ହିଁ ପଡିବ ଏବଂ ମହାରାଜ ଦେଇଥିବା ଚାକିରି ଖଣ୍ଡିକ ତାଙ୍କୁ ଛାଡିବାକୁ ହିଁ ପଡିବ । ଏଥିପାଇଁ ସେ ମହାରାଜାଙ୍କ ପାଖରେ ଆବେଦନ କଲେ ମାତ୍ର, ମହାରାଜାଙ୍କର ହୁକୁମ ହେଲା କି ରଘୁନାଥ ମୁର୍ମୁ ତାଙ୍କ ପଦ ଛାଡି ପାରିବେ ନାହିଁ । ଏହାପରେ ତାଙ୍କର କରୁଣ କାହାଣୀ ଦେଓ୍ୱାନ ସାହେବଙ୍କୁ କହିଲେ, ତାଙ୍କରି ଉପଦେଶକ୍ରମେ ଘରପାଖ ବଦଳି କରିବା ପାଇଁ ଏବଂ କମ୍ ବେତନରେ ଖଟିବା ପାଇଁ ମଧ୍ୟ ରଘୁନାଥ ରାଜି ଅଛନ୍ତି ବୋଲି ଆଉଥରେ ଗୁହାରି ପତ୍ରରେ ଦର୍ଶାଇ ଆବେଦନ କଲେ, ଯାହାକୁ ଦେଖି ମୟୂରଭଞ୍ଜ ମହାରାଜ ରାଜି ହୋଇଥିଲେ । ଏହା ଫଳରେ ପଣ୍ଡିତ ରଘୁନାଥ ମୁର୍ମୁଙ୍କୁ ବଡାମତଳିଆ ଉଚ୍ଚ ପ୍ରାଥମିକ ବିଦ୍ୟାଳୟରେ ବଡେଇ ଶିକ୍ଷକ ପଦବୀରେ ରଖାଗଲା । ମହାରାଜା, ରଘୁନାଥ ମୁର୍ମୁଙ୍କର ଶିକ୍ଷକତା ଓ ପିଲାମାନଙ୍କର ପାଠପଢାର ଉନ୍ନତି ଦେଖି ପଣ୍ଡିତ ରଘୁନାଥ ମୁର୍ମୁଙ୍କୁ ସେହି ବିଦ୍ୟାଳୟର ପ୍ରଧାନ ଶିକ୍ଷକ ଭାବରେ ଦାୟିତ୍ୱ ମଧ୍ୟ ଦିଆଗଲା ।

ଏହି ବଡାମତଳିଆ ବିଦ୍ୟାଳୟରେ ଶିକ୍ଷକ ଥିବା ସମୟରେ ହିଁ ପଣ୍ଡିତ ରଘୁନାଥ ମୁର୍ମୁ ନିଜେ କାଠର ଏକ ହସ୍ତ ଚାଳିତ ଛପା ଯନ୍ତ୍ର ନିର୍ମାଣ କରିଥିଲେ, ଯାହାକୁ ୧୯୩୯ ମସିହାରେ ବାରିପଦା ଶିଳ୍ପ ପ୍ରଦର୍ଶନୀକୁ ଦୀର୍ଘ ୭୫ କିଲୋମିଟର ଏକ ଶଗଡ ସାହାଯ୍ୟରେ ନିଆଯାଇଥିଲା । ସେଠାରେ, ସେ ବେଳର ମୟୂରଭଞ୍ଜ ମହାରାଜା ସାର୍ ଶ୍ରୀ ପ୍ରତାପ ଚନ୍ଦ୍ର ଭଂଜଦେଓ ଏହାକୁ ଦେଖି ଅତ୍ୟନ୍ତ ଖୁସି ହୋଇଥିଲେ ଏବଂ ରାଜ୍ୟ ସାରା ଅଲ୍‌ଚିକିର ସୁପ୍ରଚାର ଓ ପ୍ରସାର ନିମନ୍ତେ ପ୍ରେରଣା ପଣ୍ଡିତ ରଘୁନାଥ ମୁର୍ମୁଙ୍କୁ ଦେଇଥିଲେ । ପଣ୍ଡିତ ରଘୁନାଥ ଏହି ଅଲ୍‌ଚିକି ହାତ ତିଆରି ଛପା ଯନ୍ତ୍ର ବ୍ୟତୀତ କାଠର ଶଗଡ, କାଠର ସାଇକେଲ୍ (ଡୁଲୁଂ ଗାଡି) ମଧ୍ୟ ନିଜେ ନିର୍ମାଣ କରିଥିଲେ । ଯାହାକୁ ଦେଖି ସେ ଅଂଚଳବାସୀ ସମସ୍ତେ ଆଶ୍ଚର୍ଯ୍ୟ ହୋଇ ତାଙ୍କୁ ଅନେକ ପ୍ରଶଂସା କରିଥିଲେ । ଭଲ ଶିକ୍ଷକତା କରିବାରୁ ମହାରାଜା ରଘୁନାଥ ମୁର୍ମୁଙ୍କୁ ପଦୋନ୍ନତି ଦେବା ସହିତ ବଡାମତଳିଆ ଉଚ୍ଚ ପ୍ରାଥମିକ ବିଦ୍ୟାଳୟରୁ ରାଇରଙ୍ଗପୁର ଉଚ୍ଚ ବିଦ୍ୟାଳୟକୁ ବଦଳି କଲେ ।

ପଣ୍ଡିତ ରଘୁନାଥ ମୁର୍ମୁ ଜାଣିଥିଲେ ସାନ୍ତାଳି ଜାତି, ଧର୍ମ, ଭାଷା ସାହିତ୍ୟ, ସଂସ୍କୃତି ଏବଂ ଲିପି ପ୍ରଚାର ଓ ପ୍ରସାର ନ ହେଲେ, ଏହି ସମ୍ପ୍ରଦାୟର ଲୋକମାନେ ସମାଜରେ ପଛୁଆ ବର୍ଗରେ ରହିଯିବେ । ଏମାନଙ୍କର ପ୍ରକୃତ ଶିକ୍ଷା କେବଳ ନିଜ ଭାଷାର ଲିପିରେ ହିଁ ସମ୍ଭବପର ବୋଲି ରଘୁନାଥ ମୁର୍ମୁ ବେଶ୍ ବୁଝିପାରିଥିଲେ ଏବଂ ସେଥିପାଇଁ ସେ ଅଲ୍‌ଚିକି ଲିପି ବିକାଶ ନିମନ୍ତେ ‘ଅଲ୍‌ସମିତି’ ନାମକ ଏକ ସଂଘ ବନ୍ତଳି ଗ୍ରାମଠାରେ ମଧ୍ୟ ପ୍ରତିଷ୍ଠା କରିଥିଲେ, ଯାହାର କାର୍ଯ୍ୟଭାର ସର୍ଦ୍ଦାର ପଦନ ଟୁଡୁଙ୍କ ପୁତ୍ର ଶ୍ରୀଯୁକ୍ତ ସନ୍ଧ୍ୟା ଚରଣ ଟୁଡୁଙ୍କ ହାତରେ ଦେଇଥିଲେ । ଏହି ‘ଅଲ୍‌ସମିତି’ର ସଭ୍ୟମାନଙ୍କ ସହାୟତାରେ ଥରେ ମୟୂରଭଞ୍ଜ ମହାରାଜା ପ୍ରତାପ ଚନ୍ଦ୍ର ଭଞ୍ଜଦେଓଙ୍କ ପାଖରେ ‘ଅଲ୍‌ଚିକି ଅକ୍ଷର’କୁ ମୟୂରଭଞ୍ଜ ରାଜ୍ୟରେ ସରକାରୀ ଭାବେ ପ୍ରଚଳନ କରିବା ନିମନ୍ତେ ପଣ୍ଡିତ ରଘୁନାଥ ମୁର୍ମୁ ଆବେଦନ କରିଥିଲେ । ବଡାମତଳିଆ ବିଦ୍ୟାଳୟରୁ ପଣ୍ଡିତ ରଘୁନାଥ ମୁର୍ମୁଙ୍କୁ ରାଇରଙ୍ଗପୁର ଉଚ୍ଚ ବିଦ୍ୟାଳୟକୁ ବଦଳି କରାଗଲା ମାତ୍ର, ରାଇରଙ୍ଗପୁର ଉଚ୍ଚ ବିଦ୍ୟାଳୟରେ ଶିକ୍ଷକତା କରିବା ଫଳରେ ତାଙ୍କଦ୍ୱାରା ଉତ୍ପତ୍ତି ହୋଇଥିବା ଅଲ୍‌ଚିକି ଲିପିର ପ୍ରଚାର ଓ ପ୍ରସାର କାମ ବାଧାପ୍ରାପ୍ତ ହେଉଥିବାରୁ ପଣ୍ଡିତ ରଘୁନାଥ ମୁର୍ମୁ, ସନ ୧୯୪୬ ମସିହାରେ ରାଇରଙ୍ଗପୁର ଉଚ୍ଚ ବିଦ୍ୟାଳୟର ଶିକ୍ଷକତା ପଦରୁ ଇସ୍ତଫା ଦେଲେ ଏବଂ ଚିରଜୀବନ ସାନ୍ତାଳି ଜାତି, ଧର୍ମ, ଭାଷା ସାହିତ୍ୟ ଓ ଅଲ୍‌ଚିକି ଲିପିର ପ୍ରଚାର ଦିଗରେ ନିଜକୁ ନିୟୋଜିତ କରିଦେଲେ । ସରକାରୀ ଚାକିରି ଛାଡିବା ପରେ ପଣ୍ଡିତ ରଘୁନାଥ ମୁର୍ମୁ ବିହାର ପ୍ରଦେଶର(ଝାରଖଣ୍ଡ) ଜାମସେଦପୁରଠାରେ ‘ଖେର୍‌ୱାଲ୍ ଜାର୍ପା ସମିତି’ ନାମରେ ଏକ ସମିତି ଗଠନ କଲେ । ଏହି ସମିତିର ଶାଖା-କାର୍ଯ୍ୟାଳୟମାନ ଝାରଖଣ୍ଡ ଜିଲ୍ଲାର ଜାମ୍‌ଜଳା (ତାଙ୍କ ସହଧର୍ମିଣୀଙ୍କ ଗ୍ରାମ), କରଣ୍ଡି, ରାମେଡି ଏବଂ ଓଡିଶା ପ୍ରଦେଶର ରାଇରଙ୍ଗପୁର ସହର ଆଦି ସ୍ଥାନମାନଙ୍କରେ ପ୍ରତିଷ୍ଠା କଲେ ।

ପଣ୍ଡିତ ରଘୁନାଥ ମୁର୍ମୁଙ୍କର ସହଧର୍ମିଣୀଙ୍କ ଗାଁ, ଜାମଜଳା (ଝାରଖଣ୍ଡ)ର ଜଣେ ଶିକ୍ଷିତ ସମ୍ପର୍କୀୟ ଯୁବକ ମୁନିରାମ ବାସ୍କେ ବିହାରର ଏହି ‘ଖେର୍‌ୱାଲ୍ ଜାର୍ପା ସମିତି’ କାର୍ଯ୍ୟଭାର ଦାୟିତ୍ୱ ତୁଲାଇଥାନ୍ତି । ଏହି ଖେର୍‌ୱାଲ୍ ଜାର୍ପା ସମିତି ସହାୟତାରେ ପଣ୍ଡିତ ରଘୁନାଥ ମୁର୍ମୁ ଏକ ଛାପାକଳ କଲିକତାରୁ କିଣି ଆଣିଲେ । ଏଥିରେ ଦରକାର ପଡୁଥିବା ଅଲ୍‌ଚିକି ଲିପି ଛାପିବା ପାଇଁ ଲେଟର ବ୍ଲକ୍ ଓ ଛାଞ୍ଚମାନ ନିଜେ ରଘୁନାଥ ମୁର୍ମୁ ବନେଇ ଥିଲେ । ଏହି ଛାପାଯନ୍ତ୍ରକୁ ଝାରଖଣ୍ଡ ପ୍ରଦେଶର ଜାମସେଦପୁର, ଟାଟାନଗର ସହର ଅନ୍ତର୍ଗତ କରଣ୍ଡିଠାରେ ଥିବା ଖାସ ମହଲ ଧୁପାଟିଆ ଭବନଠାରେ ସ୍ଥାପନ କଲେ ଏବଂ ଏହାର ନାମ ରଖିଲେ ‘ଚାନ୍ଦାନ ପ୍ରେସ୍’ । ଚାକିରି ଛାଡିବା ପରଠାରୁ ସେ ବିହାରର ଏହି କରଣ୍ଡିଠାରେ ଘରତୋଳି ରହିଲେ ଏବଂ ‘ସାଗେନ୍ ସାକାମ୍’ ନାମିତ ଏକ ପତ୍ରିକା ପ୍ରଥମେ ଛାପିଲେ । ଏହି ପତ୍ରିକାକୁ ଅଲ୍‌ଚିକି ଅନଜ୍ଞ ଥିବା ବ୍ୟକ୍ତିବିଶେଷ କିପରି ପଢିବେ ସେଥିପାଇଁ ଏକ ଅଲ୍‌ଚିକି ଲିପି ଶିକ୍ଷା ପାଇଁ ଅଲ୍‌ଚେମେଦ୍’ ନାମିତ ଏକ ବହି ମଧ୍ୟ ଛାପି ବାହାର କଲେ । ଏହି ଅଲ୍‌ଚେମେଦ୍’ ବହିରେ ଥିବା ସାନ୍ତାଳି ଲିପିକୁ ଜଣେ ଶିକ୍ଷା ଲାଭ କଲେ ତାକୁ ସାଗେନ୍ ସାକାମ୍ ପତ୍ରିକାକୁ ପଢିବାରେ ସାହାଯ୍ୟ କରିଥାଏ । ଏହାପରେ ପଣ୍ଡିତ ରଘୁନାଥ ମୁର୍ମୁ ବିଭିନ୍ନ ପତ୍ରପତ୍ରିକା, ବହି,ଗଳ୍ପ, ଉପନ୍ୟାସ, ନାଟକ ଆଦି ତାଙ୍କ ଜୀବନ କାଳ ମଧ୍ୟରେ ଲେଖି ଓ ଛାପି ପରିପ୍ରକାଶ କରିଥିଲେ ।

ପଣ୍ଡତି ରଘୁନାଥ ମୁର୍ମୁଙ୍କ ଦ୍ୱାରା ବର୍ଣ୍ଣିତ ଓ ପ୍ରକାଶ ପାଇଥିବା ବିଭିନ୍ନ ପୁସ୍ତକମାନଙ୍କ ମଧ୍ୟରୁ ନିମ୍ନୋକ୍ତଗୁଡିକ ମୁଖ୍ୟ ରହିଛି ଯଥା– ୧) ଅଲ୍‌ଚିକି ଶିକ୍ଷା ବହି– ଅଲ୍‌ଚେମେଦ୍, ଜୋଲ୍‌ଜଂ ଲାଗିଦ୍ ଅଲ୍, ଅଲ୍ ଉପୁରୁମ୍ ୨) ଗଣିତ ବହି– ଏଲ୍‌ଖା ପତବ୍ ୩) ସାନ୍ତାଳି ବ୍ୟାକରଣ ବହି– ରନଲ୍ ୪) ନାଟକ ବହି– ବିଦୁ ଚାନ୍ଦାନ, ଖେର୍‌ୱାଲ୍ ବିର୍ ଓ ଦାଲେଗେ ଧନ୍ ୫) ଗଳ୍ପ ବହି– ପାର୍‌ସି ପହା ୬) ଗୀତ ବହି– ଲାକ୍‌ଚାର୍ ସେରେଞ୍ଜ୍, ହର୍ ସେରେଞ୍ଜ୍, ବାହା ସେରେଞ୍ଜ୍, ଝାରଖାଣ୍ଡ୍ ସେରେଞ୍ଜ୍ ଏବଂ ଆଦିବାସୀ ରାଃ ଆନ୍ଦୁଳ ସେରେଞ୍ଜ୍ ୭) ହିତ ବାଣୀ ବହି– ହିତାଲ ୮) ମନ୍ତ୍ର ବହି– ବାଖେଣ ୯) ସଂଗ୍ରାମ ବହି– ଶିଦ–କାହ୍ନୁ ହୁଲ୍ ୧୦) ଉତ୍ପତ୍ତି ଓ ଲିପି

ଜ୍ଞାନର ବହି– ପାର୍‌ସି ଅପାଦ୍, ପାର୍‌ସି ଇତୁନ ଏବଂ ପାର୍‌ସି ପହା ଓ ୧୧) ପତ୍ରିକା– ସାଗେନ୍ ସାକାମ୍ ଇତ୍ୟାଦି । ପଣ୍ଡିତ ରଘୁନାଥ ମୁର୍ମୁ ଏକାଧାରରେ ଜଣେ ଦକ୍ଷ ଶିକ୍ଷକ, ଉଦ୍ଭାବକ, ଗାଳ୍ପିକ, ନାଟ୍ୟକାର, ବିଶିଷ୍ଟ କବି, ଦିଗ୍‌ଦର୍ଶନବିତ୍, ପାଣ୍ଡିତିଜ୍ଞ, ଗାଣିତିକ, ଶାସ୍ତ୍ରବିତ୍ ଏବଂ ନିପୁଣ କାରିଗର ଅଟନ୍ତି । ବିଭିନ୍ନ ଶିକ୍ଷା କ୍ଷେତ୍ରରେ ତାଙ୍କର ଗଭୀର ପାଣ୍ଡିତ୍ୟ ଥିଲା । ତେଣୁ ସେ ପଣ୍ଡିତ ଆଖ୍ୟାରେ ବିଶେଷ ଭାବରେ ପରିଚିତ । ତାଙ୍କରି ମତରେ ଶିକ୍ଷା ହେଉଛି ମଣିଷର ପ୍ରଥମ କର୍ତ୍ତବ୍ୟ, ଶିକ୍ଷାଲାଭ କଲେ ଭାଷା ଓ ଧର୍ମ ଅର୍ଜନ କରିପାରିଥାଏ, ଶିକ୍ଷା ନ ହେଲେ ମନୁଷ୍ୟ ତା'ର ଭାଷା ଓ ଧର୍ମକୁ ହରାଇ ବସେ ଏବଂ କାଳକ୍ରମେ ସେ ନିଜକୁ ମଧ୍ୟ ହରାଇଥାଏ । ତାଙ୍କରି ଭାଷାରେ–

ଅଲ୍ ମେନାଃ ତାମା, ରଲ୍ ମେନାଃ ତାମା,
ଧରମ୍ ମେନାଃ ତାମା ଆମ୍ ହଁ ମେନାମ୍
ଅଲ୍ ଏମ୍ ଆଦ୍ ଲେରେ, ରଲ୍ ଏମ୍ ଆଦ୍ ଲେରେ,
ଧରମ୍ ଏମ୍ ଆଦ୍ ଲେରେ ଆମ୍ ହମ୍ ଆଦଃ ...।

ପଣ୍ଡିତ ରଘୁନାଥ ମୁର୍ମୁଙ୍କର ଏହି ହିତବାଣୀରୁ ଜଣାଯାଏ ଯେ, ଶିକ୍ଷା ମନୁଷ୍ୟ ପାଖରେ ଥିଲେ, ଭାଷା ଓ ଧର୍ମ ପାଖରେ ଥାଏ । ଯଦି ମନୁଷ୍ୟ ଶିକ୍ଷା ହରାଇ ବସେ ତା'ହେଲେ ଭାଷା ଓ ଧର୍ମକୁ ହରାଇ କାଳକ୍ରମେ ନିଜକୁ ମଧ୍ୟ ହଜାଇ ଥାଏ । ବାସ୍ତବରେ ମଣିଷ ଯେକୌଣସି ଭାଷାରେ ଶିକ୍ଷାଲାଭ କରିଥାଉନା କାହିଁକି, ଯଦି ସେ ଏହାର ଠିକ୍ ସଦ୍‌ବ୍ୟବହାର ନ କରେ ତା'ହେଲେ, ସେହି ଭାଷାର ବିକାଶ ହୋଇପାରିବ ନାହିଁ ଓ କାଳକ୍ରମେ ଭାଷାର ବିକାଶ ନ ଘଟିଲେ ଧର୍ମର କି ଜାତିର ବିକାଶ ସମ୍ଭବପର ନୁହେଁ ଏବଂ ପରିଶେଷରେ ମନୁଷ୍ୟ ଜୀବନର ନିଜର ମୂଲ୍ୟବାନ ଅସ୍ତିତ୍ୱକୁ ହରାଇ ବସିଥାଏ ।

ପଣ୍ଡିତ ରଘୁନାଥ ମୁର୍ମୁଙ୍କର ଚର୍ଚ୍ଚା ଓଡିଶା ପ୍ରଦେଶରେ କେବଳ ସୀମିତ ନଥିଲା, ତାଙ୍କର ଦେଶ ଭ୍ରମଣ (ଦିଶମ ଦାଣାନ୍) ବିଷୟରେ ଆଲୋଚନା କଲେ ଜଣାଯାଏ, ନିଜ ସାନ୍ତାଳି ଜାତିମାନଙ୍କର ଜୀବନୀରେ ଉନ୍ନତି ଘଟୁ ଏବଂ ସମାଜରେ ଅନ୍ୟ ଉଚ୍ଚ ଜାତି ସମ୍ପ୍ରଦାୟର ଲୋକମାନଙ୍କ ପରି ଏମାନେ ଜୀବିକାର୍ଜନ କରି ସୁଖରେ କାଳାତିପାତ କରନ୍ତୁ, ସେଥିପାଇଁ ପଣ୍ଡତି ରଘୁନାଥ ମୁର୍ମୁ ଓଡିଶା ସମେତ ବିହାର ଓ ପଶ୍ଚିମ ବଙ୍ଗମାନଙ୍କରେ ଥିବା ସନ୍ତାଳି ସମ୍ପ୍ରଦାୟର ଲୋକମାନଙ୍କୁ ଜାତି, ଧର୍ମ, ସମାଜ, ସଂସ୍କୃତି, ଭାଷା–ସାହିତ୍ୟ ଓ ଅଲ୍‌ଚିକି ଲିପି ଶିକ୍ଷା ବିଷୟରେ ଅବଗତ, ପ୍ରଚାର ଓ ପ୍ରସାର କରିବା ଦିଗରେ ସାନ୍ତାଳିବହୁଳ ଅଂଚଳମାନ ପଦଯାତ୍ରା କରିଥିଲେ । ସନ୧୯୬୩ ମସିହାରେ ପଣ୍ଡିତ ରଘୁନାଥ ମୁର୍ମୁ ସାନ୍ତାଳି ଭାଷା ସାହିତ୍ୟ ଓ ଲିପିର ପ୍ରସାର ଓ ପ୍ରଚାର କରିବା ପାଇଁ ବିଦେଶ ଭ୍ରମଣରେ ବାହାରି ଥିଲେ । ତା:୧–୧୨–୧୯୬୩ ରିଖ ଦିନ ପ୍ରାତଃ ସକାଳୁ ଉଠି ପଣ୍ଡିତ ରଘୁନାଥ ମୁର୍ମୁ, ମାନସିଂ ମୁର୍ମୁ ଏବଂ ସିଧଲାଲ ମୁର୍ମୁ (ବଡପୁଅ) କାପିବୁରୁ ପାହାଡ ପାଖରେ ଥିବା ବଡ ପୋଖରୀରେ ଗାଧୋଇ ସେମାନେ ତିନିଜଣ ଯାକ 'କାପିବୁରୁ ବାଙ୍ଗାଥାନ' ପୂଜାସ୍ଥଳୀକୁ ଗଲେ ଏବଂ ତାଙ୍କର ବିଦେଶ ଭ୍ରମଣ ଓ ପ୍ରଚାର କାମ ଶୁଭ ଓ ଫଳପ୍ରଦ ହେବା ପାଇଁ କାପିବୁରୁ ଦେବତାଙ୍କ ପାଖରେ ପୂଜାପାଠ କରି ଦଣ୍ଡାୟମାନ ହୋଇ ପ୍ରାର୍ଥନା କଲେ । ଏହାପରେ ସେମାନେ ଘରକୁ ଫେରି ସଜଭାତ ଖାଇ ବିଦେଶ ଭ୍ରମଣ କାମରେ ଅତିଶୀଘ୍ର ବାହାରି ଗଲେ । ସେମାନେ ପାଦ ଚଲା ବାଟରେ ଅଂଳାଯଡି ରେଳଷ୍ଟେସନରେ ପହଂଚି ଟିକେଟ କାଟି ଟାଟା–ବାଦାମ ପାହାଡ (T-B Down Train) ରେଳଗାଡିରେ ଚଢ଼ି ବିହାର ପ୍ରଦେଶର ଟାଟା ନଗରକୁ ବିଦେଶ ଗସ୍ତ କଲେ । ବିହାରକୁ ଦେଶଭ୍ରମଣ କଲାବେଳେ ତାଙ୍କ ସାଥିରେ ତାଙ୍କରି ଚେଲାମାନେ ଥିଲେ, ସେମାନେ ହେଲେ– ମାନସିଂ ମୁର୍ମୁ, ବିରସିଂ ମୁର୍ମୁ, କୁମାରୀ ଅପର୍ଣ୍ଣା ମୁର୍ମୁ, କୁମାରୀ ପାନ କିସ୍କୁ ଏବଂ କୁମାରୀ ଚୁଡାମଣି ମୁର୍ମୁ । ସାଥୀରେ ଯାଇ ଏମାନେ, ପଣ୍ଡିତ ରଘୁନାଥ ମୁର୍ମୁଙ୍କୁ ପ୍ରଚାର କାମରେ ସାହାଯ୍ୟ କରିଥିଲେ ଏବଂ ଲୋକଙ୍କୁ ସଚେତନ କରିଥିଲେ । ବିହାରରେ କିଛି ସାନ୍ତାଳି ଗ୍ରାମଗୁଡିକରେ ପ୍ରଚାର କଲାପରେ, ପଣ୍ଡିତ ରଘୁନାଥ ମୁର୍ମୁ ତାଙ୍କ ସାଥିମାନଙ୍କୁ ଉପଦେଶ ଦେଇ କହିଲେ– 'ଆମ୍ଭମାନଙ୍କର ପ୍ରଚାର କାମ ବହୁତ ଭଲରେ ହେଲା, ଲୋକମାନେ ଆମକୁ ଆଦର କଲେ, ଆମେ ଯାହାସବୁ ପ୍ରଚାର କଲେ ତାହାକୁ ସେମାନେ ଆପଣେଇ ନେଲେ । ମୁଁ ଏବେ ଉମେଶ ବାବୁଙ୍କ ସାଥୀରେ ବେଙ୍ଗଲକୁ ଯିବି,

ଆପଣମାନେ ନିଜ ନିଜ ଘରକୁ ଫେରିଯାଆନ୍ତୁ । ଯେଉଁ ଜାଗାମାନ ଆମ୍ଭେମାନେ ବୁଲି ନାହାନ୍ତି ସେହିସବୁ ଜାଗାକୁ ଆପଣମାନେ ଯାଇ ପ୍ରଚାର କରନ୍ତୁ ଏବଂ ଲୋକମାନଙ୍କୁ ସାନ୍ତାଳି ଭାଷା, ସାହିତ୍ୟ, ସଂସ୍କୃତି, ଧର୍ମ, ଅଲ୍‌ଚିକି ଓ ଏକ ନୂତନ ସଂଘର ପ୍ରତିଷ୍ଠା କରିବା ପାଇଁ ଦରକାର ପଡୁଥିବା ଅର୍ଥ ବିଷୟରେ ଆମରି ସାନ୍ତାଳି ଭାଇ-ଭଉଣୀମାନଙ୍କୁ ଗାଁ ଗାଁ ବୁଲି ବୁଝାଇବା କାମ ଚାଲୁରଖନ୍ତୁ । ଓଡିଶାର ସମସ୍ତ ଭାଇ-ଭଉଣୀମାନେ ବିହାରରୁ ପ୍ରଚାର କାମ ସାରିଲା ପରେ ତା.୧୨-୧୨-୧୯୬୩ ରିଖ ଦିନ ନିଜ ଭିଟାମାଟି ମୟୂରଭଞ୍ଜର ଗାଁକୁ ଫେରିଯାଇ ଥିଲେ ।

ଏହା ପରେ ପଣ୍ଡିତ ରଘୁନାଥ ମୁର୍ମୁଙ୍କ ତାଙ୍କର ନିଜ ଶ୍ୱଶୁର ଗାଁ ଜାମଜଳାର ସମ୍ପର୍କୀୟ ଲୋକ ଶ୍ରୀଯୁକ୍ତ ଉମେଶ ବାସ୍କେଙ୍କ ସହିତ ବିହାରର କିଛି ଅଂଚଳ ପ୍ରଚାର କଲା ପରେ ସେମାନେ ପଶ୍ଚିମବଙ୍ଗକୁ ପ୍ରଚାର କାମରେ ଚାଲିଗଲେ । ଟାଟାନଗରରୁ ସେମାନେ ସୁବର୍ଣ୍ଣରେଖା ନଦୀ କୂଳେ ଥିବା ପାହାଡ ତଟବର୍ତ୍ତୀ ସାନ୍ତାଳି ଲୋକ ବସବାସ କରୁଥିବା ଗ୍ରାମଗୁଡିକରେ ପ୍ରଚାର କଲେ । ସନ ୧୯୬୩ ମସିହା ଶେଷ ଭାଗର ପୌଷମାସ ବେଳକୁ ପୁଖୁରଡିହା, ଭାଉଁଟିଆ ଗାଁକୁ ଯାଇ ପହଂଚି ଥିଲେ । ଭାଉଁଟିଆ ଗ୍ରାମର 'ଆନତୁ ଟୁଡୁ' ନାମକ ଜଣେ ସମାଜସେବୀ ବ୍ୟକ୍ତି ପଣ୍ଡିତ ରଘୁନାଥ ମୁର୍ମୁଙ୍କୁ ସୁବର୍ଣ୍ଣରେଖା ନଦୀକୂଳେ ଅବସ୍ଥିତ ବେନାଗାଡିଆ ଗ୍ରାମରେ ପହଂଚାଇ ଦେଇଥିଲେ ।

ଏହି ବେଣାଗଡିଆ ଗ୍ରାମରେ ପଣ୍ଡିତ ରଘୁନାଥ ମୁର୍ମୁ ସାନ୍ତାଳି ଧର୍ମ, ଭାଷା, ଜାତି, ସମାଜ, ସଂସ୍କୃତି, ସଭ୍ୟତା ଓ ଅଲ୍‌ଚିକି ଲିପି ଶିକ୍ଷା ପ୍ରଚାର କରିବା ସହିତ ଏକ ଆଦିବାସୀ ସମାଜ-ଶିକ୍ଷା ଓ ସାଂସ୍କୃତିକ ସଂଘ ବିଷୟରେ ଲୋକମାନଙ୍କୁ ବୁଝେଇ ଥିଲେ । ଏହିକ୍ଷଣି ବେଣାଗଡିଆ ଗ୍ରାମର ଜଣେ ସମାଜ ସେବୀ ଭଦ୍ରବ୍ୟକ୍ତି ଶ୍ରୀଯୁକ୍ତ ଗୋପାଳ ଟୁଡୁ ପଣ୍ଡିତ ରଘୁନାଥ ମୁର୍ମୁଙ୍କ ସହିତ 'ସଙ୍ଗାତ' ମଧ୍ୟ ବସିଥିଲେ । ଏହି ଭଦ୍ରବ୍ୟକ୍ତି ଜଣକ ପଣ୍ଡିତ ରଘୁନାଥ ମୁର୍ମୁଙ୍କୁ ସୁବର୍ଣ୍ଣରେଖା ନଦୀକୁ ପାର କରିଦେଇ ଥିଲେ । ଏହା ପରେ ନଦୀ ଆରପାରି 'ବହଳାଗୁଡା ପିଢ଼'ରେ ଥିବା ବିଭିନ୍ନ ସାନ୍ତାଳି ଗାଁଗୁଡିକରେ ରୀତିମତ ପ୍ରଚାର କରିଥିବା ଗ୍ରାମଗୁଡିକ ହେଲା- ମୁଟୁର, ଜଳାବୁନି, ଡାବ୍ରାଡାହି ଆଦି ଗାଁ । ଏହାପରେ ପଣ୍ଡିତ ରଘୁନାଥ ମୁର୍ମୁ ଏବଂ ଗୋପାଳ ଟୁଡୁ ଚାକୁଲିୟା ପିଢରେ ପଶିଲେ ଓ ସାନ୍ତାଳି ଗାଁଗୁଡିକରେ ପୁଣି ପ୍ରଚାର କାମ ଚାଲୁ ରଖିଲେ । ଶେଷରେ ଏହି ଚାକୁଲିୟା ପିଢ଼ର ଦୁଧିଆସୋଳ ଗ୍ରାମରେ ପ୍ରଚାର କଲାପରେ ତା. ୩୦-୧-୧୯୬୪ରିଖ ଦିନ 'କିତୁକଚା' ଗ୍ରାମରେ ଯାଇ ପହଂଚିଥିଲେ । ସେଠାରେ ସେମାନେ ଯେଉଁ ଘରେ ରହିଲେ, ସେହି ଘରର କାନ୍ଥରେ ପଣ୍ଡିତ ରଘୁନାଥ ମୁର୍ମୁ ଦୁଇଟି ଗୀତ ଲେଖିଥିଲେ, ଯାହା ଏବେ ସୁଦ୍ଧା ମହଜୁଦ ରହିଛି । ସେହି ଦୁଇଟି ଗୀତ ହେଲା –

(1) [illegible]
[illegible]
[illegible]
[illegible]

(2) [illegible]
[illegible]
[illegible]
[illegible]
[illegible]
[illegible]

– *(Pandit Raghunath Murmu- 30/1/1964)*

ପଣ୍ଡିତ ରଘୁନାଥ ମୁର୍ମୁ ତାଙ୍କର ଏହି ମହତ ବାଣୀ ଗୀତକୁ ଯୁବପିଢିମାନେ ଯେପରି ଯୁଗ ଯୁଗ ଧରି ମନେ ପକେଇବେ, ସେଥିପାଇଁ ସେ ଏହି 'କିତୁକଚା' ଗ୍ରାମର କାନ୍ଥରେ ଲେଖି ଇତିହାସ ରଚନା କରିଦେଲେ । ଏଥିରୁ ବେଶ୍ ଜଣାପଡୁଛି ପଣ୍ଡିତ ରଘୁନାଥ ମୁର୍ମୁ ତାଙ୍କ ଜୀବାନକାଳ ଭିତରେ ଯେଉଁ ସ୍ଥାନ, ଗାଁ ଗଣ୍ଡା, ସହର, ସଭା, ସମିତି ଓ ଶିକ୍ଷା ଅନୁଷ୍ଠାନମାନ ଯାତ୍ରା କରିଛନ୍ତି ସେସବୁ ଜାଗାମାନଙ୍କରେ କିଛିନା କିଛି କିମ୍ବଦନ୍ତୀ ସାନ୍ତାଳି ସମ୍ପ୍ରଦାୟର ଲୋକମାନଙ୍କ ପାଇଁ ଛାଡିଦେଇଛନ୍ତି । ଏହି କିତୁକଚା ଗ୍ରାମରେ ରହି ପଣ୍ଡିତ ରଘୁନାଥ ମୁର୍ମୁ ବୁଲିଥିବା ଆଖପାଖ ସାନ୍ତାଳି ଗାଁଗୁଡିକ ହେଲା– ରାଙ୍ଗାମାଟିଆ, ଖାୟାରବାଣି, ଦୁଖନାସୋଳ, କୁଟୁସୋଳ ପ୍ରଭୃତି । କୁଟୁସୋଳ ଗାଁଆରେ ଏକ ଛୋଟ ସଭାଟିଏ କଲାବେଳେ ଲୋକମାନେ ତାଙ୍କୁ ଅନେକ ପ୍ରଶଂସା କରିଥିଲେ ଏବଂ ସାନ୍ତାଳି ସମାଜ ଓ ଜାତି ପାଇଁ ସେ ଦେଇଥିବା ଉପଦେଶଗୁଡିକ ଲୋକମାନେ ଆଗ୍ରହର ସହିତ ଶୁଣିଥିଲେ । ଏହାପରେ ସେ ଏକ ପାଖ ଗାଁ ଡ଼ିଲାହାରାରେ ରାତ୍ରିଯାପନ କରିଥିଲେ । ସକାଳେ ଏହିଠାରେ ପ୍ରଚାର କରି ସେ ପୁଣି ତାଙ୍କର ଯାତ୍ରା ଆରମ୍ଭ କଲେ ଓ ସେ ଦିଘି ଗାଁ ରେ ପହଂଚିଲେ, ସେହି ସମୟରେ ଏହି ଦିଘି ଗାଁରେ କାଳିରାମ ସୋରେନ ନାମକ ଜଣେ ଭଲ ଡାକ୍ତର ଥିଲେ । ସେ ତାଙ୍କର ନିଜ ବୃତ୍ତିକାମରେ ରୋଗୀ ସେବା କରିବା ସହିତ ସାନ୍ତାଳି ସମାଜର ମଙ୍ଗଳ କାମ ମଧ୍ୟ କରୁଥିଲେ । ପଣ୍ଡିତ ରଘୁନାଥ ମୁର୍ମୁଙ୍କର ଦେଶ ଭ୍ରମଣ ପଦଯାତ୍ରା ଓ ସାନ୍ତାଳି ଭାଷା ପ୍ରଚାର କଥା ଶୁଣିଲା କ୍ଷଣି ତାଙ୍କ ସହିତ ସାକ୍ଷାତ୍ କରିବା ପାଇଁ ଭଦ୍ରବ୍ୟକ୍ତି ଦୌଡି ଆସିଥିଲେ ଏବଂ ପଣ୍ଡିତ ରଘୁନାଥ ମୁର୍ମୁଙ୍କୁ ସ୍ୱାଗତ ସମ୍ବର୍ଦ୍ଧନା ଜଣାଇଥିଲେ । ଏହା ପରେ ସେ ନିମ୍ଡି ନାମକ ଏକ ଗ୍ରାମକୁ ଯାଇଥିଲେ, ଏହିଠାରେ ମଧ୍ୟ ତାଙ୍କର ଯୋଜନା ମୁତାବକ ପ୍ରଚାର କଲେ ଓ କିଛି ଦିନ ରହିଲା ପରେ, ସେ ବାଳେଡି ଗାଁକୁ ଗଲେ । ସେହି ସମୟରେ ଶ୍ରୀଯୁକ୍ତ ଶଭାନାଥ ବେସ୍ରା ନାମକ ଜଣେ ଶିକ୍ଷକ ତାଙ୍କ ଗ୍ରାମ–ନିରାମିସ୍ରି, ବାଳେଡି ଗାଁରେ ଶିକ୍ଷକତା କରୁଥିଲେ, ସେ ଭଦ୍ରବ୍ୟକ୍ତି ଏହା ଶୁଣିବା ମାତ୍ରକେ ଅତିଶୀଘ୍ର ପଣ୍ଡିତ ରଘୁନାଥ ମୁର୍ମୁଙ୍କୁ ସାକ୍ଷାତ୍ କରିବା ପାଇଁ ଦୌଡିକି ଗଲେ ଏବଂ ପଣ୍ଡିତ ରଘୁନାଥ ମୁର୍ମୁଙ୍କୁ ପ୍ରଣାମ କିରି ସ୍ୱାଗତ ସମ୍ବର୍ଦ୍ଧନା ଜଣାଇଥିଲେ । ଏହାପରେ ତାଙ୍କଠୁ ସାନ୍ତାଳି ଭାଷା, ଅଲ୍‌ଚିକି ଲିପି ଶିକ୍ଷା, ସାମାଜ ସେବା ଏବଂ ସଂଘ ତିଆରି ବିଷୟରେ ବୁଝିଥିଲେ । ଏହି ବାଳେଡି ଗ୍ରାମରେ ରହି ଆଖପାଖ ସାନ୍ତାଳି ଗ୍ରାମଗୁଡିକ ପ୍ରଚାର କାମରେ ପଣ୍ଡିତ ରଘୁନାଥ ମୁର୍ମୁ ବୁଲି, ଏହିଠାରେ ମଧ୍ୟ କିଛିଦିନ ରହିଯାଇଥିଲେ । ଏହାପରେ ସେ ବେଙ୍ଗଲ ସୀମାଂଚଳ ଗାଁ ଜୟନଗରକୁ ଚାଲିଯାଇଥିଲେ । ପଶ୍ଚିମବଙ୍ଗ ସୀମାଂଚଳବର୍ତ୍ତୀ ଗ୍ରାମ ଜୟନଗରଠାରେ ପଣ୍ଡିତ ରଘୁନାଥ ମୁର୍ମୁ ପ୍ରଚାର କାର୍ଯ୍ୟ ଶେଷ କଲାପରେ ସେ, ପଶ୍ଚିମବଙ୍ଗ ରାଜ୍ୟ ଭିତରକୁ ଏହି ଜୟନଗର ଗାଁ ଦେଇ ପ୍ରବେଶ କରିଥିଲେ । ଏହାପରେ ସିଆଲ୍‌ଦାର କେତେକ ସାନ୍ତାଳି ବହୁଳ ମୁଖ୍ୟ ଗାଁଗୁଡିକ ଯାଇ ପହଂଚି ଥିଲେ ଏବଂ ସାନ୍ତାଳି ଗାଁଗୁଡିକର ଲୋକମାନଙ୍କୁ ସଚେତନ କରାଇ ସାନ୍ତାଳ ଜାତି, ଧର୍ମ, ସମାଜ, ସଂସ୍କୃତି, ସଂଘ, ଭାଷା, ସାହିତ୍ୟ ଏବଂ ଅଲ୍‌ଚିକି ବିଷୟରେ ପ୍ରଚାର କରିଥିଲେ ବୋଲି କିମ୍ବଦନ୍ତୀମାନ ରହିଛି । ଏହି ସିଆଲ୍‌ଦା ଅଂଚଳରେ ପଦଯାତ୍ରାରେ ପ୍ରଚାର କାମ ସମାପ୍ତ କଲାପରେ ପଣ୍ଡିତ ରଘୁନାଥ ମୁର୍ମୁ ନିଜ ମାତୃଭୂମି ଡାଣ୍ଡବୁସ ଗ୍ରାମକୁ ଫେରି ଆସିଥିଲେ ।

ଓଡିଶା, ବିହାର(ଝାଡଖଣ୍ଡ) ଓ ପଶ୍ଚିମବଙ୍ଗ ରାଜ୍ୟମାନଙ୍କୁ ପଦଯାତ୍ର କରି ପ୍ରଚାର କାର୍ଯ୍ୟ ସାରିବା ପରେ, ପ୍ରଚାର କାମରେ ନିୟୋଜିତ ହୋଇଥିବା ସମାଜ ସେବକ ଓ ସେବିକାମାନଙ୍କ ସହିତ ଆଲୋଚନା ପାଇଁ ବିଜାତଳାଠାରେ ଏକ ବୈଠକ କରି ତାଙ୍କର ବିଦେଶ ଗସ୍ତ ଓ ପ୍ରଚାର ବିଷୟରେ ବିଶେଷ ଭାବରେ ଆଲୋଚନା କରିଥିଲେ । ବିଭିନ୍ନ ରାଜ୍ୟର ସାନ୍ତାଳି ଗାଁମାନ ବୁଲି ସେ ବହୁତଗୁଡିଏ ଜିନିଷ ଦେଖିଲେ, ଲୋକଙ୍କ ସହିତ ମିଶିଲେ ତାଙ୍କ ସହିତ ଆଳାପ କଲେ, ତାଙ୍କର ଦୁଃଖ ସୁଖ ଭଲ ମନ୍ଦ କଥା ବୁଝିଲେ, ସେମାନେ ଯାହାଦେଲେ ସେ ଖାଇଲେ, ପିଇଲେ ଓ ଶୋଇଲେ । ପଣ୍ଡିତ ରଘୁନାଥ ମୁର୍ମୁ ଭଲଭାବରେ ଜାଣିଥିଲେ ଲୋକଙ୍କ ସହିତ ନ ମିଶିଲେ, ଦେଶ ନ ବୁଲିଲେ ଲୋକଙ୍କ ବିଷୟରେ କିଛି ଜାଣିହେବ ନାହିଁ ଏବଂ ଲୋକମାନେ ମଧ୍ୟ ତାଙ୍କ ସାନ୍ତାଳି ସମ୍ପ୍ରଦାୟର ଭଲମନ୍ଦ, ଆଚାର ବ୍ୟବହାର, ସାହିତ୍ୟ,

ସଂସ୍କୃତି, ସେବା, ଜାତି, ଧର୍ମ, ବ୍ୟକ୍ତିବିଶେଷର କର୍ତ୍ତବ୍ୟ, ସଭ୍ୟତାର ଇତିହାସ, ଆଗାମୀ ଦିନର ଭବିଷ୍ୟତ ଇତ୍ୟାଦି ବିଷୟରେ କିଛି ଜାଣିପାରିବେ ନାହିଁ । ପଣ୍ଡିତ ରଘୁନାଥ ମୁର୍ମୁ ତିନୋଟିଯାକ ପ୍ରଦେଶ ଭ୍ରମଣ କରିଲା ପରେ ସେ ଭଲଭାବରେ ସମସ୍ତ ବିଷୟରେ ଅଧ୍ୟୟନ କରି ଦେଖିଲେ । ଏସବୁକୁ ଆଖି ଆଗରେ ରଖି ସେ ଏକ ସାଂସ୍କୃତିକ ସଂଘର ପ୍ରତିଷ୍ଠା କରିବା ଦରକାର ପଡୁଛି ବୋଲି ମନେ କଲେ । ଏହାପରେ, ସେ ଓଡ଼ିଶାରେ ଏକ ସାନ୍ତାଳି ସମାଜ ପାଇଁ ସଂଘ ରେଜିଷ୍ଟ୍ରେସନଭୁକ୍ତ କଲେ ଏବଂ ଅନ୍ୟ ପଡୋଶୀ ରାଜ୍ୟଗୁଡିକରେ ଏହାର ଶାଖା କାର୍ଯ୍ୟାଳୟମାନ ପ୍ରତିଷ୍ଠିତ କରିବା ପାଇଁ ସେ ପଦକ୍ଷେପମାନ ନେଲେ । ପଣ୍ଡିତ ରଘୁନାଥ ମୁର୍ମୁଙ୍କ ଦ୍ୱାରା ପ୍ରତିଷ୍ଠିତ ଆଦିବାସୀ ସାଂସ୍କୃତିକ ସଂଘ, ରାଇରଙ୍ଗପୁର ସରକାରଙ୍କ ନିକଟରୁ ତା: ୧–୬–୧୯୬୪ରିଖ ଦିନ ସ୍ୱୀକୃତିଲାଭ ପାଇଥିଲା । Adivasi Socio-Educational & Cultural Association, Rairangpur, Mayurbhanj, Odisha ଭାବରେ ପ୍ରତିଷ୍ଠିତ ହେଲା । ଯାହାର ମୂଳ ପ୍ରତିଷ୍ଠାତା ହେଉଛନ୍ତି ନିଜେ ପଣ୍ଡିତ ରଘୁନାଥ ମୁର୍ମୁ । ଏହା ପରେ ବାରିପଦା ସଦର ସବ୍‌ଡିଭିଜନର ରାଙ୍ଗାମାଟିଆଠାରେ ଏକ ଶାଖା କାର୍ଯ୍ୟାଳୟ ଏବଂ ପାଞ୍ଚପିଢି ସବ୍‌ଡିଭିଜନର ନାଦୁଆପାଳଠାରେ ଏକ ଶାଖା କାର୍ଯ୍ୟାଳୟ ଖୋଲାହେଲା, ଯାହା A.S.E.C.A, Rairangpur ଆଦିବାସୀ ସମାଜ-ଶିକ୍ଷା ଓ ସାଂସ୍କୃତିକ ସଂଘ ରାଇରଙ୍ଗପୁର ଅଧୀନରେ କାର୍ଯ୍ୟକଲା ।

A.S.E.C.A, Rairangpur ସରକାରୀ ସ୍ୱୀକୃତି ପାଇଲା ମାତ୍ରକେ ୧୯୬୫ ମସିହାରେ ହିଁ ସଂଘ ନାମରେ ଏକ ପ୍ରେସ୍ ସ୍ଥାପନ କରାଗଲା ଏବଂ 'ସାଗେନ ସାକାମ୍' ନାମକ ମାସିକିଆ ଖବରକାଗଜ ପତ୍ରିକାକୁ ଛାପି ଦେଶବାସୀଙ୍କ ଅଧ୍ୟୟନ ପାଇଁ ପ୍ରସାର କରାଗଲା । ଏହା ପରେ ବିହାରରେ ୧୯୬୬ ମସିହାରେ A.S.E.C.A, Bihar ପ୍ରତିଷ୍ଠା କରାଗଲା ଏବଂ ୧୯୬୭ ମସିହାରେ A.S.E.C.A, West Bengal ପ୍ରତିଷ୍ଠା କରାଗଲା । ଏହା ପରେ ଆସାମରେ A.S.E.C.A, Assam ଏବଂ ୧୯୮୧ ମସିହାରେ A.S.E.C.A, New Delhi ପ୍ରତିଷ୍ଠିତ କରାଯାଇଅଛି । ଓଡ଼ିଶା ସମେତ ବିହାର ଓ ପଶ୍ଚିମବଙ୍ଗ ରାଜ୍ୟର ସାନ୍ତାଳି ବହୁଳ ଅଂଚଳମାନଙ୍କରେ ପଣ୍ଡିତ ରଘୁନାଥ ମୁର୍ମୁ ବିଭିନ୍ନ ସଂଘ ଓ ସମିତିମାନ ପ୍ରତିଷ୍ଠା କଲେ ଏବଂ ଏହା ପରେ ବିଭିନ୍ନ ସମୟରେ ଅନେକ ସଭା, କାର୍ଯ୍ୟକାରୀ କମିଟି ଓ ବାର୍ଷିକ ଉତ୍ସବମାନଙ୍କରେ ଯୋଗଦାନ କରି ସାନ୍ତାଳି ସମାଜର ଭାଷା ସାହିତ୍ୟ ଅଭିଭାଷଣ ଓ ଅଲ୍‌ଚିକି ଲିପି ଶିକ୍ଷାର ଚର୍ଚ୍ଚା କରି ଅବଶେଷରେ ତା:୧–୨–୧୯୮୨ରିଖ ମାଘ ସପ୍ତମୀ ଦିନ ସକାଳ ୮ଟା ବେଳେ ପଣ୍ଡିତ ରଘୁନାଥ ମୁର୍ମୁ ଏହି ଧରାପୃଷ୍ଠରୁ ବିଦାୟ ନେଲେ । ସେ ମୃତ୍ୟୁକୁ ବରଣ କଲେ ସତ, ମାତ୍ର ଆଦିବାସୀ ସାନ୍ତାଳି ସମ୍ପ୍ରଦାୟର ଅଲ୍‌ଚିକି ଲିପିର ଉଦ୍ଭାବକ ଭାବରେ ପଣ୍ଡିତ ରଘୁନାଥ ମୁର୍ମୁ ଏ ପୃଥିବୀର ମାନବ ସଭ୍ୟତା ଇତିହାସ ପୃଷ୍ଠାରେ ସର୍ବଦା ଜୀବିତ ହୋଇ ଚିରକାଳ ଅମର ହୋଇ ରହିଛନ୍ତି । ଆଦିବାସୀ ସାନ୍ତାଳି ସମ୍ପ୍ରଦାୟ ଏବଂ ଓଡ଼ିଶାବାସୀଙ୍କ ପାଇଁ ପଣ୍ଡିତ ରଘୁନାଥ ମୁର୍ମୁଙ୍କର ତ୍ୟାଗପୂର୍ଣ୍ଣ ସଂଘର୍ଷ ଜୀବନ ଅତୁଳନୀୟ । ପ୍ରକୃତରେ ପଣ୍ଡିତ ରଘୁନାଥ ମୁର୍ମୁ ଜଣେ ମହାତ୍ମା ଓ ଯୁଗପୁରୁଷ । ଦେଶବାସୀ ତାଙ୍କରି ଏହି ମହାନ୍ କାମ ପାଇଁ ପଣ୍ଡିତ ରଘୁନାଥ ମୁର୍ମୁଙ୍କୁ ଅଲ୍‌ଚିକି ଉଦ୍ଭାବକ, The Founder of Olchiki Alphabet. The Architecture of Olchiki Script Pandit Raghunath Murmu ଆଦି ଆଖ୍ୟା ଦେଇଛନ୍ତି । ସାନ୍ତାଳି ସମ୍ପ୍ରଦାୟର ଲୋକମାନେ ତାଙ୍କ ସାନ୍ତାଳି ଭାଷାରେ ଅଲ୍‌ଚିକି ଉନୁଦୁଗିୟା, ଅଲ୍‌ଚିକି ବାଡହି, ପାରସି ସିଞ୍ଚାନ୍ଦ, ଅଲ୍ ଗୁରୁ, ଗୁରୁ ବାବା, ଗୁରୁ ଗମ୍‌କେ ପଣ୍ଡିତ ରଘୁନାଥ ମୁର୍ମୁ ଆଦି ସୁ-ସମ୍ମାନିତ ସହ ଆଖ୍ୟା ଦେଇ ହୃଦୟର ଅନ୍ତର ଆତ୍ମାରେ ପୂଜା କରୁଛନ୍ତି ।

---

ବରିଷ୍ଠ ଅର୍ଥନୈତିକ ଅନୁସନ୍ଧାନକାରୀ
ଯୋଜନା ଓ ସଂଯୋଜନ ବିଭାଗ
ଲୋକସେବା ଭବନ, ଭୁବନେଶ୍ୱର

# ଓଡ଼ିଆ ଭାଷାର ଗରିମାମୟ ଐତିହ୍ୟ

**କାହ୍ନୁ ବାଳକୃଷ୍ଣ ବିହାରୀ**

ଭାଷାର ଅନ୍ୟାର୍ଥ ହେଉଛି ଅର୍ଥଯୁକ୍ତ ଉଚ୍ଚାରିତ ଶବ୍ଦ, କଥା, ଯାହାଦ୍ୱାରା ଲୋକେ କଥାବାର୍ତ୍ତା ହୁଅନ୍ତି । ଭାବ, ଚିନ୍ତା ଓ ଅନୁଭୂତି ବ୍ୟକ୍ତ କରିବା ମାନବର ଭାଷା । ଏହା ଗୋଷ୍ଠୀ, ଦଳ, ସମାଜରୁ ଜନ୍ମ ନେଇଥାଏ । ଗୋଟିଏ ଗୋଷ୍ଠୀ ବା ସମାଜ ପରସ୍ପର ମଧ୍ୟରେ ଭାବ ବିନିମୟ ନିମିତ୍ତ ଭାଷା ସୃଷ୍ଟି କରିଥାନ୍ତି । ଓଡ଼ିଆ ଭାଷା ଓଡ଼ିଆ ଜାତି ସୃଷ୍ଟି କରିଛି । ଓଡ଼ିଆମାନଙ୍କୁ ପ୍ରାଥମିକ କାଳରେ ଓଡ୍ର ବୋଲି କୁହାଯାଉଥିଲା ।

ଏକ ଜାତିର ବିକାଶ ଅନ୍ତରାଳରେ ଭାଷା ସର୍ବଦା ନିର୍ଣ୍ଣାୟକ ଭୂମିକା ଗ୍ରହଣ କରେ । ଗୋଟେ ଜାତିର ସଂଜୀବନୀ ଶକ୍ତି ହେଉଛି ଭାଷା । ଭାଷା ମାନବ ସଭ୍ୟତାର ପ୍ରାଣକେନ୍ଦ୍ର, ଗୋଟିଏ ଜାତିର ଅନ୍ତଃସ୍ରୋତ, ତା'ର ପରିଚୟ ଏବଂ ସ୍ୱାଭିମାନର ପ୍ରତୀକ । ମାଆ ଆମର ଜନନୀ, ଜନ୍ମଦାତ୍ରୀ ଓ ପ୍ରଥମ ଶିକ୍ଷାଦାତ୍ରୀ । ସେ ଆମକୁ ଜନ୍ମ ଦିଏ, ଲାଳନପାଳନ କରି ବଡ଼ କରେ, ଆମକୁ କଥା କହିବା ଶିଖାଏ । ମାଆ ମୁହଁରୁ ନିଃସୃତ କଥା ପାଲଟିଯାଏ ମାତୃଭାଷା । ମା' ମୁହଁରୁ ଶୁଣି ଶୁଣି ଆମେ କଥା କହିବା ଆରମ୍ଭ କରୁ । କଥାର ଅର୍ଥ ବୁଝୁ । ଆମ ପରିପାର୍ଶ୍ୱର ମଣିଷ, ପଶୁପକ୍ଷୀ, ଗଛଲତା ଓ ବିଭିନ୍ନ ବସ୍ତୁକୁ ଚିହ୍ନୁ । ମାଆଠାରୁ ହିଁ ଆରମ୍ଭ ହୁଏ ଶିକ୍ଷା । ଶିକ୍ଷା ଗଢ଼େ ସଚେତନଶୀଳ ମଣିଷ । ମଣିଷ ଗଢ଼େ ସମାଜ । ସମାଜରେ ବ୍ୟବହୃତ ଭାଷା ଓ ସଂସ୍କାରକୁ ନେଇ ଗଢ଼ିଉଠେ ସଂସ୍କୃତି– ଗଢ଼ିଉଠେ ଏକ ଜାତି ଏବଂ ଏକ ସ୍ୱତନ୍ତ୍ର ଜାତି ।

ଭାଷା ଏକ ପରମ୍ପରାଗତ ସାମାଜିକ ଓ ସାର୍ବଜନୀନ ସଂପତ୍ତି । ଭାଷା ଗୋଟିଏ ଜାତିର ପ୍ରତ୍ୟକ୍ଷ ପରିଚିତି ଓ ଅଭିବ୍ୟକ୍ତି । ଭାଷା ପରମ୍ପରାର ବାହକ, ସଂସ୍କୃତିର ଅବିଚ୍ଛେଦ୍ୟ ଅଙ୍ଗ । ଭାଷା ହିଁ ସାହିତ୍ୟ ଓ ସଂସ୍କୃତିର ଆଧାର । ଏହା ଏକ ସାମାଜିକ ଚୁକ୍ତି ଓ ପ୍ରତ୍ୟୟ ମଧ୍ୟ । ମଣିଷ ତା'ର ବିକାଶ ପ୍ରକ୍ରିୟାରେ ଯେଉଁ ସବୁ ସମ୍ପଦ ଆହରଣ କରିଛି ତନ୍ମଧ୍ୟରେ ଭାଷା ହେଉଛି ମହାର୍ଘ । ଭାଷା ମନୁଷ୍ୟର ଜୀବନ, ଚିନ୍ତନ ଓ ପ୍ରଗତିର ମାର୍ଗକୁ ସହଜ କରିବା ସଂଗେ ସଂଗେ ତା'ର ସଭ୍ୟତା, ସଂସ୍କୃତି ତଥା ବ୍ୟକ୍ତିତ୍ୱର ବିକାଶ ଘଟାଇ ଚାଲିଛି । ଭାଷା ହିଁ ବାକ୍ ବିନିମୟର ମୁଖ୍ୟ ମାଧ୍ୟମ । ଭାଷାଦ୍ୱାରା ସଂଯୋଜିତ ହୋଇଥାଏ ଗୋଟିଏ ଅଞ୍ଚଳର ଐତିହ୍ୟ, ସଂସ୍କୃତି ଓ ସାହିତ୍ୟ । ଭାଷା ମାଧ୍ୟମରେ ସଂପର୍କ ଯୋଡ଼ିବାଠାରୁ ଆରମ୍ଭ କରି ନିଜର ପରାକାଷ୍ଠାକୁ ବିଶ୍ୱ ଦରବାରରେ ପ୍ରଦର୍ଶିତ କରିହେବ । ଯେଉଁ ଜାତିର ଭାଷା–ସାହିତ୍ୟ ଯେତିକି ଉନ୍ନତ, ତା'ର ସାଂସ୍କୃତିକ ପରମ୍ପରା ସେତିକି ପ୍ରଗତିଶୀଳ ଓ ସମୃଦ୍ଧ ।

ଭକ୍ତକବି ମଧୁସୂଦନ ରାଓଙ୍କ ଭାଷାରେ –

''ମାତୃଭୂମି ମାତୃଭାଷା ଉଭୟ ଜନନୀ
ସେବ ତାଙ୍କୁ ଭକ୍ତି ଭରେ ଦିବସ ରଜନୀ ।''

ଭାଷା ହିଁ ଗୋଟିଏ ଜାତିର ପରିଚୟ । ମଣିଷ ପରିଚିତ ହୁଏ ତା'ର ଭାଷା ଦ୍ୱାରା । ମାତୃଭାଷା ହିଁ ଗୋଟିଏ ଜାତିର ସ୍ୱାଭିମାନକୁ ପ୍ରତିଷ୍ଠା କରେ । ଜ୍ଞାନପୀଠ ପୁରସ୍କାର ବିଜୟିନୀ ପ୍ରତିଭା ରାୟଙ୍କ ମତରେ– ''ମୁଁ ମାତୃଭାଷାରେ

ସ୍ୱପ୍ନ ଦେଖେ ଏବଂ ସେହି ସ୍ୱପ୍ନକୁ ସାହିତ୍ୟରେ ରୂପାୟିତ କରେ । ତେଣୁ ଯେଉଁ ଭାଷାରେ ସ୍ୱପ୍ନ ଦେଖେ, ତାହା ହିଁ ମୋର ମାତୃଭାଷା ।''

ଜାତିର ଜନକ ମହାତ୍ମା ଗାନ୍ଧୀ କହିଥିଲେ– ''ମାତୃଭାଷାରେ ପ୍ରାଥମିକ ଶିକ୍ଷା ନ ଦେବା ହେଉଛି, ଶିଶୁକୁ ମାତୃସ୍ତନରୁ ବଞ୍ଚିତ କରିବା ସହ ସମାନ । ଫଳତଃ ଶିଶୁର ଦୁର୍ବଳ ବ୍ୟକ୍ତିତ୍ୱ ହିଁ ସୃଷ୍ଟି ହୁଏ ।''

ସ୍ୱଭାବ କବି ଯଥାର୍ଥରେ ଲେଖିଲେ–
''ଉଚ୍ଚ ହେବା ପାଇଁ କର ଯେବେ ଆଶା
ଉଚ୍ଚ କର ଆଗେ ନିଜ ମାତୃଭାଷା ।''

ଭାଷା ହିଁ ଗୋଟିଏ ଜାତିର ସମୋନ୍ନତିର ପ୍ରଚ୍ଛଦ ପ୍ରେରଣା । ସମ୍ଭବତଃ ସେଥିପାଇଁ ସ୍ୱଭାବ କବି ଗଙ୍ଗାଧର ମେହେର ଯଥାର୍ଥରେ କହିଥିଲେ–

''ଯା ଭାଷା ଦୁର୍ବଳ କାହିଁ ତା'ର ଜ୍ଞାନ
କାହିଁ ତା'ର ରାଜ ଦୁଆରେ ସମ୍ମାନ ।''

ଉପରୋକ୍ତ ପ୍ରେକ୍ଷାପଟରେ ଓଡ଼ିଆ ଭାଷାର ଅତୀତ ଓ ବର୍ତ୍ତମାନକୁ ଏକ ତୁଳନାତ୍ମକ ଦୃଷ୍ଟିଭଙ୍ଗୀ ନେଇ ଅବଲୋକନ କଲେ ଆମ ଭାଷା ଯେ ବିକଶିତ ହୋଇନାହିଁ ନୁହେଁ, ପରନ୍ତୁ ସର୍ବଭାରତୀୟ ସ୍ତରରେ ଏକ ସ୍ୱତନ୍ତ୍ର ମାନକ ଭାଷା ରୂପେ ଶାସ୍ତ୍ରୀୟ ଭାଷାର ଗୌରବ ପ୍ରାପ୍ତ ହେବା ନିଶ୍ଚିତ ଭାବେ, କୋଟି କୋଟି ଓଡ଼ିଆଙ୍କ ପାଇଁ ସମ୍ମାନର ବିଷୟ । ଆଜି, ସମୟର ବାଲିବନ୍ତରେ ଅନେକ ଭାଷା ନିଜ ନିଜର ଅସ୍ତିତ୍ୱ ବଞ୍ଚାଇବା ପାଇଁ ପ୍ରୟାସ କରୁଥିବାବେଳେ ଅନେକ ଭାଷା ନିଶ୍ଚିହ୍ନ ହୋଇସାରିଲାଣି । ଦ୍ରୁତ ପରିବର୍ତ୍ତନଶୀଳ ବିଶ୍ୱବଜାରୀକରଣର ପ୍ରେକ୍ଷାପଟରେ ଏକଦା ଯେଉଁ ଭାଷା ଗୋଟିଏ ସ୍ୱତନ୍ତ୍ର ଭାଷା ନୁହଁ ବୋଲି ଅନ୍ୟ ପଡ଼ୋଶୀ ଭାଷାଙ୍କ ଦ୍ୱାରା ପ୍ରବଞ୍ଚିତ ହେଉଥିଲା, ଆଜି ସେହି ଭାଷା ବିଭିନ୍ନ ଭାରତୀୟ ଭାଷାଙ୍କ ମଧ୍ୟରେ ଷଷ୍ଠତମ ଶାସ୍ତ୍ରୀୟ ଭାଷାର ଗୌରବରେ ଗରିମାମଣ୍ଡିତ । ଏହାଠାରୁ ଅଧିକ ଆଶ୍ୱସ୍ତି ଓ ଆରୋହଣ ଆଉ କ'ଣ ହୋଇପାରେ ? ତେବେ ଶାସ୍ତ୍ରୀୟ ମାନ୍ୟତା ପାଇବା ନିଶ୍ଚିତ ଭାବେ କିଛି ଚିନ୍ତାବିତ୍ ଭାଷାପ୍ରେମୀଙ୍କ ନିରବଚ୍ଛିନ୍ନ ସମୁଦ୍ୟମର ଫଳଶ୍ରୁତି, ଏହା ଅସ୍ୱୀକାର କରାଯାଇ ନ ପାରେ । ୨୦୦୧ର ଗଣନା (Census) ଅନୁଯାୟୀ ଭାରତରେ ୧୫୯୯ କଥିତ ଭାଷା ମଧ୍ୟରୁ ୧୨୨ଟି ପ୍ରମୁଖ ଭାଷା । ସେହିପରି ବିଶ୍ୱର ୭୧୦୨ଟି ଭାଷା ମଧ୍ୟରେ ଓଡ଼ିଆର ସ୍ଥାନ ୩୭ତମ । ଗର୍ବର ବିଷୟ ଏହି କି ଯେ, ଭାରତର ୨୯ଟି ଲିଖିତ ଭାଷା ମଧ୍ୟରେ ଓଡ଼ିଆର ସ୍ଥାନ ଦଶମ । ଆମ ଓଡ଼ିଆ ଭାଷାର ଶବ୍ଦ ସଂଖ୍ୟା ପ୍ରାୟ ଦୁଇ ଲକ୍ଷରୁ ଅଧିକ । କିନ୍ତୁ ଓଡ଼ିଆ ଭାଷାର ଶାସ୍ତ୍ରୀୟ ମାନ୍ୟତା ପ୍ରାପ୍ତି ପରିପ୍ରେକ୍ଷୀରେ ଅନେକ ଲେଖକ, ଗବେଷକ, ଓଡ଼ିଆ ଭାଷାର ପ୍ରାଚୀନତା ସମ୍ବନ୍ଧରେ ଭିନ୍ନ ଭିନ୍ନ ମତ ସାବ୍ୟସ୍ତ କରନ୍ତି । ତେବେ ଭରତମୁନିଙ୍କ 'ନାଟ୍ୟଶାସ୍ତ୍ର'ରେ ଉଲ୍ଲେଖିତ 'ଉଡ୍ର' ଭାଷା ହିଁ ବର୍ତ୍ତମାନର ଓଡ଼ିଆ ଭାବରେ ପରିଚିତ ।

ଅତଏବ 'ନାଟ୍ୟଶାସ୍ତ୍ର' ୨୫୦୦ ବର୍ଷ ତଳର ରଚନା ବୋଲି ପ୍ରଖ୍ୟାତ ଭାଷାବିତ୍ ମନମୋହ ଘୋଷ ସ୍ୱୀୟ ମତ ପ୍ରଦାନ କରିଛନ୍ତି । ଭରତମୁନି ହେଉଛନ୍ତି ବ୍ୟାକରଣ ପ୍ରଣେତା ପାଣିନିଙ୍କ ପୂର୍ବସୁରୀ । ମହାଭାରତ ଯୁଗ ବା ଦ୍ୱାପର ଯୁଗରେ ଓଡ଼ିଆ ଭାଷା ପ୍ରଚଳନ ଥିଲା ବୋଲି ନାନା ପରିଶୀଳନରୁ ଜଣାପଡ଼ିଛି । ଦ୍ୱାପର ଯୁଗରେ ଶ୍ରୀକୃଷ୍ଣ ସ୍ୱୀୟ ଗୁରୁ ସନ୍ଦିପନୀଙ୍କଠାରୁ ଓଡ଼ିଆ ଭାଷା ଶିକ୍ଷା କରିଥିବା ସାରଳା ଦାସଙ୍କ 'ଓଡ଼ିଆ ମହାଭାରତ'ରେ ଉଲ୍ଲେଖ ଅଛି–

''ଓଡ଼ିଆ ତେଲଙ୍ଗୀ ଆଉ ନାଗରୀ ଦକ୍ଷିଣୀ
କନାଉଜ ଦ୍ରାବିଡ଼ ଯେ ଆଦିଭାଷା ଘେନି ॥
ଏହିପରି ଲେଖିଲେ ଯେ ଭାଷା ଚଉଷଠି
ନବଦିନେ ଲେଖିଲେ ଯେ ତାଳପତ୍ର ଚିଠି ॥''

ମହାଭାରତ, ଗରୁଡ଼ ପୁରାଣ ଓ ବିଷ୍ଣୁ ପୁରାଣ ଅନୁଯାୟୀ ରାଜା ବଳୀଙ୍କ ରାଣୀ ସୁଦେଷ୍ଣାଙ୍କ ଗର୍ଭରୁ ଦୀର୍ଘତମା ଋଷିଙ୍କ ନିଯୋଗ ଔରସରେ ଜାତ ଅଙ୍ଗ, ବଙ୍ଗ, କଳିଙ୍ଗ, ପୁଣ୍ଡ୍ର ଓ ସୁହ୍ମ ନାମକ ପାଞ୍ଚ ପୁତ୍ର ପାଞ୍ଚୋଟି ରାଜ୍ୟରେ ରାଜତ୍ୱ କରୁଥିଲେ ।

''ଅଙ୍ଗୋ ବଙ୍ଗଃ କଳିଙ୍ଗଶ୍ଚ ସୁହ୍ମଶ୍ଚ ତେ ସୁତଃ
ତେଷାଂ ଦେଶାଃ ସମାଖ୍ୟାତାଃ ସ୍ୱନାମ କଥିତା ଭୁବି ।''

ଏହି ପୌରାଣିକ ବର୍ଣ୍ଣନା ଅନୁଯାୟୀ ରାଜା ବଳୀଙ୍କ ପୁତ୍ର କଳିଙ୍ଗ ହିଁ କଳିଙ୍ଗ ରାଜ୍ୟ ପ୍ରତିଷ୍ଠା କରିଥିଲେ । ଦୀର୍ଘତମା ଋଷି କଳିଙ୍ଗରେ ବୈତରଣୀ ନଦୀ ତୀରରେ ତପସ୍ୟା କରୁଥିଲେ ବୋଲି ପୁରାଣରେ ବର୍ଣ୍ଣନା କରାଯାଇଛି । ଅନ୍ୟ ଏକ ପୁରାଣ ଆଖ୍ୟାୟିକା ଅନୁଯାୟୀ ସୁଦେଷ୍ଣାଙ୍କର ଅନ୍ୟ ଏକ ପୁତ୍ରର ନାମ ଓଡ୍ର, ଯାହା ଓଡ୍ର ଜାତି ଓ ଓଡ୍ର ଦେଶ ନାମରେ ପରିଚିତ । ଅନ୍ୟ ଏକ ପୁରାଣରେ ଉଲ୍ଲେଖ ଅଛି ଯେ, ବୈବସ୍ୱତ ମନୁଙ୍କର ପୁତ୍ର ପ୍ରଦ୍ୟୁମ୍ନଙ୍କର ଉତ୍କଳ, ବନିତାଶ୍ୱ ଓ ଗୟା ନାମରେ ତିନୋଟି ପୁତ୍ର ଥିଲେ । ସେମାନଙ୍କ ମଧ୍ୟରୁ ଉତ୍କଳ ହିଁ ଉତ୍କଳ ଦେଶର ପ୍ରତିଷ୍ଠାତା ।

ଉପରୋକ୍ତ ବର୍ଣ୍ଣନା ଆଧାରରେ ଓଡ଼ିଆ ଭାଷାର ପ୍ରାଚୀନତା ୨୫୦୦ ବର୍ଷ ପରିବର୍ତ୍ତେ ୫୬୦୦ ବର୍ଷର ବୋଲି ଧରାଯିବ । କାରଣ ଦ୍ୱାପର ଯୁଗର ପରିସମାପ୍ତି ପରେ କଳିଯୁଗ ଆରମ୍ଭ ହୋଇ ଇତି ମଧ୍ୟରେ ୫୧୨୧ ବର୍ଷ ଅତିକ୍ରାନ୍ତ ହୋଇ ସାରିଲାଣି । ମୂଳ ସଂସ୍କୃତ ମହାଭାରତର ଭୀଷ୍ମପର୍ବ ଏବଂ ଦ୍ରୋଣ ପର୍ବରେ ଓଡ୍ରମାନଙ୍କ ଅବସ୍ଥାନ ବିଷୟରେ ଉଲ୍ଲେଖ ଅଛି । ଏହି ପ୍ରାମାଣିକ ତଥ୍ୟ ଆଧାରରେ କୁହାଯାଇ ପାରିବ ଯେ ଭରତମୁନିଙ୍କ 'ନାଟ୍ୟଶାସ୍ତ୍ର' କାଳୀନ ଓଡ୍ର ଭାଷା ହିଁ ବର୍ତ୍ତମାନର ଓଡ଼ିଆ ଭାଷା । 'ଉଡ୍' ବା 'ଓଡ଼' ଭାଷା କହୁଥିବା ଲୋକଙ୍କୁ 'ଉଡ଼ିଆ' ବା 'ଓଡ଼ିଆ' କୁହାଯାଉଥିଲା । କେବଳ ଓଡ୍ର ନୁହେଁ, କଳିଙ୍ଗ, ତୋଷଳ, ଉତ୍କଳ, କଙ୍ଗୋଦ, ଦକ୍ଷିଣ କୋଶଳ ରାଜ୍ୟମାନଙ୍କରେ ମଧ୍ୟ ଓଡ୍ର ଭାଷାର ପ୍ରଚଳନ ଥିବାରୁ ଉକ୍ତ ରାଜ୍ୟବାସୀଙ୍କୁ ଓଡ଼ିଆ ବୋଲି କୁହାଯାଉଥିଲା ।

ମହାଭାରତ ଓ ପୁରାଣମାନଙ୍କରେ ମଧ୍ୟ ଓଡ଼ିଆଙ୍କ ସମ୍ବନ୍ଧରେ ଅନେକ ତଥ୍ୟ ପ୍ରତିଫଳିତ ହୋଇଛି । ପୁନଶ୍ଚ ମହାଭାରତ ଯୁଦ୍ଧରେ କଳିଙ୍ଗ ରାଜା ଶ୍ରୁତାୟୁ ନିଜର ତିନିପୁତ୍ର ଭାନୁମାନ, କେତୁମନ ଓ ଶୁକ୍ରଦେବଙ୍କ ସହ ଷାଠିଏ ହଜାର ରଥ ଓ ଦଶହଜାର ହାତୀ ଘେନି କୌରବଙ୍କ ସପକ୍ଷରେ ଯୋଗ ଦେଇଥିଲେ । କିନ୍ତୁ ଓଡ୍ର ସେନା ପାଣ୍ଡବଙ୍କ ସପକ୍ଷରେ ମହାଭାରତ ଯୁଦ୍ଧରେ ଯୋଗ ଦେଇଥିଲେ । ମହାବଳୀ ଭୀମ ଓ କଳିଙ୍ଗ ରାଜା ଶ୍ରୁତାୟୁଙ୍କ ପୁତ୍ର 'ଜଗତ୍କ୍ଷୟଙ୍କର' ମଧ୍ୟରେ ଯୁଦ୍ଧ ସଂଘଟିତ ହୋଇଥିଲା । ସହଦେବ ତାଙ୍କ ଦିଗ୍‌ବିଜୟ ବେଳେ କଳିଙ୍ଗ ରାଜାଙ୍କୁ ପରାସ୍ତ କରିଥିଲେ । ସଂସ୍କୃତ ମହାଭାରତରେ ଉଲ୍ଲେଖ ରହିଛି ଯେ ଧର୍ମରାଜ ଯୁଧିଷ୍ଠିର ଲୋମଶଋଷିଙ୍କ ନିର୍ଦ୍ଦେଶ କ୍ରମେ ବୈତରଣୀ ତଟସ୍ଥ ବିରଜା ତୀର୍ଥକୁ ଆଗମନ କରିଥିଲେ ।

ଏଥିରୁ ସ୍ପଷ୍ଟ ପ୍ରମାଣ ମିଳେ କି, ମହାଭାରତ ଯୁଦ୍ଧର ବହୁ ପୂର୍ବରୁ ଓଡ୍ରମାନେ ଓଡ଼ିଶା ଭୂଖଣ୍ଡରେ ବାସ କରୁଥିଲେ ତଥା ମହାଭାରତ ଯୁଗ ବେଳକୁ ଓଡ୍ର, କଳିଙ୍ଗ ଓ ଉତ୍କଳ ନାମକ ତିନିଗୋଟି ରାଜ୍ୟ ପ୍ରତିଷ୍ଠା କରିସାରିଥିଲେ । ଏତଦ୍‌ଭିନ୍ନ ମହାଭାରତର ବର୍ଣ୍ଣନାନୁଯାୟୀ ଦ୍ରୌପଦୀଙ୍କ ସ୍ୱୟମ୍ବର ସଭାରେ କଳିଙ୍ଗ ରାଜା 'ଶ୍ରୁତାୟୁଧ' ଦୁର୍ଯ୍ୟୋଧନଙ୍କ ଗହଣରେ ଉପସ୍ଥିତ ଥିଲେ ବୋଲି ବର୍ଣ୍ଣିତ । ଏହି ବର୍ଣ୍ଣନାକୁ ପ୍ରାମାଣିକ ତଥ୍ୟ ଆକାରରେ ଧରି ନିଆଗଲେ ମହାଭାରତ ଯୁଗର ବହୁ ପୂର୍ବରୁ ଓଡ଼ିଆ ଜାତିର ଅଭ୍ୟୁଦୟ ହୋଇସାରିଥିଲା ବୋଲି ଅନୁମାନ କରାଯାଏ ।

''ଦ୍ରାବିଡାଶ୍ଚ କଳିଙ୍ଗାଶ୍ଚ.... ତାଃ କ୍ଷତ୍ରିୟ ଜାତୟଃ''
(ମହାଭାରତ, ଅନୁଶାସନ ପର୍ବ ୩୩-୨୨)

ଏସବୁ ଆମ ପୁରାଣ ଗ୍ରନ୍ଥମାନଙ୍କରେ ବର୍ଣ୍ଣିତ ବିଷୟ ।

ଏତଦ୍‌ବ୍ୟତୀତ ଜୈନଶାସ୍ତ୍ର ଅନୁଯାୟୀ ଖ୍ରୀଷ୍ଟପୂର୍ବ ସପ୍ତମ ଓ ଅଷ୍ଟମ ଶତାବ୍ଦୀରେ ଓଡ୍ରମାନେ ଧାର୍ମିକ, ସଭ୍ୟ, ସମୃଦ୍ଧ ଓ ଶାନ୍ତିପ୍ରିୟ ଜାତି ଭାବେ ସୁପରିଚିତ ଥିଲେ । ଜୈନ ଓ ବୌଦ୍ଧ ସାହିତ୍ୟରେ ଓଡ୍ର, କଳିଙ୍ଗ ଓ ଉତ୍କଳ ସଂପର୍କରେ ବହୁ ସୂଚନା ମିଳିଥାଏ । ଶେଷ ଜୈନତୀର୍ଥଙ୍କର ଧର୍ମପ୍ରଚାର ପାଇଁ ଓଡ଼ିଶା ଆସିଥିଲେ

ଏବଂ ଭଦ୍ରକଠାରେ ଚତୁର୍ମାସ୍ୟା କାଳ କଟାଇଥିଲେ । ପ୍ରସିଦ୍ଧ ଜୈନତୀର୍ଥଙ୍କର ଋଷଭନାଥଙ୍କ ମୂର୍ତ୍ତି କଳିଙ୍ଗ–ଜିନ୍ ନାମରେ କଳିଙ୍ଗର ପିହୁଣ୍ଡି ନଗରୀରେ ପୂଜା ପାଉଥିଲା । ତତ୍କାଳୀନ ଭାରତବର୍ଷରେ ଗଢ଼ିଉଠିଥିବା ସାତଗୋଟି ରାଷ୍ଟ୍ର ମଧ୍ୟରେ କଳିଙ୍ଗ ରାଷ୍ଟ୍ର ପ୍ରଥମ ଓ ସର୍ବୋତ୍କୃଷ୍ଟ ରାଷ୍ଟ୍ର ଭାବେ ସୁଖ୍ୟାତ ଥିଲା ।

ବୌଦ୍ଧଶାସ୍ତ୍ର ଅନୁଯାୟୀ ବୁଦ୍ଧଦେବଙ୍କ ପ୍ରଥମ ଶିଷ୍ୟ ଥିଲେ ଓଡ଼ିଆ ବଣିକ ତପସୁ ଓ ଭଲ୍ଲିକ । ଏ ଶିଷ୍ୟଦ୍ୱୟ ବୁଦ୍ଧଦେବଙ୍କ ନଖ ଓ କେଶ ଆଣି ଯାଜପୁର ଜିଲ୍ଲା ଜାରକା ନିକଟସ୍ଥ ତାରାପୁର ପାହାଡ଼ରେ କେଶସ୍ତୁପ ନିର୍ମାଣ କରିଥିଲେ । ଖ୍ରୀଷ୍ଟପୂର୍ବ ଷଷ୍ଠ ଶତାବ୍ଦୀରେ ନିର୍ମିତ ହୋଇଥିବା ଉକ୍ତ ସ୍ତୁପ ହେଉଛି ବିଶ୍ୱର ପ୍ରଥମ ବୌଦ୍ଧସ୍ତୁପ । ବୌଦ୍ଧଶାସ୍ତ୍ରରୁ ପୁନଶ୍ଚ ଜଣାଯାଏ, କ୍ଷେମ ନାମକ ଜନୈକ ବୌଦ୍ଧଭିକ୍ଷୁ କଳିଙ୍ଗ ରାଜା ବ୍ରହ୍ମଦତ୍ତଙ୍କୁ ବୁଦ୍ଧଙ୍କ ମହାନିର୍ବାଣ ପରେ ବୁଦ୍ଧଦେବଙ୍କ ଗୋଟିଏ ଦାନ୍ତ ପ୍ରଦାନ କରିଥିଲେ । ଉପରୋକ୍ତ ତଥ୍ୟରୁ ଏହା ନିରୂପିତ, ଖ୍ରୀଷ୍ଟପୂର୍ବ ଷଷ୍ଠ ଶତାବ୍ଦୀରେ ଓଡ଼ିଶାରେ ବିକଶିତ ସଭ୍ୟତା ଓ ସଂସ୍କୃତି ଉନ୍ନତ ଧରଣର ଥିଲା ।

ଖ୍ରୀଷ୍ଟାବ୍ଦ ୬୩୮–୩୯ରେ ଚୀନ୍ ପରିବ୍ରାଜକ ହୁଏନ୍‌ସାଂଙ୍କ ବିବରଣୀରୁ ଜଣାଯାଏ, ଓଡ଼ିଆମାନେ ଦୀର୍ଘକାୟ, ସ୍ୱଜାତ୍ୟାଭିମାନୀ, ସାହସୀ, ପରିଶ୍ରମୀ ଓ ବିଦ୍ୟାବାନ ଥିଲେ । ଗ୍ରୀକ୍ ଦୂତ ମେଘାସ୍ଥିନିସ୍ ସ୍ୱରଚିତ ବିବରଣୀରେ ଓଡ୍ରମାନେ ସମର ବିଶାରଦ ଥିଲେ ବୋଲି ଲେଖି ଯାଇଛନ୍ତି । ଉପରୋକ୍ତ ତଥ୍ୟାବଳୀରୁ ପାଠକେ ନିଶ୍ଚିତ ଭାବେ ଓଡ୍ର ବା ଓଡ଼ିଆ ଭାଷାର ପ୍ରାଚୀନତମ ଗରିମା ଓ ତା'ର ସଭ୍ୟତା ତଥା ସଂସ୍କୃତିକୁ ହୃଦୟଙ୍ଗମ କରିପାରିବେ ।

ଭାରତର ଆଦ୍ୟ ଧର୍ମଶାସ୍ତ୍ର ତଥା ଆଦ୍ୟ ମାନବ ସମ୍ବିଧାନ ମନୁସ୍ମୃତିରେ ମଧ୍ୟ 'ଓଡ୍ର' ଓ 'କଳିଙ୍ଗ'ର ବର୍ଣ୍ଣନା ପରିଲକ୍ଷିତ ହୁଏ ।

''ଇମାଃ କ୍ଷତ୍ରିୟ ଜାତୟ ... ପ୍ରୌଣ୍ଡ୍ର କାଣ୍ଡ୍ରୌଡ୍ର ଦ୍ରାବିଡ଼ଃ ।'' (ମନୁସଂହିତା ୧୦, ୪୩–୪୪)

ଅର୍ଥାତ୍– ଦ୍ରାବିଡ଼, ପ୍ରୌଣ୍ଡ୍ରକ, ଓଡ୍ର ଆଦି ସମୁଦାୟ କ୍ଷତ୍ରିୟ ଥିଲେ ।

ଏଥିରୁ ସୂଚିତ ହୁଏ କି ଓଡ୍ର ବା ଓଡ଼ିଆ ଭାଷା ମହାଭାରତ ପୂର୍ବରୁ ମଧ୍ୟ ପ୍ରଚଳିତ ଥିଲା । ମହାଭାରତ ଗ୍ରନ୍ଥରେ ମନୁସ୍ମୃତିର ଉଲ୍ଲେଖ ଥିଲାବେଳେ ମନୁସ୍ମୃତିରେ କିନ୍ତୁ ମହାଭାରତର କୌଣସି ଚିହ୍ନବର୍ଣ୍ଣ ନାହିଁ । ଅର୍ଥାତ୍ ମନୁସ୍ମୃତି ନିଶ୍ଚିତଭାବେ ମହାଭାରତ ପୂର୍ବରୁ ବିଦ୍ୟମାନ । ଏଥିରୁ ଆମେ ସ୍ଥିର ନିଶ୍ଚିତ ହୋଇପାରିବା, ଓଡ଼ିଆ ଭାଷା ୫୦୦୦ ବର୍ଷର ପୁରୁଣା ନୁହଁ, ପରନ୍ତୁ ମହାଭାରତ ଯୁଦ୍ଧ ପୂର୍ବରୁ ଅର୍ଥାତ୍ ଆଜକୁ ଅନ୍ୟୂନ ୭୦୦୦ ବର୍ଷ ଊର୍ଦ୍ଧ୍ୱ ପ୍ରାଚୀନ ଭାଷା ।

ଓଡ଼ିଆ ଭାଷାର କେତେକ ଶବ୍ଦ ଖ୍ରୀ.ପୂ. ପ୍ରଥମ ଶତାବ୍ଦୀରେ ଖୋଦିତ ଖାରବେଳଙ୍କ ହାତୀଗୁମ୍ଫା ଶିଳାଲେଖଠାରୁ ଆରମ୍ଭ କରି ପରବର୍ତ୍ତୀ ସମୟର କେତେକ ଶିଳାଲେଖରେ ପରିଲକ୍ଷିତ ହୋଇଥାଏ । ଓଡ଼ିଆ ଭାଷାର ପୂର୍ଣ୍ଣ ବାକ୍ୟ ୧୦୫୧ ଶତାବ୍ଦୀରେ ଖୋଦିତ 'ଉରଜାମ୍' (ଦୀର୍ଘାସୀ ନିକଟସ୍ଥ ଦେବୀ ମନ୍ଦିର)ରେ ଦେଖିବାକୁ ମିଳେ । ବର୍ତ୍ତମାନ ଏହା ମାଡ୍ରାସ ମ୍ୟୁଜିୟମ୍‌ରେ ସଂରକ୍ଷିତ ।

ମାନବ ସଭ୍ୟତାର କ୍ରମବିକାଶ ମୂଳରେ ଭାଷା, ଧର୍ମ, ଆଞ୍ଚଳିକ ପରିବେଶ ସହ ରାଜନୈତିକ ବ୍ୟବସ୍ଥାର ପ୍ରଭାବ ବିଦ୍ୟମାନ । ପଞ୍ଚଦଶ ଶତାବ୍ଦୀରେ ଲିଖିତ ସାରଳା ଦାସଙ୍କ ମହାଭାରତ ଭାରତୀୟ ସାହିତ୍ୟରେ ଏକ ଅସାଧାରଣ ମହାକାବ୍ୟ । ଏହି ବିରାଟ ମହାକାବ୍ୟରେ ପ୍ରାଚୀନ ଓଡ଼ିଆ ଭାଷାର ସାହିତ୍ୟିକ ସ୍ୱରୂପ ପ୍ରଥମ କରି ଉପଲବ୍ଧ ହୋଇଥାଏ । ଏହି ସମୟରୁ ହିଁ ଧାରାନୁବଦ୍ଧ ଭାବେ ସାହିତ୍ୟ ସୃଷ୍ଟିରେ ଓଡ଼ିଆ ଭାଷାର ପ୍ରୟୋଗ ହୋଇଆସିଛି । ପଞ୍ଚଦଶ ଶତାବ୍ଦୀର ଶେଷଭାଗରେ ବଳରାମ ଦାସଙ୍କ 'ରାମାୟଣ'ରେ ପ୍ରାଚୀନ ଓଡ଼ିଆ ଭାଷାର ଅପେକ୍ଷାକୃତ ମାର୍ଜିତ ରୂପ ଦେଖାଯାଏ । ଷୋଡ଼ଶ ଶତାବ୍ଦୀର ଜଗନ୍ନାଥ ଦାସଙ୍କ 'ଭାଗବତ' ପ୍ରାଚୀନ ଓ ମଧ୍ୟଯୁଗର ଏକ ସନ୍ଧିକ୍ଷଣରେ ରଚିତ । ମଧ୍ୟଯୁଗୀୟ

କାବ୍ୟ ସାହିତ୍ୟରେ ଉପେନ୍ଦ୍ର ଭଂଜ ଅନୁସୃତ ଆଳଙ୍କାରିକ, ସରଳ, ସାବଲୀଳ ଓ ସୁକୁମାର ରୂପ ଲକ୍ଷ୍ୟ କରାଯାଏ । ଊନବିଂଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧ ଓଡ଼ିଆ ସାହିତ୍ୟର ଆଧୁନିକ କାଳ । ପରବର୍ତ୍ତୀ ସମୟରେ ଆମ ଭାଷା ଆହୁରି ମାର୍ଜିତ ହୋଇଛି । ଆମ ସାହିତ୍ୟ ମାଧ୍ୟମରେ ହିଁ ଆମ ଭାଷାର କ୍ରମବିକାଶକୁ ଅନୁଭବ କରିହୁଏ । ଆମ ଲୋକଙ୍କର ବିଶ୍ୱାସ ଯେ ଓଡ଼ିଆ ଭାଷାକୁ ଓଡ଼ିଆ ସାହିତ୍ୟ ହିଁ ବଞ୍ଚାଇ ରଖିଛି । ସାହିତ୍ୟର ଯଦିଓ ଗୋଟିଏ ବିରାଟ ଭୂମିକା ରହିଛି ଭାଷାର ଉନ୍ନତିରେ, ତେବେ ଏକମାତ୍ର ସାହିତ୍ୟ ହିଁ ଭାଷାକୁ ବଞ୍ଚାଇ ରଖିଛି କହିବା ଭୁଲ ।

ଏମନ୍ତ କି, ଗତ ଅଢ଼େଇଶ ବା ତିନିଶହ ବର୍ଷ ମଧ୍ୟରେ ଅବିଭକ୍ତ ଗଂଜାମ ହିଁ ଓଡ଼ିଆ ଭାଷା ଓ ସାହିତ୍ୟର ଏକମାତ୍ର କେନ୍ଦ୍ରଭୂମି ହୋଇଛି କହିଲେ ଚଳେ । ଜାତୀୟ ଜୀବନର ଏ ସ୍ୱାତନ୍ତ୍ର୍ୟ, ଏ ବଳିଷ୍ଠତା ନଷ୍ଟ କରିବା ପାଇଁ ଅଣ ଓଡ଼ିଆଙ୍କ ପକ୍ଷରେ ସମସ୍ତ ରାଜଶକ୍ତିର ପ୍ରୟୋଗ ସତ୍ତ୍ୱେ ଅସମ୍ଭବ ହୋଇପଡ଼ିଛି । ସେତେବେଳୁ ମଧ୍ୟ ସାରା ପ୍ରଦେଶରେ ଚାଟଶାଳୀମାନଙ୍କରେ ଓଡ଼ିଆ ଭାଷା ପଢ଼ା ହେଉଥାଏ । ମାତ୍ର ରାଜ୍ୟର ବ୍ୟବହାର ନିମନ୍ତେ ଲୋକେ ବିଦେଶୀ ଭାଷା ପରି ତେଲେଙ୍ଗା ମଧ୍ୟ ପଢୁଥାନ୍ତି । ଗଂଜାମ ପ୍ରାକୃତିକ ଉତ୍କଳର ଦକ୍ଷିଣ ସୀମାରେ ରହି ସେମାନେ ଭାଷାକୁ ପ୍ରାଣରୁ ଅଧିକ ମଣି ଆରାଧନା କରୁଥିଲେ ।

ଇଂରେଜ ଶାସନାଧୀନ ଓଡ଼ିଶାରେ ସ୍ପଷ୍ଟ ଓ ପ୍ରତ୍ୟକ୍ଷ ଭାବରେ ଅଣ ଓଡ଼ିଆଙ୍କ ପ୍ରତିପତ୍ତି ବଢ଼ିଲା । ଓଡ଼ିଶା ଲୋକେ ରାଜ କର୍ମଚାରୀ ହୋଇପାରିଲେ ନାହିଁ । ଗୋଟିଏ ଭାଷା ହଜାର ହଜାର ବର୍ଷର ମାନସ ମନ୍ଥନରୁ ଜନ୍ମଲାଭ କରିଥାଏ । ମାତ୍ର ବ୍ୟବହାର ଅଭାବରୁ ଗୋଟିଏ ପିଢ଼ିରେ ହିଁ ଭାଷା ମରିଯାଏ । ଏପରି ଅବସ୍ଥାରେ ଯେକୌଣସି କ୍ଷୁଦ୍ର ଅପରିଣତ ଭାଷା ଆତ୍ମବିସ୍ମୃତ ହୋଇ ଲୁଚିଯିବାର କଥା, ଅନ୍ୟପକ୍ଷରେ ଓଡ଼ିଆ ଜାତିର ସଭ୍ୟତା ଥିଲା, ଭାଷା ଥିଲା, ସାହିତ୍ୟ ଥିଲା । ପ୍ରାୟ ଦୁଇ ଶତାବ୍ଦୀର ରାଜନୈତିକ ପରତନ୍ତ୍ରତା ଓ ଆନୁଷଙ୍ଗିକ ସାମାଜିକ ବିକ୍ଷୋଭରେ, ଉପରୋକ୍ତ ଅବସ୍ଥାରେ ତାହା ଇଂରେଜ ଶାସନରେ ଲୁଚିଯିବା ଅସମ୍ଭବ । ଇଂରେଜ ଶାସନର ରୀତିମତ ଉଦ୍ୟମ ସତ୍ତ୍ୱେ ତାହା ଧ୍ୱଂସ ଆଡ଼କୁ ନ ଯାଇ ବରଂ କ୍ରମେ କ୍ରମେ ଆତ୍ମବୃଦ୍ଧିରେ ଉଦ୍‌ବୁଦ୍ଧ ହେବାକୁ ଲାଗିଲା । ଲୋକେ ନିଜେ ନିଜେ ଓଡ଼ିଆ ଭାଷା ଶିଖିଲେ, ପିଲାଙ୍କୁ ଶିଖାଇଲେ ଓ ଓଡ଼ିଆରେ ଗ୍ରନ୍ଥ ଲେଖିଲେ ।

ଊନବିଂଶ ଶତାବ୍ଦୀରେ ଓଡ଼ିଆ ଭାଷାର ଆଧୁନିକ ଭାଷା ବିଜ୍ଞାନ ଚର୍ଚ୍ଚା ଆରମ୍ଭ ହୋଇଥିଲା । ଓଡ଼ିଶାର ବହୁ ବିଦ୍ୱାନ୍, ଗବେଷକ, ଅଧ୍ୟାପକ ଓ ଅନୁସନ୍ଧିତ୍ସୁ ଓଡ଼ିଆ ଭାଷା, ଲିପି ଓ ଭାଷା ବିଜ୍ଞାନ ସମ୍ବନ୍ଧରେ ଅନେକ ପ୍ରବନ୍ଧ ବିଭିନ୍ନ ପତ୍ରପତ୍ରିକାରେ ଲେଖିଚାଲିଲେ । ବିଶ୍ୱବିଦ୍ୟାଳୟ ବାହାରେ ଅନେକ ବିଦ୍ୱାନ୍ ଓଡ଼ିଆ ଭାଷାର ଆଧୁନିକ ଭାଷା ବିଜ୍ଞାନ ଗବେଷଣାକୁ ତ୍ୱରାନ୍ୱିତ କଲେ । ଓଡ଼ିଆ ତଥା ଭାରତୀୟ ବିଦ୍ୱାନ୍‌ମାନଙ୍କ ବ୍ୟତୀତ ଅନେକ ଲବ୍ଧପ୍ରତିଷ୍ଠ ବିଦେଶୀ ବିଦ୍ୱାନ ଓଡ଼ିଆ ଭାଷା ଚର୍ଚ୍ଚାରେ ମନୋନିବେଶ କରିଛନ୍ତି । ଭାରତ ବାହାରେ ବିଭିନ୍ନ ବିଶ୍ୱବିଦ୍ୟାଳୟମାନଙ୍କରେ ତଥା ବିଦେଶୀ ଗବେଷକଙ୍କ ଉଦ୍ୟମରେ ଓଡ଼ିଆ ଭାଷା ବିଜ୍ଞାନ ଚର୍ଚ୍ଚା ଅବ୍ୟାହତ ରହିଛି । କେତେକ ବିଦେଶୀ ବିଦ୍ୱାନ୍ ଓଡ଼ିଆ ଭାଷା ଓ ଭାଷାବିଜ୍ଞାନ ଉପରେ ପ୍ରବନ୍ଧ ଓ ପୁସ୍ତକ ରଚନା କରିଛନ୍ତି । ଲଣ୍ଡନର 'ସ୍କୁଲ ଅଫ୍ ଓରିଏଣ୍ଟାଲ ଆଣ୍ଡ ଆଫ୍ରିକାନ୍ ଷ୍ଟଡ଼ିଜ୍' ୧୯୫୯ ମସିହାରେ ଓଡ଼ିଆ ବିଭାଗ ଖୋଲିଛନ୍ତି । ଆମେରିକାର କର୍ଣ୍ଣେଲ ବିଶ୍ୱବିଦ୍ୟାଳୟ ୧୯୬୪ରେ ଓଡ଼ିଆ କାର୍ଯ୍ୟକ୍ରମ ଆରମ୍ଭ କରିଛନ୍ତି ।

ଓଡ଼ିଆ ଭାଷା ଶାସ୍ତ୍ରୀୟ ମାନ୍ୟତା ପାଇବା ପରେ ବିଭିନ୍ନ ବିଶ୍ୱବିଦ୍ୟାଳୟରେ ଓଡ଼ିଆ ଚେୟାର ଓ ଉତ୍କର୍ଷ କେନ୍ଦ୍ର ପ୍ରତିଷ୍ଠା ନିମିତ୍ତ ଉଦ୍ୟମ ଆରମ୍ଭ ହେଲାଣି । ଘରୋଇ ଭାବରେ ମଧ୍ୟ ଏ ଦିଗରେ ପ୍ରଚେଷ୍ଟା ଜାରି ରହିଥିବା ଅନୁମେୟ । ଶାସ୍ତ୍ରୀୟ ମାନ୍ୟତା ପ୍ରାପ୍ତି ଅବସରରେ ବିଭିନ୍ନ ସମାରୋହ, କାର୍ଯ୍ୟକ୍ରମ, ଉତ୍ସବ ଆଦିରେ ସମସ୍ତ ଭାଷାପ୍ରେମୀ, ବୁଦ୍ଧିଜୀବୀମାନଙ୍କୁ ସାମିଲ କରାଯିବା ଆବଶ୍ୟକ । କେବଳ ଉଚ୍ଚ ଶିକ୍ଷିତ ସମ୍ଭ୍ରାନ୍ତ ଗୋଷ୍ଠୀ ମଧ୍ୟରେ

ଆଲୋଚନାଚକ୍ର, ସମାରୋହ ପ୍ରଭୃତି ସୀମାବଦ୍ଧ ରଖିବା ଉଚିତ ନୁହଁ । ଭାଷା ସମସ୍ତଙ୍କର ଏବଂ ସମସ୍ତେ ଯେପରି ଉତ୍ସବ ଉଦ୍ଦୀପନାର ଆନନ୍ଦ ଅନୁଭବ କରିପାରିବେ ଓ ସବୁ ବର୍ଗର ଲୋକେ ଯେପରି ସେଥିରେ ସାମିଲ ହୋଇପାରିବେ ସେଥିଲାଗି ପ୍ରଚେଷ୍ଟା କରାଯିବା ଉଚିତ ।

ପୃଥିବୀରେ ଏବେ ବି ଅସଂଖ୍ୟ ଅଲିଖିତ ଭାଷା ଅଛନ୍ତି, ଯେଉଁଥିରେ କୌଣସି ଲିଖିତ ସାହିତ୍ୟ ସୃଷ୍ଟି ହୋଇ ପାରିନାହିଁ । ତଥାପି ସେ ଭାଷାଗୁଡ଼ିକ ବଞ୍ଚିଛନ୍ତି ଓ ନିଜ ନିଜର ସାମାଜିକ ଦାୟିତ୍ୱ ବହନ କରିଛନ୍ତି । ଗୋଟିଏ ସମାଜରେ ଭାଷାଦ୍ୱାରା ନାନା ପ୍ରକାର କାର୍ଯ୍ୟସଂପନ୍ନ ହୋଇଥାଏ । ସାହିତ୍ୟ ସୃଷ୍ଟି ବି ସେହି ପ୍ରକାର ଗୋଟିଏ କାର୍ଯ୍ୟ । ଭାଷାକୁ ନେଇ ସାହିତ୍ୟ, କିନ୍ତୁ ସାହିତ୍ୟକୁ ନେଇ ଭାଷା ନୁହେଁ । ସାହିତ୍ୟ ନ ଥାଇ ଅନେକ ଭାଷା ଅଛନ୍ତି ଏ ପୃଥିବୀରେ, କିନ୍ତୁ ଭାଷା ନ ଥାଇ ସାହିତ୍ୟ ନାହିଁ । ତେବେ ଗୋଟିଏ ଭାଷାରେ ଉଚ୍ଚକୋଟୀର ସାହିତ୍ୟ ସୃଷ୍ଟି ହେଲେ ତାହା ଭାଷାକୁ ଗୌରବ ମଣ୍ଡିତ କରେ ।

ଭାଷା ପାଇଁ ସାହିତ୍ୟର ଯଥେଷ୍ଟ ଆବଶ୍ୟକତା ଅଛି, ସେ କଥା କେହି ଅସ୍ୱୀକାର କରିବେ ନାହିଁ । ସମ୍ବାଦପତ୍ର, ବିଜ୍ଞାପନଠାରୁ ଆରମ୍ଭ କରି ପିଲାଙ୍କ ପାଠ୍ୟପୁସ୍ତକ ପର୍ଯ୍ୟନ୍ତ ସବୁ ପ୍ରକାର ଲେଖାକୁ ସାହିତ୍ୟର ମର୍ଯ୍ୟାଦା ଦେବା ଉଚିତ । ତୁଳନାତ୍ମକ ଭାବରେ ଅନୁଧ୍ୟାନ କଲେ ହୃଦ୍‌ବୋଧ ହୁଏ, ଭାଷା ଓ ସାହିତ୍ୟର ଅଭିବୃଦ୍ଧି ପାଇଁ ଅନେକ କାର୍ଯ୍ୟ ହେଲାଣି ଏବଂ ଭବିଷ୍ୟତରେ ଏ ଦିଗରେ ଅଧିକରୁ ଅଧିକ ଉଦ୍ୟମ ଜାରି ରହିବ ବୋଲି ଆଶା କରାଯାଏ ।

**ସହାୟକ ଗ୍ରନ୍ଥସୂଚୀ**


୧. ଓଡ଼ିଆ ଭାଷା ଅତୀତ, ବର୍ତ୍ତମାନ ଓ ଭବିଷ୍ୟତ– ପ୍ରଫେସର ବୈଷ୍ଣବ ଚରଣ ସାମଲ

୨.ଭରତମୁନିଙ୍କ ନାଟ୍ୟଶାସ୍ତ୍ରର ଉଡ୍ର ବିଭାଷା ହିଁ ଓଡ଼ିଆ ଭାଷା– କୀର୍ତ୍ତନ ନାରାୟଣ ପାଢ଼ୀ

୩. ଶାସ୍ତ୍ରୀୟ ଭାଷା ଅଧିସୂଚନା ମାନ୍ୟତାରେ ଓଡ଼ିଆ ଭାଷାର ଶାସ୍ତ୍ରୀୟତା– ପଣ୍ଡିତ ଅନ୍ତର୍ଯ୍ୟାମୀ ମିଶ୍ର

୪. ଓଡ଼ିଆ ଭାଷାର ପ୍ରାଚୀନତା– ପ୍ରଫେସର ଉଦୟନାଥ ସାହୁ

୫. ଓଡ଼ିଆ ଭାଷା ପ୍ରତିଷ୍ଠାନ, ଭୁବନେଶ୍ୱର



'ଇତ୍ୟୋମ୍'
ଆଜୀବନ ସଭ୍ୟ, ଉତ୍କଳ ସମ୍ମିଳନୀ
ସଭାପତି, ଆର୍ଯ୍ୟ ସମାଜ, ବ୍ରହ୍ମପୁର
ଅଳକାପୁରୀ,୨ୟ ଗଳି,ବ୍ରହ୍ମପୁର–୧୦




# ଶାସ୍ତ୍ରୀୟ ଭାଷା ଅଧିସୂଚନା ମାନ୍ୟତାରେ ଓଡ଼ିଆ ଭାଷାର ଶାସ୍ତ୍ରୀୟତା

ପଣ୍ଡିତ ଅନ୍ତର୍ଯ୍ୟାମୀ ମିଶ୍ର

ଭାରତ ସରକାର ଆଞ୍ଚଳିକ ଭାଷା ସମୂହର ବିକାଶ କାମନାରେ ୨୦୦୪ ମସିହାରେ ଶାସ୍ତ୍ରୀୟ ଭାଷା ଉଦ୍‌ଘୋଷଣା ନିମିତ୍ତ ଅଧିସୂଚନା ପ୍ରକାଶ କରିଛନ୍ତି । ଏହି ଅଧିସୂଚନାରେ ଶାସ୍ତ୍ରୀୟ ଭାଷାର ଚାରିଗୋଟି ଲକ୍ଷଣ ନିର୍ଣ୍ଣୟ କରାଯାଇଛି । ଯେଉଁ ଭାଷା ଏହି ଚାରିଗୋଟି ଲକ୍ଷଣ ବିଶିଷ୍ଟ, ସେହି ଭାଷାକୁ ଭାରତ ସରକାର ଶାସ୍ତ୍ରୀୟ ଭାଷାର ମାନ୍ୟତା ପ୍ରଦାନ କରିବେ ତଥା ସେହି ଭାଷାର ବିକାଶ, ପ୍ରଚାର ପ୍ରସାର, ଶିକ୍ଷା, ଗବେଷଣା ଓ ଆନ୍ତର୍ଜାତୀୟ ସ୍ୱୀକୃତି ନିମିତ୍ତ ସ୍ୱତନ୍ତ୍ର ପଦକ୍ଷେପ ନେବେ । ଏଥିନିମିତ୍ତ ପ୍ରାଥମିକ ଭିତ୍ତିଭୂମି ପ୍ରସ୍ତୁତି ପାଇଁ ଏକ ଶହ କୋଟି ଟଙ୍କା ଏବଂ ପ୍ରତିବର୍ଷ ପାଞ୍ଚକୋଟି ଟଙ୍କା ଅନୁଦାନ ପ୍ରଦାନ କରାଯିବ, ଶିକ୍ଷା ଓ ଗବେଷଣା ନିମିତ୍ତ ବିଶ୍ୱବିଦ୍ୟାଳୟ ମଞ୍ଜୁରୀ କମିଶନ ଅନୁମୋଦିତ ପ୍ରଫେସରିଆଲ୍ ଚେୟାର ବିଶ୍ୱର ବିଭିନ୍ନ ବିଶ୍ୱବିଦ୍ୟାଳୟମାନଙ୍କରେ ସ୍ଥାପନ କରାଯିବ, ଉଚ୍ଚାଙ୍ଗ ଗବେଷଣା ନିମିତ୍ତ ଆନ୍ତର୍ଜାତୀୟ ପୁରସ୍କାର ପ୍ରଦାନ କରାଯିବ, ଭାଷାର ପ୍ରସାର ନିମିତ୍ତ ଆନ୍ତର୍ଜାତୀୟ କ୍ଷେତ୍ରରେ ଅଧ୍ୟୟନ କେନ୍ଦ୍ର ଓ ଦ୍ୱିଭାଷିକ ସମ୍ପର୍କ ସ୍ଥାପନ କେନ୍ଦ୍ର ସ୍ଥାପନ ହେବ ତଥା ସେହି ଭାଷାର ଉନ୍ନତିକଳ୍ପେ ବିବିଧ ଯୋଜନା କାର୍ଯ୍ୟକାରୀ କରାଯିବ । ଶାସ୍ତ୍ରୀୟ ଭାଷା ଉଦ୍‌ଘୋଷଣା ନିମିତ୍ତ ଭାରତ ସରକାର ଯେଉଁ ଚାରିଗୋଟି ଲକ୍ଷଣ ନିର୍ଣ୍ଣୟ କରିଛନ୍ତି ସେଗୁଡିକ ହେଉଛି:

୧) ଶାସ୍ତ୍ରୀୟ ମାନ୍ୟତା ଦାବି କରୁଥିବା ଭାଷାଭାଷୀ ଜାତିର ୧୫୦୦ରୁ ୨୦୦୦ ବର୍ଷର ଲିପିବଦ୍ଧ ଇତିହାସ ଓ ସଂସ୍କୃତି ରହିଥିବ ।

୨) ଶାସ୍ତ୍ରୀୟ ମାନ୍ୟତା ଦାବି କରୁଥିବା ଭାଷାରେ ମହତ୍ତ୍ୱପୂର୍ଣ୍ଣ ପ୍ରାଚୀନ ସାହିତ୍ୟ ପରମ୍ପରା ଥିବ ।

୩) ସେହି ଭାଷାର ସାହିତ୍ୟସୃଷ୍ଟି ପରମ୍ପରା ଅନ୍ୟକୌଣସି ଭାଷାଦ୍ୱାରା ପ୍ରଭାବିତ ନହୋଇ ମୌଳିକ ସୃଷ୍ଟିସମ୍ଭାରରେ ସମୃଦ୍ଧ ହୋଇଥିବ ।

୪) ଶାସ୍ତ୍ରୀୟ ମାନ୍ୟତା ଦାବି କରୁଥିବା ଭାଷାର ପ୍ରାଚୀନ ଓ ଆଧୁନିକ ରୂପ ମଧ୍ୟରେ ଅବିଚ୍ଛିନ୍ନ ସମ୍ପର୍କ ନଥାଇପାରେ । ଓଡ଼ିଆ ଭାଷାର ପ୍ରାଚୀନତା, ନିରବଚ୍ଛିନ୍ନ ପ୍ରବାହ ପରମ୍ପରା, ସଂରଚନାତ୍ମକ ଧାରା, ଭାଷାତତ୍ତ୍ୱ, ଉଚ୍ଚାଙ୍ଗ ବ୍ୟାକରଣ, ମୌଳିକ ସାରସ୍ୱତ ପରମ୍ପରା ଓ ଇତିହାସ ଅନୁଧ୍ୟାନ, ଅଧ୍ୟୟନ ତଥା ଅନୁଶୀଳନ କଲେ ପ୍ରମାଣିତ ହୁଏ, ଶାସ୍ତ୍ରୀୟ ଭାଷା ଅଧିସୂଚନା ମାନ୍ୟତାରେ ଏହା ଗୋଟିଏ ଶାସ୍ତ୍ରୀୟ ଭାଷା ।

ଶାସ୍ତ୍ରୀୟ ମାନ୍ୟତା ପ୍ରଦାନ କରିବା ନିମିତ୍ତ ଭାରତ ସରକାର ଯେଉଁ ଚାରିଗୋଟି ମାନ ନିର୍ଦ୍ଧାରଣ କରିଛନ୍ତି, ତହିଁର ପ୍ରଥମ ମାନ ହେଉଛି, ‘‘ଶାସ୍ତ୍ରୀୟ ମାନ୍ୟତା ଦାବି କରୁଥିବା ଭାଷାଭାଷୀ ଜାତିର ୧୫୦୦ରୁ ୨୦୦୦ବର୍ଷର ଲିପିବଦ୍ଧ ଇତିହାସ ଓ ସଂସ୍କୃତି ରହିଥିବ ।’ ଓଡ଼ିଆ ଭାଷା ବ୍ୟବହାର କରୁଥିବା ଓଡ଼ିଆ ଜାତିର ଏହାଠାରୁ ପ୍ରାଚୀନ ଇତିହାସ ଓ ସଂସ୍କୃତି ରହିଛି । ଶ୍ରୀଜଗନ୍ନାଥଙ୍କ କରୁଣାରୁ ଓଡ଼ିଆମାନେ ପ୍ରାଚୀନ କାଳରୁ ଉତ୍କୃଷ୍ଟ କଳାକୌଶଳ ଜ୍ଞାତ, ସାମୁଦ୍ରିକ ବାଣିଜ୍ୟ ସମୃଦ୍ଧ ତଥା ସମର ବିଶାରଦ ଜାତି ରୂପେ ପରିଚିତ ଥିଲେ । ପ୍ରାଚୀନ ସାହିତ୍ୟ, ଶିଳାଲେଖ,

ତାମ୍ରପତ୍ର, ପ୍ରତ୍ନ ସଂପଦ, ପ୍ରତ୍ନ ଅବଶେଷ, ମୁଦ୍ରା, ପରିବ୍ରାଜକଙ୍କ ବିବରଣୀ ଓ ବିଦେଶାଗତ ଦୂତଙ୍କ ବର୍ଣ୍ଣନା ପ୍ରଭୃତିରୁ ଓଡ଼ିଆ ଜାତିର ଉତ୍ଥାନ, ବିସ୍ତାର, ଗୌରବୋଜ୍ଜ୍ୱଳ ସାମାଜିକ ଜୀବନ, ସମୃଦ୍ଧ ବାଣିଜ୍ୟିକ ପରମ୍ପରା, ସମନ୍ୱୟାତ୍ମକ ସାଂସ୍କୃତିକ ଜୀବନ, ଅଭୁତପୂର୍ବ ବୀରତ୍ୱ ଓ ଉନ୍ନତ ରାଜନୈତିକ ଜୀବନର ବ୍ୟାପକ ତଥ୍ୟ ଉପଲବ୍ଧ ହୋଇଥାଏ । ଓଡ଼ିଶାର ପ୍ରାଚୀନ କୀର୍ତ୍ତୀରାଜିରେ ଓଡ଼ିଆ ଜାତିର ହଜାର ହଜାର ବର୍ଷର ଐତିହ୍ୟ ତଥା ସାଂସ୍କୃତିକ ଗୌରବ । ମହାଭାରତ ଓ ପୁରାଣ ସାହିତ୍ୟରେ ଓଡ଼ିଆଙ୍କ ସମ୍ପର୍କରେ ବହୁ ମହତ୍ତ୍ୱପୂର୍ଣ୍ଣ ସୂଚନା ବିଦ୍ୟମାନ । ମହାଭାରତ ଯୁଦ୍ଧରେ କଳିଙ୍ଗ ସେନା କୌରବଙ୍କ ପକ୍ଷରେ ଓ ଉଡ୍ରସେନା ପାଣ୍ଡବଙ୍କ ପକ୍ଷରେ ରହି ଯୁଦ୍ଧ କରିଥିଲେ ବୋଲି ବର୍ଣ୍ଣନା ରହିଛି । ଦ୍ରୌପଦୀଙ୍କ ସ୍ୱୟଂମ୍ବର ସଭାରେ କଳିଙ୍ଗରାଜା ଶ୍ରୁତାୟୁଧ ଦୁର୍ଯ୍ୟୋଧନଙ୍କ ଗହଣରେ ଉପସ୍ଥିତ ଥିଲେ ବୋଲି ଉଲ୍ଲେଖ ରହିଛି । ଏଥିରୁ ପ୍ରମାଣିତ ହୁଏ, ମହାଭାରତ ଯୁଗର ବହୁପୂର୍ବରୁ ଓଡ଼ିଆମାନଙ୍କର ଅଭ୍ୟୁଦୟ ଘଟିଲାଣି । ମହାଭାରତ ଯୁଦ୍ଧ ଖ୍ରୀଷ୍ଟପୂର୍ବ ୩୧୩୮ରେ ଏବଂ ଶ୍ରୀକୃଷ୍ଣଙ୍କ ସ୍ୱର୍ଗାରୋହଣ ଖ୍ରୀଷ୍ଟପୂର୍ବ ୩୧୦୨ରେ ହୋଇଥିଲା ବୋଲି ଗବେଷକଙ୍କର ମତ । (୧) ଭାରତୀୟ ଐତିହ୍ୟକୁ ଯଥାସମ୍ଭବ ନ୍ୟୁନ ଓ ଅର୍ବାଚୀନ ବୋଲି ଉପନିବେଶବାଦୀମାନେ ଦର୍ଶାଇଛନ୍ତି । ଭାରତର ପ୍ରାଚୀନ ଐତିହ୍ୟ ଓ ସଂସ୍କୃତି ପ୍ରତି ସେମାନେ କୁଠାରାଘାତ କରି ଖ୍ରୀଷ୍ଟପୂର୍ବ ଷଷ୍ଠଶତାବ୍ଦୀରୁ ଭାରତର ଇତିହାସକାଳ ଆରମ୍ଭ ବୋଲି ଦର୍ଶାଇଛନ୍ତି । ଏହାଦ୍ୱାରା ପ୍ରାଚୀନ ଓଡ଼ିଆ ଜାତିର ଐତିହ୍ୟ ଓ ସଂସ୍କୃତି ବିସ୍ମୃତ । ଗବେଷକମାନଙ୍କ ମତରେ ଉତ୍ତର ଓଡ଼ିଶାର ମାଳଭୂମି, ବ୍ରାହ୍ମଣୀ, ବୈତରଣୀ ଓ ମହାନଦୀ ଅବବାହିକାରେ ଆଦିମାନବର ସୃଷ୍ଟି ଘଟିଥିଲା ଏବଂ ପରବର୍ତ୍ତୀ କାଳରେ ସେମାନଙ୍କ ସଭ୍ୟତାର କ୍ରମବିକାଶ ହୋଇଥିଲା । (୨) ଆର୍ଯ୍ୟପ୍ରଚେତାବୃନ୍ଦ ଓଡ଼ିଶାର ଏହି ପ୍ରାଚୀନ ସଭ୍ୟତାକୁ ବ୍ରାତ୍ୟସଭ୍ୟତା ନାମରେ ଅଭିହିତ କରିଥିଲେ । Encyclopedia Indiaରେ ବର୍ଣ୍ଣନା ରହିଛି ଯେ ଉଡୁମ୍ବର ନାମକ ଏକ ପ୍ରାଚୀନ ଦେଶ ଥିଲା । ଏହା ଓଡ୍ରଦେଶ ବ୍ୟତୀତ ଅନ୍ୟକିଛି ନୁହେଁ ଏବଂ ଏହି ଓଡ୍ରଦେଶର ସଭ୍ୟତାହିଁ ବ୍ରାତ୍ୟ ସଭ୍ୟତା । ବୈଦିକ ଆର୍ଯ୍ୟମାନେ ଋକ୍, ସାମ ଓ ଯଜୁଃ ଏହି ତିନିବେଦ ସଙ୍କଳନ କରିଥିଲେ । ଅଥର୍ବ ବେଦ ବ୍ରାତ୍ୟମାନଙ୍କ ଦ୍ୱାରା ସଙ୍କଳିତ । ଅଥର୍ବ ବେଦରେ ବିରଜାଙ୍କ ନାମ ପରିଦୃଷ୍ଟ ହେଉଥିବାରୁ ପ୍ରମାଣିତ ହୁଏ, ବିରଜା ହେଉଛନ୍ତି ବ୍ରାତ୍ୟପୂଜିତା ଦେବୀ । ଅଥର୍ବ ବେଦର ଚୁଳିକୋପନିଷଦ୍, ଅନୁଚୁଳିକୋପନିଷଦ୍, ବ୍ରହ୍ମୋପନିଷଦ୍, ଅଣୁଉପନିଷଦ୍ ଓ ସୂକ୍ଷ୍ମ ଉପନିଷଦ୍ ପ୍ରଭୃତି ଓଡ଼ିଶାରେ ରଚିତ । (୩) ଅଥର୍ବ ବେଦର ବ୍ରାତ୍ୟସୂକ୍ତରୁ ଜଣାଯାଏ, ବ୍ରାତ୍ୟମାନେ ପୂର୍ବଭାରତର ଧର୍ମୀୟ ଆଚାର ପରାୟଣ ଗୋଷ୍ଠୀ ଥିଲେ ଏବଂ ବ୍ରାତ୍ୟଷ୍ଟୋମ ଯଜ୍ଞାନୁଷ୍ଠାନ ଦ୍ୱାରା ବ୍ରାହ୍ମଣ ଶ୍ରେଣୀଭୁକ୍ତ କରାଯାଇଥିଲା । ବୈଦିକ ସଭ୍ୟତାରେ ମୂର୍ତ୍ତିପୂଜାର ପରମ୍ପରା ନଥିଲେ ହେଁ ବ୍ରାତ୍ୟସଭ୍ୟତାର ଅଧିବାସୀବୃନ୍ଦ ମାତୃବ୍ରହ୍ମବୋଧର ମାଧୁରିମାରେ ଦ୍ୱିଭୁଜା ଦେବୀ ମୂର୍ତ୍ତି ପୂଜା କରୁଥିଲେ । ସେହି ମୂର୍ତ୍ତି ହେଉଛନ୍ତି ଦେବୀ ବିରଜା । ମହାଭାରତ ଯୁଗରେ ଏହି ଦେବୀ ବୈତରଣୀ ତଟରେ ପୂଜା ପାଉଥିଲେ ତଥା ପାଣ୍ଡବମାନେ ବିରଜା ତୀର୍ଥକୁ ଆସିଥିଲେ ବୋଲି ସଂସ୍କୃତ ମହାଭାରତରେ ଉଲ୍ଲେଖ ରହିଛି ।

ତତୋ ବୈତରଣୀଂଗଚ୍ଛେତ୍ ସର୍ବପାପ ପ୍ରମୋଚନୀମ୍,
ବିରଜାଂତୀର୍ଥ ମାସାଦ୍ୟ ବିରାଜତି ଯଥା ଶଶୀ ।
ପ୍ରଚରେ କୁଳଂ ପୁଣ୍ୟ ଚ ସର୍ବପାପଂ ବ୍ୟାପୋହତି,
ଗୋସହସ୍ର ଫଳଂ ଲବ୍ଧା ପୁନାତି ସ୍ୱକୁଳଂ ନରଂ । (୪)

ଯାଜପୁର ସଦୃଶ ପୂର୍ବ ମହୋଦଧିତଟସ୍ଥ ନୀଳାଚଳରେ ଓଡ୍ରମାନେ ପ୍ରଥମେ ସଭ୍ୟତାର ବିସ୍ତାର କରିଥିଲେ । ଓଡ୍ରମାନେ ସମୁଦ୍ର ତଟରେ ଏକ ବିଶାଳାକାୟ ଚତୁଃଶାଖାଯୁକ୍ତ ମହାଦାରୁ ଉପାସନା କରିଥିଲେ । ବୈଦ୍ଧିକ ପ୍ରଚେତାବୃନ୍ଦ ଏତାଦୃଶ ଦାରୁ ଉପାସନାକୁ ଅଲକ୍ଷ୍ମୀ ସୂଚକ ବିବେଚନା କରିଥିଲେ ବୋଲି ବେଦୋକ୍ତ ସୂକ୍ତରୁ ଅନୁଭୂତ ହୋଇଥାଏ ।

ଅଦୌଯଦ୍ଦାରୁ ପ୍ଲବତେ ସିନ୍ଧୋଃ ପାରେ ଅପୁରୁଷମ୍,
ତଦାରଭସ୍ୱ ଦୁର୍ହଣୋ ତେନ ଗଚ୍ଛ ପରସ୍ତରମ୍ ।(୫)

ଓଡ୍ରମାନେ ପିରାମିଡ୍ ସଦୃଶ ଗୋଟିଏ ବୃହଦାକାର ସ୍ତୁପ ନିର୍ମାଣ ପୂର୍ବକ ତହିଁ ଉପରେ ଏହି ମହାଦାରୁଙ୍କୁ ଉପାସନା କରୁଥିଲେ । ଏହି ସ୍ତୁପ ଦୀର୍ଘକାଳ 'ପୁରୁଷମଣ୍ଡପ' ନାମରେ ପରିଚିତ ଥିଲା । ସେହି ସ୍ତୁପ ବା ବେଦୀଉପରେ ଶ୍ରୀମନ୍ଦିର ନିର୍ମିତ । ଏଥିରୁ ପ୍ରମାଣିତ ହୁଏ, ଓଡ୍ରମାନେ ବୈଦିକ ଯୁଗରୁ ସ୍ତୁପ ବା ବେଦୀନିର୍ମାଣ କୌଶଳ ଜ୍ଞାତ ଥିଲେ । ଓଡ୍ରମାନଙ୍କର ଏହି ନିର୍ମାଣଶୈଳୀ ବିକଶିତ ଧାରାରେ 'କଳିଙ୍ଗ ସ୍ଥାପତ୍ୟ ଶୈଳୀ' ରୂପେ ପ୍ରତିଭାତ ହୋଇଥିଲା । (୬) ଓଡ୍ରମାନେ କେବଳ ପୁରୀ ଓ ଯାଜପୁର ପ୍ରଭୃତି ସମତଳ ଅଞ୍ଚଳରେ ବାସ କରୁନଥିଲେ, ପାର୍ବତ୍ୟ ଉପତ୍ୟକା ନଦୀ ଅବବାହିକାରେ ମଧ୍ୟ ବସତି ସ୍ଥାପନ କରିଥିଲେ । ପାର୍ବତ୍ୟାଞ୍ଚଳର ନଦୀ ଅବବାହିକାରେ ଥିବା ବିକ୍ରମଖୋଲ, ଗୁଡାହାଣ୍ଡି, ମାଣିକଗୋଡା, ଯୋଗୀମଠ ଓ ଉଲଫଗଡ ପ୍ରଭୃତି ସ୍ଥାନରୁ ଯେଉଁ ଲିପି ଓ ଗୁମ୍ଫାଚିତ୍ର ଆବିଷ୍କୃତ ହୋଇଛି, ସେଗୁଡ଼ିକର ଅଧ୍ୟୟନ ହୋଇପାରିଲେ ଓଡ୍ରଜାତିର ପ୍ରାଚୀନ ଐତିହ୍ୟ ଓ ସଂସ୍କୃତି ସମ୍ପର୍କରେ ବହୁ ଅଜ୍ଞାତ ତଥ୍ୟ ଲୋକଲୋଚନକୁ ଆସିପାରିବ । ତଥାପି ନୀଳାଚଳର ଦାରୁଉପାସନା ଓ ବୈତରଣୀତଟସ୍ଥ ଉଡ୍ରେଶ୍ୱରୀ ବିରଜାଙ୍କ ଉପାସନାରୁ ପ୍ରମାଣିତ ହୁଏ, ମହାଭାରତ ଯୁଗର ବହୁପୂର୍ବରୁ ଓଡ଼ିଆ ଜାତି ଏକ ସୁସଭ୍ୟ, ସମୃଦ୍ଧ ଓ ସଂସ୍କୃତି ସମ୍ପନ୍ନ ଜାତି ରୂପେ ସ୍ୱତନ୍ତ୍ର ପରିଚୟ ସୃଷ୍ଟି କରିଥିଲା ।

ପ୍ରାଚୀନ କାଳରୁ ନୌବାଣିଜ୍ୟ କ୍ଷେତ୍ରରେ ଓଡ଼ିଆମାନେ ଥିଲେ ଅଗ୍ରଣୀ । ଓଡ଼ିଶାର ସୁଦୀର୍ଘ ସମୁଦ୍ର ଉପକୂଳରେ ଅନେକ ପ୍ରାକୃତିକ ବନ୍ଦର ରହିଥିଲା । ଏହି ବନ୍ଦର ସମୂହ ସୁନାବ୍ୟା ନଦୀଦ୍ୱାରା ଆଭ୍ୟନ୍ତରୀଣ ଅଞ୍ଚଳ ସହିତ ସମ୍ପୃକ୍ତ ଥିଲା । ଫଳରେ ନଦୀପଥରେ ଆଭ୍ୟନ୍ତରୀଣ ଅଞ୍ଚଳରୁ ବାଣିଜ୍ୟସାମଗ୍ରୀ ଅନାୟାସରେ ବନ୍ଦରମାନଙ୍କରେ ପହଞ୍ଚି ପାରୁଥିଲା । ସେହିସବୁ ବନ୍ଦରମାନଙ୍କ ମଧ୍ୟରେ ତାମ୍ରଲିପ୍ତ, ଅଜିତା, ପିପିଲି, ଦଶାର୍ଣ୍ଣ, ଚେଳିତୋଳ, ମାଣିକ ପାଟଣା, ଦନ୍ତପୁର, ପାଲୁର କଳିଙ୍ଗ ପଉନ, ଗଞ୍ଜାମ ପ୍ରଭୃତି ବିଶ୍ୱପ୍ରସିଦ୍ଧି ଲାଭ କରିଥିଲା । ପୁରୀ, ବାଲେଶ୍ୱର, ମାଣିକ ପାଟଣା, ଖାଲକଟୀ ପାଟଣା, ଧର୍ମଶାଳା ଓ ବାମନଘାଟୀ ପ୍ରଭୃତି ସ୍ଥାନରୁ ପ୍ରାଚୀନ ବୈଦେଶିକ ମୁଦ୍ରା ମିଳିଥିବା ପ୍ରମାଣିତ ହୁଏ, ଓଡ୍ରମାନେ ଖ୍ରୀଷ୍ଟପୂର୍ବକାଳରୁ ଦରିଆପାରି ଦେଶମାନଙ୍କ ସହିତ ବାଣିଜ୍ୟିକ ସମ୍ପର୍କ ସ୍ଥାପନ କରିଥିଲେ। (୭) ଅନେକ ବିଦେଶୀ ଭୌଗୋଳିକ, ଐତିହାସିକ ତଥା ପରିବ୍ରାଜକ ଓଡ଼ିଆମାନଙ୍କ ସାମୁଦ୍ରିକ ବାଣିଜ୍ୟର ଭୂୟସୀ ପ୍ରଶଂସା କରିଯାଇଛନ୍ତି । ଓଡ଼ିଆମାନେ ନୌବାଣିଜ୍ୟ ମାଧ୍ୟମରେ ବାଲି, ଜାଭା, ସୁମାତ୍ରା, ବୋର୍ଣ୍ଣିଓ, ଥାଇଲାଣ୍ଡ, ଇଣ୍ଡୋନେସିଆ, ରୋମ୍ ଓ ମିଶର ପ୍ରଭୃତି ଦେଶମାନଙ୍କ ସହିତ ସମ୍ପର୍କ ସ୍ଥାପନ କରିଥିଲେ । ଇତିହାସ ବର୍ଣ୍ଣନାନୁସାରେ କଳିଙ୍ଗରୁ ଅନେକ ବ୍ୟକ୍ତି ଜଳପଥରେ ଜାଭାଦ୍ୱୀପକୁ ଯାଇ ସେଠାରେ ଉପନିବେଶ ସ୍ଥାପନ କରିଥିଲେ । ସେହି ବର୍ଷଠାରୁ ଜାଭାରେ ଗୋଟିଏ ଅଙ୍କ ପ୍ରଚଳନ ହୋଇଆସୁଅଛି । ଏବେ ମଧ୍ୟ କଳିଙ୍ଗ ବଂଶଧରଗଣ ସେଠାରେ କ୍ଲିଙ୍ଗ୍ ନାମରେ ପରିଚିତ । (୮) ଓଡ଼ିଆମାନେ ବ୍ରହ୍ମଦେଶରେ ଉପନିବେଶ ସ୍ଥାପନ କରି ତତ୍କାଳୀନ ପ୍ରୋମ୍‌ନଗରୀର ନାମ ଶ୍ରୀକ୍ଷେତ୍ର ରଖିଥିଲେ । ଥାଇଲାଣ୍ଡ, କାମ୍ବୋଡିଆ, ବ୍ରହ୍ମଦେଶ, ସିଂହଳ ପ୍ରଭୃତି ଦେଶରେ ଓଡ଼ିଆମାନେ ଜଗନ୍ନାଥ ଓ ବୌଦ୍ଧସଂସ୍କୃତି ପ୍ରଚାର କରିଥିଲେ । ଓଡ଼ିଆଙ୍କ ନୌବାଣିଜ୍ୟ ଯୋଗୁଁ ବୌଦ୍ଧଧର୍ମ ଆବିଶ୍ୱ ପ୍ରସାରିତ ହୋଇଥିଲା । ଟଲେମୀ ସ୍ୱରଚିତ ଭୌଗଳିକ ବିବରଣୀରେ ଓଡ଼ିଶାର ବହୁ ବନ୍ଦର ଓ ନଗରର ନାମ ଉଲ୍ଲେଖ କରିଛନ୍ତି । ବୌଦ୍ଧଶାସ୍ତ୍ରରୁ ଜଣାଯାଏ କଳିଙ୍ଗର ରାଜା ଗୁହଶିବଙ୍କର କନ୍ୟା ହେମମାଳା ଓ ଜାମାତା ଦନ୍ତକୁମାର ସମୁଦ୍ର ପଥରେ ବୁଦ୍ଧଦେବଙ୍କ ପବିତ୍ର ଦନ୍ତ ସିଂହଳ ନେଇଥିଲେ । ଐତିହାସିକଙ୍କ ମତରେ ସିଂହଳ ଓ ବ୍ରହ୍ମଦେଶର ରାଜବଂଶ ଓଡ଼ିଆ କ୍ଷତ୍ରିୟ କୁଳୋଦ୍ଭବ । ଚୀନ୍ ପରିବ୍ରାଜକ ଇଟିସିଂ ପ୍ରୋମ୍‌ନଗରୀ ବା ଶ୍ରୀକ୍ଷେତ୍ର ସମ୍ପର୍କିତ ବର୍ଣ୍ଣନା କରିଛନ୍ତି । ଚୀନ୍ ପରିବ୍ରାଜକ ହୁଏନ୍‌ସାଂ ମଧ୍ୟ ଓଡ଼ିଶାର ବାଣିଜ୍ୟପୋତରେ ସ୍ୱଦେଶ ପ୍ରତ୍ୟାବର୍ତ୍ତନ କରିଥିଲେ । କମ୍ବୋଜ ସହିତ ଓଡ଼ିଶାର ବାଣିଜ୍ୟିକ ଓ

ସାଂସ୍କୃତିକ ସମ୍ପର୍କ ପ୍ରାଚୀନ କାଳରୁ ରହିଥିଲା । ସେଠାରେ ଓଡ଼ିଆମାନେ ସ୍ଥାୟୀନିବାସ କରି ତ୍ରିଭୁବନେଶ୍ୱର ମନ୍ଦିର ନିର୍ମାଣ କରିଥିଲେ । ଇଣ୍ଡୋନେସିଆର ପ୍ରସିଦ୍ଧ ବୋରବୁଦୁର ବୌଦ୍ଧମନ୍ଦିର ଓଡ଼ିଶୀ ସ୍ଥାପତ୍ୟ ଶୈଳୀରେ ନିର୍ମିତ । ଓଡ଼ିଶାର ଶୈଳେନ୍ଦ୍ର ରାଜନ୍ୟବୃନ୍ଦ ଜାଭା ଓ ସୁମାତ୍ରା ଅଧିକାର କରି ଦୀର୍ଘକାଳ ଶ୍ରୀବିଜୟ ସାମ୍ରାଜ୍ୟ ଗଠନ କରିଥିଲେ । ଭୌମକର ରାଜା ଶୁଭାକର ଦେବ ବୌଦ୍ଧଭିକ୍ଷୁ ପ୍ରଜ୍ଞାଙ୍କ ହସ୍ତରେ ଚୀନ୍ ଦେଶର ରାଜା ତେସିଙ୍ଗ୍‌ଙ୍କ ନିକଟକୁ ଗୋଟିଏ ବୌଦ୍ଧ ଗ୍ରନ୍ଥ ପଠାଇଥିଲେ, ଯାହାକି ଅଦ୍ୟାବଧି ଚୀନ୍‌ରେ ସଂରକ୍ଷିତ । ଓଡ଼ିଆ ସାଧବପୁଅମାନେ ଖ୍ରୀଷ୍ଟପୂର୍ବ କାଳରୁ ସାମୁଦ୍ରିକ ବାଣିଜ୍ୟ ମାଧ୍ୟମରେ ଦରିଆପାରି ଦେଶମାନଙ୍କରୁ ଅସରନ୍ତି ଧନଦୌଲତ ବୋହିଆଣି ଓଡ଼ିଶାକୁ ସମୃଦ୍ଧ କରିଥିଲେ । ପ୍ରାଚୀନ ସାହିତ୍ୟରେ ଓଡ଼ିଶାର ରାଜାକୁ 'ମହୋଦଧି ପତି' କୁହାଯାଇଛି । ପ୍ରାଚୀନ ଉତ୍କଳୀୟ ନୌବାଣିଜ୍ୟର ସ୍ମୃତିସ୍ୱରୂପ ଅଦ୍ୟାବଧି ବାଲିଯାତ୍ରା ତଥା ଗ୍ରାମେ ଗ୍ରାମେ ବୋଇତବନ୍ଦାଣ ଅନୁଷ୍ଠିତ ହେଉଅଛି ।

ଜୈନତୀର୍ଥଙ୍କର ମହାବୀର ଧର୍ମପ୍ରଚାର ନିମିତ୍ତ ଓଡ଼ିଶାରେ ପଦାର୍ପଣ କରିଥିଲେ ତଥା ଚାରିଗୋଟି ଚତୁର୍ମାସ୍ୟାକାଳ କଟାଇଥିଲେ । (୯) ଜୈନଶାସ୍ତ୍ରରୁ ଜଣାଯାଏ, ଖ୍ରୀଷ୍ଟପୂର୍ବ ସପ୍ତମ ଓ ଅଷ୍ଟମ ଶତାବ୍ଦୀରେ ଓଡ୍ରମାନେ ଧାର୍ମିକ, ସଭ୍ୟ, ସମୃଦ୍ଧ ଓ ଶାନ୍ତିପ୍ରିୟ ଜାତି ଥିଲେ । ଉଲ୍ଲେଖଯୋଗ୍ୟ ଯେ ସେହି ସମୟରେ ଓଡ଼ିଆମାନେ ଗଠନ କରିଥିବା କଳିଙ୍ଗରାଷ୍ଟ୍ର ଭାରତବର୍ଷରେ ଗଠିତ ସାତଗୋଟି ରାଷ୍ଟ୍ର ମଧ୍ୟରେ ପ୍ରଥମ ଥିଲା । (୧୦) ବୁଦ୍ଧଦେବଙ୍କ ପ୍ରଥମଶିଷ୍ୟ ଥିଲେ ଓଡ଼ିଆ ବଣିକ ତପସୁ ଓ ଭଲ୍ଲିକ ସେମାନେ ବୁଦ୍ଧଦେବଙ୍କ ନଖ ଓ କେଶ ଆଣି ଯାଜପୁରଜିଲ୍ଲା ଜାରକା ନିକଟସ୍ଥ ତାରାପୁର ପାହାଡରେ କେଶସ୍ତୂପ ନିର୍ମାଣ ପୂର୍ବକ ଶିଳାଲେଖ ଉତ୍କୀର୍ଣ୍ଣ କରାଇଥିଲେ । (୧୧) ଖ୍ରୀଷ୍ଟପୂର୍ବ ଷଷ୍ଠ ଶତାବ୍ଦୀରେ ନିର୍ମିତ ହୋଇଥିବା ଏହି ସ୍ତୂପ ହେଉଛି ବିଶ୍ୱର ପ୍ରଥମ ବୌଦ୍ଧସ୍ତୂପ । ଏହି ସ୍ତୂପର ଉତ୍ତରରେ ବ୍ରାହ୍ମଣୀତଟସ୍ଥ ଦେଉଳୀ ପାହାଡରେ ଭଲ୍ଲିକ ସନ୍ୟାସ ଜୀବନ ଅତିବାହିତ କରିଥିଲେ । ବୌଦ୍ଧଗ୍ରନ୍ଥରୁ ଜଣାଯାଏ କ୍ଷେମ ନାମକ ଜନୈକ ବୌଦ୍ଧଭିକ୍ଷୁ କଳିଙ୍ଗରାଜା ବ୍ରହ୍ମଦତ୍ତଙ୍କୁ ବୁଦ୍ଧଙ୍କ ମହାପରିନିର୍ବାଣ ପରେ ବୁଦ୍ଧଦେବଙ୍କ ଗୋଟିଏ ଦାନ୍ତ ପ୍ରଦାନ କରିଥିଲେ । ବ୍ରହ୍ମଦତ୍ତ ଗୋଟିଏ ସ୍ତୂପ ନିର୍ମାଣ କରି ତନ୍ମଧ୍ୟରେ ଏହି ଦନ୍ତକୁ ରଖିଥିଲେ । ସେହି ପବିତ୍ରଦନ୍ତ ଲଳିତଗିରିରୁ ମିଳିଛି ତଥା ଭାରତୀୟ ପ୍ରତ୍ନତତ୍ତ୍ୱ ସଂସ୍ଥା ତତ୍ତ୍ୱାବଧାନରେ ଭୁବନେଶ୍ୱରରେ ରହିଛି । ଏଥିରୁ ପ୍ରମାଣିତ ହୁଏ, ଖ୍ରୀଷ୍ଟପୂର୍ବ ଷଷ୍ଠ ଶତାବ୍ଦୀରେ ଓଡ଼ିଶାରେ ବିକଶିତ ସଭ୍ୟତା ଓ ଉନ୍ନତ ସଂସ୍କୃତି ବିଦ୍ୟମାନ ଥିଲା । ଏହି ସମୟରେ ଓଡ଼ିଆମାନେ ସାମୁଦ୍ରିକ ବାଣିଜ୍ୟ ଓ ସ୍ଥଳପଥ ବାଣିଜ୍ୟ ଉଭୟରେ ପାରଙ୍ଗମ ଥିଲେ । ଗ୍ରୀକ୍‌ଦୂତ ମେଘାସ୍ଥିନିସ୍‌ଙ୍କ ବିବରଣୀରୁ ଜଣାଯାଏ ଯେ, ମୌର୍ଯ୍ୟଯୁଗରେ ଓଡ଼ିଆମାନେ ସମରନିପୁଣ ଜାତି ଭାବରେ ଖ୍ୟାତି ଅର୍ଜନ କରିଥିଲେ । ଚନ୍ଦ୍ରଗୁପ୍ତ ମୌର୍ଯ୍ୟ ସମଗ୍ର ଭାରତ ଅଧିକାର କରିଥିଲେ ହେଁ କଳିଙ୍ଗ ସ୍ୱାଧୀନ ଥିଲା । (୧୨) ତଦୀୟ ପୌତ୍ର ଅଶୋକ କଳିଙ୍ଗ ଆକ୍ରମଣ କରିଥିଲେ ହେଁ ରଣାଙ୍ଗନରେ ଓଡ଼ିଆବୀରଙ୍କ ଅଭୁତପୂର୍ବ ରଣକୌଶଳ, ଆତ୍ମୋତ୍ସର୍ଗ ଓ ସ୍ୱଦେଶ ପ୍ରୀତି ଦେଖି ଚଣ୍ଡାଶୋକରୁ ଧର୍ମାଶୋକରେ ପରିବର୍ତ୍ତିତ ହୋଇଥିଲେ । ଖ୍ରୀଷ୍ଟପୂର୍ବ ୨୬୧ରେ ସଂଘର୍ଷ ଏହି କଳିଙ୍ଗଯୁଦ୍ଧ ବିଶ୍ୱ ଇତିହାସରେ ଗୋଟିଏ ବିରଳ ମହାସମର ରୂପେ ଚିତ୍ରିତ । ଏହି ଯୁଦ୍ଧପରେ ଅଶୋକ ଧଉଳି ଓ ଜଉଗଡଠାରେ ଯେଉଁ ରାଜାଦେଶ ଖୋଦନ କରାଇଥିଲେ ତାହା ଅଦ୍ୟାବଧି ବିଦ୍ୟମାନ । ଏହି ସମୟରେ କଳିଙ୍ଗ ଏକ ସୁଶାସିତ ଓ ସୁସଙ୍ଗଠିତ ରାଜ୍ୟ ଥିଲା । ଅଧିକନ୍ତୁ, କଳିଙ୍ଗବାସୀ ଓଡ଼ିଆମାନେ ଓଡ୍ରମାଗଧୀ ବା ଅର୍ଦ୍ଧମାଗଧୀ ଭାଷା ବ୍ୟବହାର କରୁଥିଲେ ବୋଲି ସେହି ସମୟରେ ରଚିତ ଭରତଙ୍କ ନାଟ୍ୟଶାସ୍ତ୍ରରୁ ଜଣାଯାଏ । (୧୩) ଧଉଳି ଓ ଜଉଗଡ ଶିଳାଲିପି ସେହି ସମୟରେ ପ୍ରଚଳିତ ଥିବା ଓଡ୍ରମାଗଧୀର ପରିଚୟ ପ୍ରଦାନ କରିଥାଏ । (୧୪) ଏହି ଶିଳାଲେଖ ଦ୍ୱୟରେ ଖୋଦିତ ଶବ୍ଦ ମଧ୍ୟରେ

କେତେକ ପ୍ରାଚୀନ ଓଡ଼ିଆ ଶବ୍ଦ ରହିଛି । ଏଥିରୁ ପ୍ରମାଣିତ ହୁଏ, ଖ୍ରୀଷ୍ଟପୂର୍ବ ତୃତୀୟ ଶତାବ୍ଦୀରେ ଓଡ଼ିଶାର ଐତିହ୍ୟ, ସଂସ୍କୃତି ଓ ଭାଷା ଉନ୍ନତ ଥିଲା ।

ଖ୍ରୀଷ୍ଟପୂର୍ବ ପ୍ରଥମ ଶତାବ୍ଦୀରେ ସ୍ୱାଧୀନ କଳିଙ୍ଗରେ ଚେଦିବଂଶର ରାଜତ୍ୱ ଆରମ୍ଭ ହୋଇଥିଲା । ଏହି ବଂଶର ପ୍ରଖ୍ୟାତ ସମ୍ରାଟ୍ ଖାରବେଳ ଉଦୟଗିରି ଓ ଖଣ୍ଡଗିରିରେ ଅନେକ ଜୈନକୀର୍ତ୍ତି ସ୍ଥାପନ କରିଥିଲେ ତଥା ହାତୀଗୁମ୍ଫା ଶିଳାଲିପି ଉତ୍କୀର୍ଣ୍ଣ କରାଇଥିଲେ । ଏହି ଶିଳାଲିପିରେ ତାଙ୍କ ରାଜତ୍ୱର ତ୍ରୟୋଦଶ ବର୍ଷ ପର୍ଯ୍ୟନ୍ତ ସବିଶେଷ ବିବରଣୀ ଲିପିବଦ୍ଧ । (୧୫) ମହାମହିମ ସମ୍ରାଟ୍ ଖାରବେଳଙ୍କ ଅଧକ୍ଷତାରେ ଓଡ଼ିଆ ବୀରଗଣ ଆଫଗାନିସ୍ଥାନ ପର୍ଯ୍ୟନ୍ତ ଦିଗ୍‌ବିଜୟ କରି ଭାରତ ଭୂଖଣ୍ଡରୁ ଯବନମାନଙ୍କୁ ବିତାଡିତ କରିଥିଲେ । ହୃଦ୍‌ବୋଧ ହୁଏ, ସେହି ସମୟରେ ଓଡ଼ିଆଜାତି ରାଜ୍ୟ ଜୟର ଆଶା ନରଖି ଅଖଣ୍ଡ ଭାରତବର୍ଷ ଗଠନ ପ୍ରୟାସରେ ଥିଲେ । ଶିଳାଲେଖରୁ ଜଣାଯାଏ, ଖାରବେଳ ରାଜତ୍ୱର ଦ୍ୱାଦଶ ବର୍ଷରେ ମଗଧରାଜ ବୃହସ୍ପତି ମିତ୍ରଙ୍କୁ ପରାସ୍ତ କରି ଅପହୃତ କଳିଙ୍ଗ ଜିନ୍ ମହାସମାରୋହରେ କଳିଙ୍ଗକୁ ଆଣିଥିଲେ । ଉଦୟଗିରି ରାଣୀଗୁମ୍ଫାରେ ପରାଜିତ ମଗଧରାଜ ଖାରବେଳଙ୍କ ପଦବନ୍ଦନା କରୁଥିବା ଚିତ୍ର ଖୋଦିତ । ସେହି ସମୟରେ ଓଡ଼ିଆମାନେ ଲେଖ (ସାହିତ୍ୟ), ରୂପ (ମୁଦ୍ରା), ଗଣନା (ଅଙ୍କ), ବ୍ୟବହାର (ଆଇନ), ବିଧି (ନିୟମ), ଗାନ୍ଧର୍ବବିଦ୍ୟା (ସଂଗୀତ ନୃତ୍ୟାବ) ଓ ଧନୁର୍ବିଦ୍ୟା (ସମରକୌଶଳ) ପ୍ରଭୃତି ଶିକ୍ଷା କରୁଥିଲେ । ଏଥିରୁ ଓଡ଼ିଆଙ୍କ ସଭ୍ୟତା ଓ ସଂସ୍କୃତି ଅନୁମେୟ । ଉଦୟଗିରି ଓ ଖଣ୍ଡଗିରିର ବିଭିନ୍ନ ଗୁମ୍ଫାରେ ଖୋଦିତ ଚିତ୍ରରୁ ତତ୍‌କାଳୀନ କଳିଙ୍ଗର ଉନ୍ନତ କଳା ଓ ସ୍ଥାପତ୍ୟର ପରିଚୟ ମିଳିଥାଏ । ସେହି ସମୟରେ ଓଡ଼ିଶାରେ କ୍ରୀଡା, ନୃତ୍ୟ, ବାଦ୍ୟ ଓ ସଂଗୀତର ଆଦର ରହିଥିଲା । ଖାରବେଳଙ୍କ ହାତୀଗୁମ୍ଫା ଶିଳାଲେଖର ଲିପି ବ୍ରାହ୍ମୀ ଓ ଭାଷା ଓଡ୍ରମାଗଧୀ ଥିଲା । ସେଥିରେ ଖୋଦିତ ହୋଇଥିବା ଓଡ଼ିଆ ଶବ୍ଦ ସମୂହରେ ଓଡ଼ିଆ ଧ୍ୱନିର ରୂପାନ୍ତର, ଲୋପ, ପରିବର୍ତ୍ତନ ଆଦିର ସଙ୍କେତ ମିଳିଥାଏ । ଏଥିରୁ ପ୍ରମାଣିତ ହୁଏ, ଖ୍ରୀଷ୍ଟପୂର୍ବ କାଳରେ ଓଡ଼ିଆ ଭାଷା ବିକଶିତ ସ୍ଥିତିରେ ଥିଲା । ସେହି ସମୟରେ ରଚିତ ପ୍ଲିନିଙ୍କ ବିବରଣ ଅନୁଯାୟୀ ସମର ବିଶାରଦ ଜାତିମାନଙ୍କ ମଧ୍ୟରେ ଓଡ଼ିଆମାନେ ଅଗ୍ରଣୀ ଥିଲେ । ସେମାନେ ଯୁଦ୍ଧକ୍ଷେତ୍ରରେ ଥିଲେ ସଂଗ୍ରାମୀ ସୈନିକ ଓ କୃଷିକ୍ଷେତ୍ରରେ ଥିଲେ ସାର୍ଥକ କୃଷକ । ଅର୍ଥାତ୍ 'ଜୟ ଜବାନ ଓ ଜୟ କିଶାନ' ଉକ୍ତି ଖ୍ରୀଷ୍ଟପୂର୍ବ କାଳରୁ ଓଡ଼ିଶାରେ ସାକାର ହୋଇଥିଲା । ପ୍ଲିନିଙ୍କ 'ନାଚୁରାଲ ହିଷ୍ଟ୍ରି' ବ୍ୟତୀତ ଷ୍ଟ୍ରାବୋଙ୍କ 'ଇଣ୍ଡିଆ', ଆରିଆନ୍‌ଙ୍କ 'ଇଣ୍ଡିକା', ବୌଦ୍ଧାୟନ ଧର୍ମସୂତ୍ର, ମାନବ ଧର୍ମଶାସ୍ତ୍ର, ଭରତଙ୍କ ନାଟ୍ୟଶାସ୍ତ୍ର, ପାଣିନିଙ୍କ ଅଷ୍ଟାଧ୍ୟାୟୀ ପ୍ରଭୃତିରେ ଓଡ଼ିଆଙ୍କ ସମ୍ପର୍କରେ ଅନେକ ଉଲ୍ଲେଖ ମିଳେ ।

ଚେଦୀବଂଶ ରାଜତ୍ୱ ପରେ କଳିଙ୍ଗ ସାତବାହାନ ସାମ୍ରାଜ୍ୟଭୁକ୍ତ ହୋଇଥିଲା ବୋଲି ନାସିକ ଗୁମ୍ଫାଭିଲେଖରେ ବର୍ଣ୍ଣିତ । ଖ୍ରୀଷ୍ଟାବ୍ଦ ଦ୍ୱିତୀୟ ଶତାବ୍ଦୀରେ ମୁରୁଣ୍ଡମାନେ କଳିଙ୍ଗ ଅଧିକାର କରିଥିଲେ । ଶିଶୁପାଳଗଡ ଭୂଖୋଦନରୁ ମିଳିଥିବା ପ୍ରତ୍ନବିଭବ ଓ ମୁଦ୍ରାରୁ ପ୍ରମାଣିତ ହୁଏ ଖ୍ରୀଷ୍ଟୀୟ ପ୍ରଥମ ଶତାବ୍ଦୀରେ ଓଡ଼ିଶାର ଗ୍ରୀକ୍ ଓ ରୋମ୍‌ସହିତ ବାଣିଜ୍ୟିକ ସମ୍ପର୍କ ରହିଥିଲା ଏବଂ ସେହିସମୟରେ ଓଡ଼ିଶାର ଜନଜୀବନ ସମୃଦ୍ଧ ଥିଲା । (୧୬) ଓଡ଼ିଶାର ବିଭିନ୍ନ ସ୍ଥାନରୁ ପ୍ରାପ୍ତ କୁଶାଣ ମୁଦ୍ରାରୁ ପ୍ରମାଣିତ ହୁଏ ଖ୍ରୀଷ୍ଟାବ୍ଦ ଦ୍ୱିତୀୟ ଓ ତୃତୀୟ ଶତାବ୍ଦୀରେ ମୁରୁଣ୍ଡମାନେ ଓଡ଼ିଶାକୁ ଶାସନ କରୁଥିଲେ । ଗୁପ୍ତଯୁଗ ଅର୍ଥାତ୍ ଚତୁର୍ଥ ଓ ପଞ୍ଚମ ଶତାବ୍ଦୀରେ ଗୁହଦେବ କଳିଙ୍ଗରେ ଶାସନ କରୁଥିଲେ । ଏହି ସମୟରେ ଓଡ଼ିଶାର ଉତ୍ତରାଞ୍ଚଳ ବିନ୍ଧ୍ୟଟବୀରେ ଭଞ୍ଜବଂଶ ରାଜତ୍ୱ କରୁଥିଲେ ବୋଲି ଅସନପାଟ ଶିଳାଲେଖରୁ ପ୍ରମାଣିତ । (୧୭) ଗୁପ୍ତଯୁଗରେ କୋଶଳରେ ମହେନ୍ଦ୍ର, ମହାକାନ୍ତାରରେ ବ୍ୟାଘ୍ରରାଜ, ପିଷ୍ଟପୁରରେ ମହେନ୍ଦ୍ର, ଗିରିକୋଟ୍ଟରେ ସ୍ୱାମୀଦତ୍ତ, ଏରଣ୍ଡପଲ୍ଲୀରେ ଦାମନ ଓ ଦେବରାଷ୍ଟ୍ରରେ କୁବେର ରାଜତ୍ୱ କରୁଥିଲେ । (୧୮) ଗୁପ୍ତ ରାଜତ୍ୱ

କାଳରେ ଓଡ଼ିଶାରେ ଆର୍ଯ୍ୟ ସଂସ୍କୃତି, ବ୍ରାହ୍ମଣ୍ୟଧର୍ମ ଓ ଦର୍ଶନର ପ୍ରସାର ଘଟିଥିଲା । ଆର୍ଯ୍ୟ ସଂସ୍କୃତିର ସମ୍ପ୍ରସାରଣ ଫଳରେ ରାଜନୀତି, ଧର୍ମଭାବନା, ଶାସନନୀତି ଓ ବ୍ୟବସ୍ଥା, ଭାଷା, ସାହିତ୍ୟ ଓ ଦର୍ଶନ କ୍ଷେତ୍ରରେ ବୈପ୍ଳବିକ ନବଯୁଗର ସୂତ୍ରପାତ ହେବାରୁ ଓଡ଼ିଶାର ପରିଚୟ ପରିବର୍ତ୍ତିତ ହେଲା । ହିନ୍ଦୁଧର୍ମର ରୀତି, ନୀତି ଓ ଧର୍ମବ୍ୟବସ୍ଥାକୁ ଓଡ଼ିଶାର ଜନଜାତିମାନେ ଗ୍ରହଣ କରିନେଲେ । ଏହି ସଂସ୍କୃତୀକରଣ ପ୍ରକ୍ରିୟା ଓଡ଼ିଶାର ଜନଜୀବନରେ ନୂତନ ସାମାଜିକ ଅନୁଭୂତି ସୃଷ୍ଟି କଲା । ଏହାର ସୂତ୍ରଧର ହେଲେ ଦକ୍ଷିଣର ଶାସକ ମାଠର, ପୁଷ୍କରୀର ନଳ ଓ କଳିଙ୍ଗର ପ୍ରାଚ୍ୟ ଗଙ୍ଗରାଜନ୍ୟବୃନ୍ଦ । ଏହାପରେ କ୍ଷୁଦ୍ର ଆୟତନ ବିଶିଷ୍ଟ ଅନେକ ସ୍ୱାଧୀନରାଜ୍ୟ ଓଡ଼ିଶାର ବିଭିନ୍ନ ସ୍ଥାନରେ ସ୍ଥାପିତ ହେଲା । ପ୍ରାଚୀନ ଓଡ଼ିଶାର ଉପକୂଳ ଅଞ୍ଚଳରେ କଳିଙ୍ଗ ପରେ ତୋଷାଳିର ଉଦ୍‌ଭବ ଘଟିଲା । ମହନୀୟତା ହେଉଛି, ବିଶାଳ ଓଡ଼ିଶା ଭୂଖଣ୍ଡ ଓଡ୍ର, ତୋଷଳ, ଉତ୍କଳ, କୋଶଳ, କଙ୍ଗୋଦ, କଳିଙ୍ଗ ପ୍ରଭୃତି ବହୁନାମରେ ବହୁ ଖଣ୍ଡରେ ବିଭକ୍ତ ହୋଇଥିଲେ ହେଁ ଭାବ ଓ ଭାଷା ଦୃଷ୍ଟିରୁ ଅଭିନ୍ନ ଥିଲା ।

ଚୀନ୍ ପରିବ୍ରାଜକ ହୁଏନ୍‌ସାଙ୍କ ବିବରଣୀରୁ ଜଣାଯାଏ, ଓଡ଼ିଆମାନେ ଦୀର୍ଘକାୟ, ସ୍ୱଜାତ୍ୟାଭିମାନୀ, ସାହସୀ, ପରିଶ୍ରମୀ ଓ ବିଦ୍ୟୋତ୍ସାହୀ ଥିଲେ । ଭାଷା ଓ ଭାବରେ ସେମାନେ ଅନ୍ୟାନ୍ୟ ଭାରତୀୟଙ୍କଠାରୁ ସ୍ୱତନ୍ତ୍ର ଥିଲେ ବୋଲି ହୁଏନ୍‌ସାଂ ଲେଖିଛନ୍ତି । ସେ ୬୩୮ –୩୯ ଖ୍ରୀଷ୍ଟାବ୍ଦରେ ଓଡ଼ିଶା ଭ୍ରମଣ ପୂର୍ବକ ଆତ୍ମଲିପି ଲେଖିଥିଲେ । (୧୯) ଏହାପରେ ଖ୍ରୀ ୭୩୬ରୁ ଓଡ଼ିଶାରେ ଭୌମକର ରାଜତ୍ୱ ଆରମ୍ଭ ହୋଇଥିଲା । ଏହି ବଂଶରେ ବାରଜଣ ରାଜା ଓ ସାତଜଣ ରାଣୀ ଶାସନ କରି ଅକ୍ଷୟ ଯଶ ରଖି ଯାଇଛନ୍ତି । ଭୌମକର ରାଜତ୍ୱ କାଳରେ ଓଡ଼ିଆମାନେ ଶିଳ୍ପ, କଳା, ଭାସ୍କର୍ଯ୍ୟ ଓ ସ୍ଥାପତ୍ୟର ପରାକାଷ୍ଠା ପ୍ରଦର୍ଶନ କରିଥିଲେ । ରତ୍ନଗିରି, ଲଳିତଗିରି, ଉଦୟଗିରି, ଷୋଳମ୍ପୁର, କୁରୁମ, ବାଣେଶ୍ୱର ନାସୀ, ଲାଙ୍ଗୁଡି, କାଏମା ପ୍ରଭୃତି ସ୍ଥାନର ବୌଦ୍ଧପୀଠ, କୁଆଁଳୋଇ ଅଷ୍ଟକାମ୍ଭୁ ପୀଠ, ବଜ୍ରକୋଟର ଭିଙ୍ଗେଶ୍ୱର ମନ୍ଦିର, ଗନ୍ଧରାଜର ନୀଳମାଧବ ମନ୍ଦିର, ଭୁବନେଶ୍ୱର ବୈତାଳମନ୍ଦିର, ପର୍ଶୁରାମେଶ୍ୱର ମନ୍ଦିର, ମୋହିନୀ ମନ୍ଦିର, ହୀରାପୁରର ଚୌଷଠୀ ଯୋଗିନୀ ମନ୍ଦିର, ଚୌରାଶୀର ବାରାହୀ ମନ୍ଦିର ପ୍ରଭୃତି ଭୌମ ରାଜତ୍ୱରେ ଓଡ଼ିଆ ଶିଳ୍ପୀମାନଙ୍କ ଦ୍ୱାରା ନିର୍ମିତ । ଭୌମ ଯୁଗୀୟ ଶିଳାଲେଖ ଓ ତାମ୍ରପତ୍ର ସମୂହରୁ ଓଡ଼ିଶାର ଉନ୍ନତ ସଭ୍ୟତା ଓ ସଂସ୍କୃତିର ପରିଚୟ ମିଳିଥାଏ । ଏହି ସମୟରେ ଓଡ଼ିଆ ସିଦ୍ଧାଚାର୍ଯ୍ୟଙ୍କ ଦ୍ୱାରା ଓଡ଼ିଆ ସାହିତ୍ୟର ଅଭ୍ୟୁଦୟ ଘଟି ପୂର୍ବାଞ୍ଚଳ ଭାଷାଗୋଷ୍ଠୀରେ ପ୍ରଥମ ସାହିତ୍ୟର ମାନ୍ୟତାଲାଭ କରିଥିଲା । ଭୌମମାନଙ୍କ ପରେ ସୋମବଂଶୀମାନେ ଓଡ଼ିଶା ଶାସନ କଲେ । ଏହି ବଂଶର ଯଯାତି କେଶରୀ ଯାଜପୁରରେ ଦଶାଶ୍ୱମେଧ ଯଜ୍ଞ ସମ୍ପନ୍ନ କରି ଓଡ଼ିଶାରେ ବୈଦିକ ସଂସ୍କୃତିର ବ୍ୟାପକ ପ୍ରସାର ଘଟାଇଥିଲେ । ସୋମରାଜତ୍ୱରେ ଲିଙ୍ଗରାଜ ମନ୍ଦିର, ବ୍ରହ୍ମେଶ୍ୱର ମନ୍ଦିର, ରାଜାରାଣୀ ମନ୍ଦିର, ମୁକ୍ତେଶ୍ୱର ମନ୍ଦିର, କୁଶଳେଶ୍ୱର ମନ୍ଦିର, ବୌଦର ରାମେଶ୍ୱର ମନ୍ଦିର, ପୁରୀର ପ୍ରଥମ ଜଗନ୍ନାଥ ମନ୍ଦିର ପ୍ରଭୃତି ଓଡ଼ିଆ ଶିଳ୍ପୀମାନଙ୍କ ଦ୍ୱାରା ନିର୍ମାଣ କରାଯାଇଥିଲା । ଏହିସବୁ ମନ୍ଦିର ଓ ମୂର୍ତ୍ତି ସମୂହର ଭାସ୍କର୍ଯ୍ୟଶୈଳୀ ସ୍ୱତନ୍ତ୍ର ଆଲୋଚନା ପ୍ରତୀକ୍ଷା କରିଥାଏ । ସୋମବଂଶୀଙ୍କ ତାମ୍ରପତ୍ର ସମୂହରେ ଓଡ଼ିଆ ଭାଷା ବିକାଶର ସୂଚନା ଉପଲବ୍ଧ ହୋଇଥାଏ । ଏହାପରେ ଓଡ଼ିଶାରେ ଗଙ୍ଗବଂଶ ରାଜତ୍ୱ ପ୍ରତିଷ୍ଠିତ ହେଲା । ଗଙ୍ଗରାଜତ୍ୱରେ ଓଡ଼ିଆ ବୀରବୃନ୍ଦ ଗଙ୍ଗାଠାରୁ ଗୋଦାବରୀ ଓ ମହୋଦଧିଠାରୁ ଅମରକଣ୍ଟକ ପର୍ଯ୍ୟନ୍ତ ଓଡ଼ିଶାର ପରିସୀମା ବୃଦ୍ଧି କରିଥିଲେ । ପୁରୀର ଶ୍ରୀଜଗନ୍ନାଥ ମନ୍ଦିର, କୌଶଲ୍ୟାଗଙ୍ଗ ଜଳାଶୟ, ଚାଟେଶ୍ୱର ମନ୍ଦିର, ରେମୁଣା ଗୋପୀନାଥ ମନ୍ଦିର, କପିଳାସ ମନ୍ଦିର, କୋଣାର୍କ ସୂର୍ଯ୍ୟମନ୍ଦିର, ସାଲେପୁର ନିକଟସ୍ଥ ଗୋପୀନାଥ ମନ୍ଦିର, ଅନନ୍ତ ବାସୁଦେବ ମନ୍ଦିର, ମେଘେଶ୍ୱର ମନ୍ଦିର, ଶୋଭନେଶ୍ୱର ମନ୍ଦିର, ସୀମାଚଳ ମନ୍ଦିର, ନାଗନା ଶିବମନ୍ଦିର ପ୍ରଭୃତି

ଅଗଣିତ ମନ୍ଦିର ଗଙ୍ଗ ରାଜତ୍ୱରେ ଓଡ଼ିଆଶିଳ୍ପୀଙ୍କ ଦ୍ୱାରା ନିର୍ମାଣ କରାଯାଇଥିଲା । ଗଙ୍ଗ ରାଜତ୍ୱରେ ଓଡ଼ିଶାର ଐଶ୍ୱର୍ଯ୍ୟ, ବିଭବ ଓ ସମୃଦ୍ଧି ଉନ୍ନତିର ଶେଷସୀମା ସ୍ପର୍ଶ କରିଥିଲା । ବିଶେଷତଃ ପୁରୀରେ ଶ୍ରୀଜଗନ୍ନାଥ ମନ୍ଦିର ପୁନଃନିର୍ମାଣ ହେବାପରେ ଦିବ୍ୟନୀଳାଚଳଧାମ ଆଧ୍ୟାତ୍ମିକ ଚେତନାର ଶ୍ରେଷ୍ଠ ଆକର୍ଷଣ ହୋଇ ଭାରତର ପ୍ରମୁଖ ତୀର୍ଥସ୍ଥାନ ହୋଇଥିଲା । ଗଙ୍ଗରାଜତ୍ୱ ପୂର୍ବରୁ ଆଦି ଶଙ୍କରାଚାର୍ଯ୍ୟ ପୁରୀରେ ଭୋଗ ବର୍ଦ୍ଧନ ମଠ ସ୍ଥାପନ କରିଥିଲେ ହେଁ ଗଙ୍ଗ ରାଜତ୍ୱରେ ଅନ୍ୟାନ୍ୟ ଦାର୍ଶନିକ ତଥା ସେମାନଙ୍କର ଅନୁଗାମୀବୃନ୍ଦ ମଠସ୍ଥାପନ କଲେ । ପଞ୍ଚଦଶ ଶତାବ୍ଦୀରୁ ସୂର୍ଯ୍ୟବଂଶୀ ଗଜପତିମାନେ ଓଡ଼ିଶା ଶାସନ କଲେ । ଏହି ସମୟରେ ଓଡ଼ିଶାର ରାଜା, ରାଜକର୍ମଚାରୀ ଓ ପ୍ରଜା ସଭିଏଁ ଜାତ୍ୟାଭିମାନରେ ବିଶେଷ ଗୌରବ ଅନୁଭବ କରିଥିଲେ । ସୂର୍ଯ୍ୟବଂଶୀ ରାଜତ୍ୱରେ ମାଟିର ମହାକବି ସାରଳା ଦାସ ଓଡ଼ିଆ ସାହିତ୍ୟକୁ ବିଶାଳ ମହାଭାରତରୂପୀ ଜ୍ଞାନମୟ ପୁଷ୍ପମାଲ୍ୟରେ ବିମଣ୍ଡିତ କରିଥିଲେ । ଏହି ସମୟରୁ ଓଡ଼ିଆ ଭାଷା ରାଜକୀୟ ପୃଷ୍ଠ–ପୋଷକତା ଲାଭ କରିଥିଲା । ୧୫୬୮ ଖ୍ରୀଷ୍ଟାବ୍ଦରେ ଆଫଗାନମାନେ ଓଡ଼ିଶା ଅଧିକାର କରିଥିଲେ ହେଁ ଓଡ଼ିଶାର ଗଡଜାତ ଅଞ୍ଚଳ ସ୍ୱାଧୀନ ରହିଥିଲା । ଗୌରବର କଥା, ଏହି ସମୟରେ ଓଡ଼ିଆ ଭାଷା ପ୍ରଜ୍ଞାର ଐଶ୍ୱର୍ଯ୍ୟମୟ ଆଭାସରେ ଉଦ୍‌ଭାସିତ ହୋଇ ବ୍ୟାପକ ଓଡ଼ିଆ ସାହିତ୍ୟ ସୃଷ୍ଟି ହୋଇଥିଲା ଗୋହିରାଟିକିରୀ ଯୁଦ୍ଧରେ ଆଫଗାନମାନେ କପଟତା ଅବଲମ୍ବନ କରି ବିଜୟୀ ହୋଇଥିଲେ ହେଁ ଦୁର୍ଦ୍ଧର୍ଷ ମରହଟ୍ଟା ବାହିନୀକୁ ପ୍ରତିରୋଧ କରିବାରେ ଓଡ଼ିଆମାନେ ଥିଲେ ଅଗ୍ରଣୀ । ଢେଙ୍କାନାଳର ଷାଠିଏ ବାଟିଆ ରଣାଙ୍ଗନରେ ମରହଟ୍ଟାବାହିନୀ ସହିତ ଅଠରଦିନ ଯୁଦ୍ଧରେ ସ୍ୱଳ୍ପ ସଂଖ୍ୟକ ଓଡ଼ିଆବୀର ଯେଉଁ ବୀରତ୍ୱ ପ୍ରଦର୍ଶନ କଲେ ତାହାର ପଟ୍ଟାନ୍ତର ନାହିଁ । ୧୭୫୯ରେ ଓଡ଼ିଆ ବୀରବୃନ୍ଦଙ୍କ ଅଭୂତପୂର୍ବ ରଣକୌଶଳରେ ଭୀତ ହୋଇ ଫରାସୀମାନେ ଗଞ୍ଜାମ ଅଧିକାର କରିବା ଆଶା ପରିତ୍ୟାଗ କରିଥିଲେ । ୧୭୬୭ରେ ଇଂରେଜମାନେ ଓଡ଼ିଆବୀରଙ୍କୁ ଭୟକରି ଗଞ୍ଜାମ ଅଧିକାର କରିପାରିନଥିଲେ । ୧୮୦୩ରେ ଇଂରେଜମାନେ ପ୍ରତାରଣା ପୂର୍ବକ ଓଡ଼ିଶା ଅଧିକାର କରିଥିଲେ ହେଁ ଓଡ଼ିଆଜାତି ଏହି ପରାଧୀନତାକୁ ସ୍ୱୀକାର କରିନଥିଲା । ଏହା ବିରୁଦ୍ଧରେ ଓଡ଼ିଆମାନଙ୍କ ଦ୍ୱାରା ସଂଗଠିତ ୧୮୧୭ ମସିହାର ପାଇକବିଦ୍ରୋହ ଥିଲା ଭାରତର ପ୍ରଥମ ସ୍ୱାଧୀନତା ସଂଗ୍ରାମ । ବୀର ସୁରେନ୍ଦ୍ର ସାଏଙ୍କ ସ୍ୱାଧୀନତା ସଂଗ୍ରାମ ଇଂରେଜମାନଙ୍କୁ ଆତଙ୍କିତ କରିଦେଇଥିଲା । ଓଡ଼ିଶାର ବାରବର୍ଷର ବାଳକ ବାଜି ରାଉତ ହେଉଛନ୍ତି ବିଶ୍ୱର କନିଷ୍ଠତମ ଶହୀଦ୍ ।

ଶ୍ରୀଜଗନ୍ନାଥଙ୍କୁ କେନ୍ଦ୍ରକରି ଓଡ଼ିଶାରେ ସୁଦୂର ବୈଦିକ ଯୁଗରୁ ଏକ ସମନ୍ୱୟାତ୍ମକ ସାଂସ୍କୃତିକ ସ୍ରୋତ ପ୍ରବାହିତ । ଜାତି, ବର୍ଣ୍ଣ, ସମ୍ପ୍ରଦାୟ, ଜ୍ଞାନୀ, ମାନୀ, ସିଦ୍ଧ, କ୍ରୁଦ୍ଧ, ପ୍ରାଜ୍ଞ, ଅଜ୍ଞ ନିର୍ବିଶେଷରେ ସଭିଏଁ ତାଙ୍କ ପାଖରେ ସମାନ । ତାଙ୍କ ମହାପ୍ରସାଦ ସେବାରେ ବ୍ରାହ୍ମଣ ଚଣ୍ଡାଳର ଭେଦନାହିଁ । ଏହାହିଁ ଓଡ଼ିଆ ସଂସ୍କୃତିର ମୂଳପିଣ୍ଡ । ଓଡ଼ିଆ ସଂସ୍କୃତିର ବାହନ ହେଉଛି ଓଡ଼ିଆ ଭାଷା, ଯାହାକି ବୈଦିକ ଯୁଗରୁ ପ୍ରବହମାନ । ଓଡ଼ିଶୀ ନୃତ୍ୟ ଓ ସଂଗୀତ ବହୁ ପ୍ରାଚୀନ । ଭରତମୁନିଙ୍କ ଦ୍ୱାରା ନାଟ୍ୟଶାସ୍ତ୍ର ରଚନାର ବହୁ ପୂର୍ବରୁ ଓଡ଼ିଶୀ ନୃତ୍ୟର ବିକାଶ ଘଟିଛି । ଖ୍ରୀଷ୍ଟପୂର୍ବ ତୃତୀୟ ଶତାବ୍ଦୀରେ ଭାରତ ଔଡ୍ରୀପ୍ରବୃତ୍ତି ସମ୍ପର୍କରେ ଉଲ୍ଲେଖ କରିଛନ୍ତି । ବିଭିନ୍ନ ନାଟକୀୟ ପ୍ରବୃତ୍ତି ମଧ୍ୟରେ ଭରତମୁନି ଔଡ୍ରୀମାଗଧୀ ପ୍ରବୃତ୍ତିକୁ ମହତ୍ତ୍ୱପୂର୍ଣ୍ଣ ସ୍ଥାନ ପ୍ରଦାନ କରିଛନ୍ତି ।

ଓଡ଼ିଶୀ କଳା, ସ୍ଥାପତ୍ୟ ଓ ଭାସ୍କର୍ଯ୍ୟର ପ୍ରଥମ ପ୍ରକାଶ ଉଦୟଗିରି ଓ ଖଣ୍ଡଗିରି ଗୁମ୍ଫାସ୍ଥିତ ଖ୍ରୀଷ୍ଟପୂର୍ବ କାଳୀନ ଚିତ୍ରରେ ପରିଦୃଷ୍ଟ । ପରବର୍ତ୍ତୀ କାଳରେ ଶହ ଶହ ମନ୍ଦିରରେ ଏହାର ବିକଶିତ ସ୍ୱରୂପ ଉପଲବ୍ଧ । ସେଠାରେ ଥିବା ଗୁମ୍ଫାସ୍ଥିତ ନାଟ୍ୟଶାଳା ଭାରତର ସର୍ବପ୍ରାଚୀନ ନାଟ୍ୟଶାଳା । ଓଡ଼ିଶାକୁ ଜୈନ, ବୌଦ୍ଧ, ଅଦ୍ୱୈତବାଦୀ, ଦ୍ୱୈତବାଦୀ, ଶୁଦ୍ଧାଦ୍ୱୈତବାଦୀ, ରାମାନନ୍ଦୀ, ଶ୍ୟାମାନନ୍ଦୀ, ନିମାନନ୍ଦୀ, ମାଧବାନନ୍ଦୀ ସଭିଏଁ ଆସିଛନ୍ତି,

ଅଥଚ ସେମାନଙ୍କ ଚେତନା ଶ୍ରୀଜଗନ୍ନାଥଙ୍କ ସମନ୍ୱୟାତ୍ମକ ଚେତନାରେ ବିଲୀନ ହୋଇଯାଇଛି । ଐତିହ୍ୟମୟୀ ଓଡ଼ିଶାର ପ୍ରାଚୀନ ସଭ୍ୟତା ଓ ସଂସ୍କୃତି ବିଶ୍ୱଦରବାରରେ ସ୍ୱତନ୍ତ୍ର ଆସନ ଅଳଙ୍କୃତ କରିଥିଲା । ପ୍ରାଚୀନ ସାହିତ୍ୟ, ଶିଳାଲେଖ, ତାମ୍ରପତ୍ର ତଥା ବିଦେଶୀ ପରିବ୍ରାଜକଙ୍କ ବିବରଣୀରେ ଓଡ଼ିଆଙ୍କ ଇତିହାସ ଓ ସଂସ୍କୃତି ଲିପିବଦ୍ଧ । ଶାସ୍ତ୍ରୀୟ ଭାଷା ନିମିତ୍ତ ଭାରତ ସରକାର ଯେଉଁ ପ୍ରଥମ ମାନ୍ୟତା ନିର୍ଦ୍ଧାରଣ କରିଛନ୍ତି ଓଡ଼ିଆ ଜାତିର ତାହାଠାରୁ ଅଧିକ ବର୍ଷର ଲିପିବଦ୍ଧ ଐତିହ୍ୟ ଓ ସଂସ୍କୃତି ରହିଛି ।

ଭାଷାର ଶାସ୍ତ୍ରୀୟତା ନିର୍ଦ୍ଧାରଣ ନିମିତ୍ତ ଭାରତ ସରକାରଙ୍କ ଦ୍ୱିତୀୟ ମାନ୍ୟତା ହେଉଛି, ଓଡ଼ିଆ ଅଭିଲେଖ ସମୂହରୁ ଓଡ଼ିଆ ଭାଷାର କ୍ରମବିକାଶ ଧାରା ବିଶ୍ଳେଷଣ କଲେ ଜଣାଯାଏ, ଖ୍ରୀଷ୍ଟପୂର୍ବ ଷଷ୍ଠ ଶତାବ୍ଦୀଠାରୁ ଅଭିଲେଖରେ ଓଡ଼ିଆ ଶବ୍ଦ ପରିଦୃଷ୍ଟ । ଖ୍ରୀଷ୍ଟପୂର୍ବ ତୃତୀୟ ଶତାବ୍ଦୀର ଅଭିଲେଖର ଭାଷା ହେଉଛି ଓଡ୍ରମାଗଧୀ ବା ଓଡ଼ିଆ । ଖ୍ରୀଷ୍ଟପୂର୍ବ ପ୍ରଥମ ଶତାବ୍ଦୀର ଖାରବେଳଙ୍କ ହାତୀଗୁମ୍ଫା ଅଭିଲେଖର ଭାଷା ଓଡ୍ରମାଗଧୀ ତଥା ଏଥିରେ ବହୁ ଓଡ଼ିଆ ଶବ୍ଦ ରହିଛି । ଖ୍ରୀଷ୍ଟାବ୍ଦ ପଞ୍ଚମ ଓ ଷଷ୍ଠ ଶତାବ୍ଦୀର ଅଭିଲେଖ ସମୂହକୁ ଓଡ଼ିଆ ଭାଷାବିକାଶର ନମୁନା କହିଲେ ଅତ୍ୟୁକ୍ତି ହେବନାହିଁ । ସେହି ସମୟର ଅଭିଲେଖରେ ବହୁ ଓଡ଼ିଆ ଶବ୍ଦ ଓଡ଼ିଆ ଉଚ୍ଚାରଣ ଧାରାରେ ସଂସ୍କୃତ ଶୈଳୀରେ ଖୋଦିତ । (୨୦) ସେତେବେଳକୁ ଓଡ଼ିଆ ଭାଷା ସାହିତ୍ୟ ସୃଷ୍ଟି କରିବାକୁ ସାମର୍ଥ୍ୟ ଲାଭକଲାଣି । କିନ୍ତୁ ତତ୍କାଳୀନ ତାଳପତ୍ର ପୋଥି ଲିଖିତ ସାହିତ୍ୟ ଅଦ୍ୟାବଧି ମିଳିନାହିଁ । କେବଳ ଓଡ଼ିଆ ଭାଷାର ଚର୍ଯ୍ୟାଗୀତି ନେପାଳ ରାଜପ୍ରାସାଦସ୍ଥ ପୁସ୍ତକାଳୟରୁ ମିଳିଛି । ଏହି ଚର୍ଯ୍ୟାଗୀତିଗୁଡିକ ଓଡ଼ିଆ ଭାଷାର ମହତ୍ତ୍ୱପୂର୍ଣ୍ଣ ପ୍ରାଚୀନ ସାହିତ୍ୟ, ଯାହା ଓଡ଼ିଆ ସିଦ୍ଧାଚାର୍ଯ୍ୟଙ୍କ ଦ୍ୱାରା ଷଷ୍ଠ-ସପ୍ତମ ଶତାବ୍ଦୀରୁ ନବମ-ଦଶମ ଶତାବ୍ଦୀ ମଧ୍ୟରେ ରଚିତ । ଏଥିରେ ଓଡ଼ିଶାର ଲୋକଜୀବନ, ଲୌକିକ ଧର୍ମ ଓ ସଂସ୍କୃତିର ପରିଚୟ ନିହିତ ଥିବାରୁ ଏଗୁଡିକ ଓଡ଼ିଆ ଭାଷାର ମହତ୍ତ୍ୱପୂର୍ଣ୍ଣ ସାହିତ୍ୟ । ଏହାର ଶବ୍ଦାବଳୀ, ବିଭକ୍ତି, ପ୍ରତ୍ୟୟ, ସର୍ବନାମ, କ୍ରିୟାବିଧି ଓ ବାକ୍ୟଗଠନ ରୀତି ପ୍ରଭୃତିର ଭାଷାତାତ୍ତ୍ୱିକ ଅଧ୍ୟୟନ କଲେ ହୃଦ୍‌ବୋଧ ହୁଏ, ଓଡ଼ିଆ ଭାଷା ସେହି ସମୟକୁ ସମୃଦ୍ଧ ଭାଷାରେ ପରିଣତ ହେଲାଣି । ଏଗୁଡିକ ମହତ୍ତ୍ୱପୂର୍ଣ୍ଣ ସାହିତ୍ୟ ହୋଇଥିବାରୁ ତ୍ରୟୋଦଶ ଶତାବ୍ଦୀରେ ମୁନିଦତ୍ତଙ୍କ ଦ୍ୱାରା ସଂସ୍କୃତରେ ଅନୁଦିତ ହୋଇଥିଲା । ଚର୍ଯ୍ୟାଗୀତିଗୁଡିକ ସିଦ୍ଧାଚାର୍ଯ୍ୟଙ୍କ ଦ୍ୱାରା 'ସନ୍ଧାଭାଷା' ବା ଦ୍ୱୈତାର୍ଥକ ଭାଷାରେ ରଚିତ । ପୂର୍ବରୁ ସାହିତ୍ୟ ସୃଷ୍ଟିର ଭିତ୍ତି ବା ପରମ୍ପରା ନଥିଲେ ହଠାତ୍ ଏତାଦୃଶ ସାହିତ୍ୟ ସୃଷ୍ଟି ହୋଇପାରିନଥାନ୍ତା । କିନ୍ତୁ ଏହାର ପୂର୍ବବର୍ତ୍ତୀ ସାହିତ୍ୟ ମିଳିନଥିବାରୁ ଏଗୁଡିକୁ ଓଡ଼ିଆ ଭାଷାର ପ୍ରାଚୀନ ସାହିତ୍ୟ ରଚନା ପରମ୍ପରାର ପ୍ରଥମ ପ୍ରକାଶ ବିବେଚନା କରାଯାଇଛି, ଯାହାର ସମୟ ୧୫୦୦ ବର୍ଷରୁ ଅଧିକ । ଡକ୍ଟର କରୁଣାକର କର ସ୍ୱରଚିତ 'ଆଶ୍ଚର୍ଯ୍ୟାଚର୍ଯ୍ୟାଚୟ' ଚର୍ଯ୍ୟାର ଭାଷାତାତ୍ତ୍ୱିକ ବିଶ୍ଳେଷଣ କରିଛନ୍ତି । (୨୧) ଏହି ବିଶ୍ଳେଷଣରେ ସେ ଧ୍ୱନିତତ୍ତ୍ୱ, ପଦବିଚାର, ପଦଗଠନରୀତି, ଶବ୍ଦତତ୍ତ୍ୱ ପ୍ରଭୃତି ବିଶଦ ଭାବରେ ଅନୁଶୀଳନ କରିଛନ୍ତି, ଯହିଁରୁ ହୃଦ୍‌ବୋଧ ହୁଏ ଏଗୁଡିକ ପୂର୍ଣ୍ଣାଙ୍ଗ ଓଡ଼ିଆ ସାହିତ୍ୟ । ଅଳଙ୍କାର, ଶ୍ଳେଷାତ୍ମକ ଶବ୍ଦ ପ୍ରୟୋଗ ଓ ବର୍ଣ୍ଣନା ବିଳାସ ଚର୍ଯ୍ୟାଗୀତ ସମୂହକୁ ଉଚ୍ଚକୋଟୀର ସାହିତ୍ୟରୂପେ ପ୍ରତିପାଦନ କରିପାରିଛି । ଆଧ୍ୟାତ୍ମିକ ତତ୍ତ୍ୱ ବର୍ଣ୍ଣନା ହୋଇଥିବାରୁ ଏଗୁଡିକ ମହତ୍ତ୍ୱପୂର୍ଣ୍ଣ ସାହିତ୍ୟ । ସନ୍ଧାଭାଷା ପ୍ରତୀକ, ରୂପକ ପ୍ରୟୋଗ, ଦ୍ୱିପଦୀ ଓ ଚଉପଦୀର ଦୋହା, ଛନ୍ଦ ଓ ରାଗରାଗିଣୀ ପ୍ରଭୃତିର ବର୍ଣ୍ଣନା ତଥା ସାମାଜିକ ଚିତ୍ରରୁ ଏଗୁଡିକର ସାହିତ୍ୟିକ ମୂଲ୍ୟ ଆକଳନ କରାଯାଇଛି । ସରଳ ଶବ୍ଦ ସଂଯୋଜନା ଓ ଛନ୍ଦୋବଦ୍ଧ ଗୀତଗୁଡିକ ଚର୍ଯ୍ୟାଗୀତି ସମୂହକୁ ଶ୍ରୁତିମଧୁର ଓ ବୈଚିତ୍ର୍ୟମଣ୍ଡିତ କରିପାରିଛି । ଓଡ଼ିଆ ଭାଷାର ଏତାଦୃଶ ମହତ୍ୱପୂର୍ଣ୍ଣ ସାହିତ୍ୟ ରଚନାରେ ପ୍ରଭାବିତ ହୋଇ ଅନ୍ୟାନ୍ୟ ପ୍ରାଦେଶିକ ଭାଷାର କବିକୋବିଦ ତଥା ଓଡ଼ିଶାର ପଞ୍ଚସଖାଗଣ ବହୁ ଦ୍ୱୈତାର୍ଥକ ସାହିତ୍ୟ ପରବର୍ତ୍ତୀ କାଳରେ ସୃଷ୍ଟି କରିଛନ୍ତି ।

ଚର୍ଯ୍ୟାଗୀତି ପରେ ଓଡ଼ିଆ ଭାଷାରେ ବହୁ ନାଥ ସାହିତ୍ୟ ଓ ଶୈବସାହିତ୍ୟ ରଚନା ହୋଇଥିଲା । ଏଗୁଡିକ ଓଡ଼ିଆଭାଷାର ମହତ୍ତ୍ୱପୂର୍ଣ୍ଣ ପ୍ରାଚୀନ ସାହିତ୍ୟ ରଚନାର ଦ୍ୱିତୀୟ ସ୍ତର । ସେହି ସାହିତ୍ୟଗୁଡିକ ହେଉଛି ଶିଶୁବେଦ, ଗୋରେଖଗୀତା, ସପ୍ତାଙ୍ଗ ଯୋଗ, ଷଡଚକ୍ର ସାଧନା, ସୋମନାଥ ବ୍ରତ କଥା, କଉଡିଆ ବିନାୟକ ବ୍ରତକଥା, କଳଶା ଚଉତିଶା ପ୍ରଭୃତି । ଓଡ଼ିଆ ଭାଷାର ଏହି ଉଚ୍ଚାଙ୍ଗ ସାହିତ୍ୟ ସମୂହ ଦଶମ ଶତାବ୍ଦୀଠାରୁ ଚତୁର୍ଦ୍ଦଶ ଶତାବ୍ଦୀ ମଧ୍ୟରେ ରଚିତ । ମହତ୍ତ୍ୱପୂର୍ଣ୍ଣ ସାହିତ୍ୟ ସୃଷ୍ଟି ପରମ୍ପରାରେ ପ୍ରଥମେ ସୃଷ୍ଟ 'ଚର୍ଯ୍ୟାଗୀତି' ପଦ୍ୟସାହିତ୍ୟ ହୋଇଥିଲେ ହେଁ ଏଗୁଡିକ ଗଦ୍ୟ-ପଦ୍ୟ ମିଶ୍ରିତ । ପ୍ରାଚୀନ ଓଡ଼ିଆ ଗଦ୍ୟ ସାହିତ୍ୟର ନିଦର୍ଶନ ସ୍ୱରୂପ 'ଶିଶୁବେଦ'କୁ ଗ୍ରହଣ କରାଯାଇଛି । (୨୨) ଏଗୁଡିକ ନାଥ ଓ ଶୈବଧର୍ମର ଗୂଢତତ୍ତ୍ୱ ଆଧାରିତ ହୋଇଥିବାରୁ ମହତ୍ତ୍ୱପୂର୍ଣ୍ଣ ସାହିତ୍ୟ ସ୍ୱରୂପରେ ବିବେଚିତ ହୋଇଥାଏ । ଓଡ଼ିଆ ସିଦ୍ଧସାଧକ ବୃନ୍ଦ ଅନୁଭୂତିର ଦିବ୍ୟମୂର୍ଚ୍ଛନାରେ ନାଥ ଓ ଶୈବଧର୍ମଭିତ୍ତିକ ଏହି ମହତ୍ତ୍ୱପୂର୍ଣ୍ଣ ସାହିତ୍ୟ ରଚନା ପରମ୍ପରାରେ ଆତ୍ମିକ ସନନ୍ଦ ଭାବରେ ପ୍ରତିଭାତ ହୋଇ ସିଦ୍ଧସାଧକଗଣ ଏହି ସାହିତ୍ୟ ସୃଷ୍ଟି କରିଥିଲେ । ସେହି ସମୟରେ ଓଡ଼ିଶା ମାଟି ନାଥ ଓ ଶୈବଧର୍ମ ପ୍ଲାବିତ ହୋଇଥିବାର ସାମାଜିକ ଚେତନାର ଉତ୍ତରଣରେ ଏହିସବୁ ସାହିତ୍ୟ ସୃଷ୍ଟି ହୋଇ ଓଡ଼ିଆ ଭାଷାରେ ମହତ୍ତ୍ୱପୂର୍ଣ୍ଣ ସାହିତ୍ୟ ରଚନାର ପରମ୍ପରା ଅବ୍ୟାହତ ରହିଥିଲା । ଡକ୍ଟର ଆର୍ତ୍ତବଲ୍ଲଭ ମହାନ୍ତି 'ପ୍ରାଚୀନ ଗଦ୍ୟ ପଦ୍ୟାପର୍ଣ୍ଣ', ଡକ୍ଟର ବୃନ୍ଦାବନ ଚନ୍ଦ୍ର ଆଚାର୍ଯ୍ୟ, ଡକ୍ଟର ବଂଶୀଧର ମହାନ୍ତି, ସୁରେନ୍ଦ୍ର ମହାନ୍ତି, ଡକ୍ଟର ନଟବର ସାମନ୍ତରାୟ, ଡକ୍ଟର ସୁରେନ୍ଦ୍ର କୁମାର ସହାରଣା, ଶ୍ରୀବତ୍ସ ପ୍ରସାଦ ନାଥ ପ୍ରଭୃତି ଗବେଷକ ଓ ଅନିସନ୍ଧିତ୍ସୁ ଏହିସବୁ ସାହିତ୍ୟରୁ ଅନେକ ସଂଗ୍ରହ କରି ସଙ୍କଳନ କରିଥିଲେ ହେଁ ପର୍ଯ୍ୟାପ୍ତ ସାହିତ୍ୟ ହୋଇପାରିନାହିଁ ।

ଚତୁର୍ଦ୍ଦଶ ଶତାବ୍ଦୀ ପର୍ଯ୍ୟନ୍ତ ଓଡ଼ିଶାର ସିଦ୍ଧସାଧକ ଓ କବିକୋବିଦ ବୃନ୍ଦ ଏହିସବୁ ସାହିତ୍ୟ ରଚନା କରି ଓଡ଼ିଆ ଭାଷାରେ ମହତ୍ତ୍ୱପୂର୍ଣ୍ଣ ସାହିତ୍ୟ ରଚନାର ଭିତ୍ତିଭୂମିକୁ ସୁଦୃଢ କରିଥିଲେ । ପରିଣାମସ୍ୱରୂପ ପଞ୍ଚଦଶ ଶତାବ୍ଦୀର ପ୍ରାରମ୍ଭରେ ମହତ୍ତ୍ୱପୂର୍ଣ୍ଣ ସାହିତ୍ୟ ରଚନା ପରମ୍ପରାର ଆତ୍ମିକ ସନନ୍ଦଭାବରେ ଜନ୍ମ ନେଇଥିଲା ବିଶାଳ ଓଡ଼ିଆ ମହାଭାରତ । ଦଶମ ଶତାବ୍ଦୀଠାରୁ ଚତୁର୍ଦ୍ଦଶ ଶତାବ୍ଦୀ ପର୍ଯ୍ୟନ୍ତ ଓଡ଼ିଆଙ୍କ ରାଜନୈତିକ, ସାମାଜିକ ଓ ସାଂସ୍କୃତିକ ଜୀବନର ସୂତ୍ରଧର ଥିଲେ ସଂସ୍କୃତାଭିମାନୀ ପଣ୍ଡିତବର୍ଗ । ତଥାପି, ଏହି ସମୟରେ ଅଗଣିତ ସନ୍ଥ, ସାଧକ, ସିଦ୍ଧ ଓ କବିକୋବିଦ ଉଚ୍ଚାଙ୍ଗ ସାହିତ୍ୟ ସୃଷ୍ଟି ପୂର୍ବକ ଓଡ଼ିଆ ଭାଷାର ଗୌରବ ବୃଦ୍ଧି କରିଥିଲେ । ସେହି ମହତ୍ତ୍ୱପୂର୍ଣ୍ଣ ସାହିତ୍ୟ ରଚନା ପରମ୍ପରାରେ ପ୍ରତିଭାତ ହୋଇଥିଲେ ମାଟିର ମହାକବି ସାରଳା ଦାସ । କ୍ରାନ୍ତିକାରୀ ଓଡ଼ିଆ ସ୍ରଷ୍ଟା ସାରଳା ଦାସ ମହତ୍ତ୍ୱପୂର୍ଣ୍ଣ ରଚନାରେ ମନୋନିବେଶ କରି କବିସୁଲଭ ବିନୟତାରେ ନିଜକୁ ଶୁଦ୍ର, ମୂର୍ଖ, ଅପଣ୍ଡିତ ବିବେଚନାରେ ଦେବୀ ସାରଳାଙ୍କ କୃପାରୁ ଓଡ଼ିଆ ଭାଷାରେ ମହାଭାରତ ରଚନା ପୂର୍ବକ ନିଜ ମାତୃ ଭାଷାକୁ ଗୌରବ ମଣ୍ଡିତ କରିପାରିଥିଲେ । ତାଙ୍କ ରଚିତ ମହାଭାରତ ସଂସ୍କୃତ ମହାଭାରତର ଓଡ଼ିଆ ଅନୁବାଦ ନୁହେଁ । ସଂସ୍କୃତ ମହାଭାରତର କଥାବସ୍ତୁ ସହି ସ୍ୱକୀୟ କଳ୍ପନାକୁ ଆଧାରକରି ସାରସ୍ୱତ କଳାପାଟବତାରେ ଓଡ଼ିଶାର ରାଜନୈତିକ, ସାମାଜିକ, ସାଂସ୍କୃତିକ, ସାମରିକ, ଧର୍ମଧାରା, ଲୋକ ଜୀବନର ଚିତ୍ରାଲେଖ୍ୟରେ ସେ ଓଡ଼ିଆ ଭାଷାର ମହତ୍ତ୍ୱପୂର୍ଣ୍ଣ ସାହିତ୍ୟ ରଚନା ପରମ୍ପରାରେ ବିସ୍ମୟ ସୃଷ୍ଟି କରିଥିଲେ । ତାଙ୍କର ଶବ୍ଦଜ୍ଞାନ, ଶବ୍ଦ ସଂଯୋଜନା, ଭାଷାର ପ୍ରୟୋଗାତ୍ମକ ଧାରା, କଥନଭଙ୍ଗୀ, ବର୍ଣ୍ଣନାପାଟବ ଓ ପରିବେଷଣ ଶୈଳୀ ଗ୍ରନ୍ଥଟିର ମହତ୍ତ୍ୱ ବୃଦ୍ଧି କରିଥିଲା । ଅସଲ କଥାଟି ହେଉଛି, ସାରଳା ଦାସ ପ୍ରାଚୀନଗାଥାକୁ ଓଡ଼ିଆଙ୍କ ଜନଜୀବନ ସହିତ ସଂଯୋଗ କରି ସାମାଜିକ କାବ୍ୟ ଭାବରେ ମହତୀ ପୌରାଣିକ ପରିଧିରେ ପରିବେଷଣ କରିଥିଲେ । ଫଳରେ କଥାବସ୍ତୁ ପ୍ରାଚୀନ ହେଲେ ହେଁ ପ୍ରତ୍ୟେକ ପାଠକ ନିକଟରେ ନିତ୍ୟନୂତନ ରୂପରେ

ସାମାଜିକ ଚେତନାର ଉତ୍ତରଣ ଭାବରେ ପ୍ରତିଭାତ ହୋଇଥିଲା । ଜଗଜ୍ଜନନୀ ସାରଳାଙ୍କ କୃପାରେ ଏହି ମହତଗ୍ରନ୍ଥ ରଚିତ ହୋଇଥିବାରୁ ସଂସ୍କୃତାଭିମାନୀ ପଣ୍ଡିତବର୍ଗ ପ୍ରତିବାଦରୁ ବିରତ ରହିଲେ । ଓଡ଼ିଆ ଭାଷାର ଏକ ସଜୀବ ମହାକାବ୍ୟ ଭାବରେ ଏହି ପରମଗ୍ରନ୍ଥ ବିଶେଷ ପାଠକୀୟ ଆଦୃତି ଲାଭ କରିଥିଲା । କାହାଣୀ, ସ୍ୱକ୍ତି, ପ୍ରବାଦ, ପ୍ରବଚନ, ନୀତି, ବାଣୀ, ଧର୍ମୋପଦେଶ, ଜ୍ଞାନ, ବିଜ୍ଞାନ, କଳା, କୌଶଳ, ସମରଶୈଳୀ, ଜ୍ୟୋତିଷ, ରାଜନୀତି, ଅର୍ଥନୀତି, ଶାସନନୀତି, ଚତୁର୍ଦ୍ଦଶ ବିଦ୍ୟା ଓ ତନ୍ତ୍ରମନ୍ତ୍ର ପ୍ରଭୃତି ମହତ ବିଭବରେ ପରିପୂର୍ଣ୍ଣ ଏହି ମହତ୍ତ୍ୱପୂର୍ଣ୍ଣ ଗ୍ରନ୍ଥକୁ ବୃହତ୍ ଜ୍ଞାନକୋଷ କୁହାଯାଏ, ଓଡ଼ିଆ ଜାତି, ଜାତୀୟତା, ଭାଷା, ସଂସ୍କୃତି ଓ ସାହିତ୍ୟର ମନୋଜ୍ଞ ଅନୁଶୀଳନ ଏହି ମହନୀୟ କୃତୀଟିକୁ ଓଡ଼ିଆ ଜାତୀୟ ଜୀବନର ବେଦ ସ୍ୱରୂପରେ ପ୍ରତିପାଦିତ କରିଛି । ମହାଭାରତ ବ୍ୟତୀତ ବିଲଙ୍କା ରାମାୟଣ, ଚଣ୍ଡୀପୁରାଣ ଓ ଲକ୍ଷ୍ମୀନାରାୟଣ ବଚନିକା ପ୍ରଭୃତି ସାରଳା ଦାସଙ୍କର ଅନନ୍ୟ ମହନୀୟ କୃତୀ ।

ମାଟିର ମହାକବି ସାରଳା ଦାସଙ୍କ ପରେ ମହତ୍ତ୍ୱପୂର୍ଣ୍ଣ ସାହିତ୍ୟ ରଚନାରେ ବ୍ରତୀ ହୋଇଥିଲେ ପଞ୍ଚସଖାଗଣ । ଏମାନଙ୍କ ମଧ୍ୟରେ ବଳରାମ ଦାସ ଥିଲେ ଜ୍ୟେଷ୍ଠ । ତାଙ୍କର ମହନୀୟ କୃତୀ ମଧ୍ୟରେ ଜଗମୋହନ ରାମାୟଣ, ଭାବସମୁଦ୍ର, ବଟଅବକାଶ, ଲକ୍ଷ୍ମୀପୁରାଣ, ବେଦାନ୍ତସାର ଗୁପ୍ତଗୀତା, ମୃଗୁଣୀସ୍ତୁତି, କାନ୍ତକୋଇଲି, ବାରମାସୀ କୋଇଲି, କମଳଲୋଚନ ଚଉତିଶା, ଗଜନିସ୍ତାରଣ ଗୀତା, ଜ୍ଞାନ ଚୂଡାମଣି, ବଉଳା ଅଧ୍ୟାୟ ପ୍ରଭୃତି ମୁଖ୍ୟ । ଉତ୍ତରଭାରତର ଆଞ୍ଚଳିକ ଭାଷା ମଧ୍ୟରେ ପ୍ରଥମେ ଓଡ଼ିଆରେ ବଳରାମ ଦାସ ରାମାୟଣ ରଚନା କରିଥିଲେ । ଏହା ସଂସ୍କୃତ ରାମାୟଣର ଅନୁବାଦ ନୁହେଁ, ତାଙ୍କର ମୌଳିକ କୃତୀ । ମୂଳ ରାମାୟଣର କଥାବସ୍ତୁକୁ ଆଧାରକରି ଶ୍ରୀଜଗନ୍ନାଥଙ୍କ ମହିମା ବର୍ଣ୍ଣନ ହିଁ ଏହି ଗ୍ରନ୍ଥର ମହତ୍ ଉଦ୍ଦେଶ୍ୟ । ଏହି ଅମରକୃତିରେ ଶ୍ରୀଜଗନ୍ନାଥଙ୍କୁ ପରଂବ୍ରହ୍ମ ଓ ଶ୍ରୀରାମଙ୍କୁ ତାଙ୍କର ସପ୍ତମ ଅବତାର ଭାବରେ ବର୍ଣ୍ଣନା କରାଯାଇଛି । ପ୍ରତିଦିନ ଏହି ରାମାୟଣ ପୁରୀ ଶ୍ରୀମନ୍ଦିରର ଜଗମୋହନରେ ପାଠ କରାଯାଉଥିବାରୁ ତଥା ଶ୍ରୀଜଗନ୍ନାଥ ବା ଜଗମୋହନଙ୍କ ମହିମା ଆଧାରିତ ହୋଇଥିବାରୁ ଏହାର ନାମ 'ଜଗମୋହନ ରାମାୟଣ', ଉତ୍ତର ଭାରତର ପ୍ରସିଦ୍ଧ ସନ୍ଥ ତୁଳସୀ ଦାସ ଏହି ରାମାୟଣ ଶ୍ରବଣ କଲାପରେ ସଂସ୍କୃତ ଭାଷା ପରିବର୍ତ୍ତେ ଅବଧି ଭାଷାରେ 'ଶ୍ରୀରାମ ଚରିତ ମାନସ' ରଚନା କରିଥିଲେ । ଓଡ଼ିଆ ଭାଷାର ଏହି ମହତ୍ତ୍ୱପୂର୍ଣ୍ଣ ରଚନାରେ ରାମାବତାର, ଜଗନ୍ନାଥଙ୍କ ମହିମା ଓ ଓଡ଼ିଶାର ସାମାଜିକ ଚିତ୍ର ସ୍ଥାନିତ । କେବଳ ଓଡ଼ିଶା ନୁହେଁ, ସମଗ୍ର ଭାରତରେ ଏହା ଗୋଟିଏ ଆଦର୍ଶଗ୍ରନ୍ଥ । ବଳରାମ ଦାସଙ୍କ 'ଲକ୍ଷ୍ମୀପୁରାଣ' ଏକ କ୍ରାନ୍ତିକାରୀ ସୃଷ୍ଟି, ତାଙ୍କର ଅନ୍ୟାନ୍ୟ ରଚନା ମଧ୍ୟ ଗୋଟିଏ ଗୋଟିଏ ମହତ୍ତ୍ୱପୂର୍ଣ୍ଣ କୃତୀ । ସାରଳାଦାସ 'ମହାଭାରତ' ଓ ବଳରାମଦାସ 'ରାମାୟଣ' ରଚନା କରିବା ପରେ ମହତ୍ତ୍ୱପୂର୍ଣ୍ଣ ସାହିତ୍ୟ ସୃଷ୍ଟିରେ ବ୍ରତୀହୋଇ ଜଗନ୍ନାଥ ଦାସ ଓଡ଼ିଆ ଭାଗବତ ରଚନା କରିଥିଲେ । ସେ ମଧ୍ୟ ମହର୍ଷି ବେଦବ୍ୟାସକୃତ ସଂସ୍କୃତ ଭାଗବତକୁ ଓଡ଼ିଆରେ ଅନୁବାଦ ନକରି ଜଗଦ୍‌ଗୁରୁ ଶ୍ରୀଧର ସ୍ୱାମୀଙ୍କ ଭାଗବତ ଟୀକା 'ଭାବାର୍ଥ ଦୀପିକା' ଆଧାରରେ ଭାବାନୁବାଦ କରିଛନ୍ତି । ନବାକ୍ଷରୀ ବୃତ୍ତରେ ରଚିତ ତାଙ୍କ ଭାଗବତ ପ୍ରତ୍ୟେକ ଓଡ଼ିଆଙ୍କର ନିତ୍ୟପୂଜନୀୟ ଗ୍ରନ୍ଥ । ଜଗନ୍ନାଥ ଦାସ ଭାଗବତ ରଚନା କଲାପରେ ଏହାକୁ ପାଠକରିବା ନିମିତ୍ତ ଓଡ଼ିଶାରେ 'ଚାଟଶାଳୀ ଶିକ୍ଷା' ପ୍ରବର୍ତ୍ତନ ହେଲା । ପ୍ରତ୍ୟେକ ଚାଟଶାଳୀରେ ଭାଷାଶିକ୍ଷା ପ୍ରଦାନ କରିବାକୁ ଜଣେ ଜଣେ ଅବଧାନ ରହିଲେ । ଓଡ଼ିଶାରେ 'ମାଟିବଂଶ' ନାମକ ଗୋଟିଏ ସମ୍ପ୍ରଦାୟ ପରମ୍ପରାକ୍ରମେ ଅବଧାନ କାର୍ଯ୍ୟ ସମ୍ପନ୍ନ କଲେ, ଯାହା ସମଗ୍ର ବିଶ୍ୱର ଅନ୍ୟକୌଣସି ଭୂଖଣ୍ଡରେ ପରିଦୃଷ୍ଟ ନୁହେଁ । ଏହାଦ୍ୱାରା ବିନା ବିଦ୍ୟାଳୟରେ ଲକ୍ଷ ଲକ୍ଷ ଓଡ଼ିଆ ସାକ୍ଷର ହୋଇଗଲେ । ପରମଗ୍ରନ୍ଥ ଭାଗବତର ଭାଷା ହେଉଛି ମାନକ ଓଡ଼ିଆ ଭାଷା । ଆଧ୍ୟାତ୍ମିକ ଦର୍ଶନର ଜଟିଳ ତତ୍ତ୍ୱକୁ ସରଳ ଓ ସୁମଧୁର ପଦ୍ୟରେ ପ୍ରତିପାଦନ କରି ଜଗନ୍ନାଥ ଦାସ

ଓଡ଼ିଆ ଜାତିର ପ୍ରାତଃସ୍ମରଣୀୟ ତଥା ତାଙ୍କ ରଚିତ ଭାଗବତ ଓଡିଆ ଭାଷାର ମହତ୍ତ୍ୱପୂର୍ଣ୍ଣ ଗ୍ରନ୍ଥ । ଏହି ଗ୍ରନ୍ଥ ଓଡ଼ିଆ ଭାଷା, ସାହିତ୍ୟ ଓ ଶିକ୍ଷା ବିସ୍ତାରରେ ବିଶେଷ ସହାୟକ ହୋଇଥିଲା । ଏତାଦୃଶ ମହତ୍ୱପୂର୍ଣ୍ଣ ଗ୍ରନ୍ଥ ଅନ୍ୟଭାଷାରେ ବିରଳ । ଭାଗବତ ବ୍ୟତୀତ ଜଗନ୍ନାଥ ଦାସ ଓଡ଼ିଆ ଭାଷାରେ ଅନ୍ୟାନ୍ୟ ଚାଳିଶ ଖଣ୍ଡ ମହତ୍ତ୍ୱପୂର୍ଣ୍ଣ ଗ୍ରନ୍ଥ ରଚନା କରିଯାଇଛନ୍ତି । ଯାହାର ପଟାନ୍ତର ନାହିଁ ।

ପଞ୍ଚସଖାଙ୍କ ମଧ୍ୟରେ ଅଚ୍ୟୁତାନନ୍ଦ ଦାସ ଜଣେ ସିଦ୍ଧ ଓ କବି ଥିଲେ । ଓଡ଼ିଆ ଭାଷାରେ ସେ ବ୍ୟାପକ ମହତ୍ୱପୂର୍ଣ୍ଣ ଗ୍ରନ୍ଥ ରଚନା କରିଯାଇଛନ୍ତି । ସ୍ୱକୀୟ ରଚନା ସମ୍ପର୍କରେ ସେ ସୂଚନା ପ୍ରଦାନ ପୂର୍ବକ 'ଅଣାକାର ସଂହିତା'ରେ ଉଲ୍ଲେଖ କରିଛନ୍ତି–

ଛତିଶି ସଂହିତା, ଅଠସ୍ତରୀ ଗୀତା, ବଂଶାନୁ ସପ୍ତବିଂଶରେ,

ଉପବଂଶାନୁ ଦ୍ୱାଦଶ ଖଣ୍ଡ କହି ଭବିଷ୍ୟ ଶତଖଣ୍ଡରେ ।

ପଦପଦ୍ୟାବଳୀ ଲକ୍ଷେକ ଯେ ଗ୍ରନ୍ଥ ସବୁ ଶ୍ରୀକୃଷ୍ଣ ମହିମା, ତୋ ଆଗେ କହିଲି ବରଜ କୁମାର ବ୍ରହ୍ମ ସାରସ୍ୱତ ସୀମା ।

ଏହି ଉକ୍ତିରୁ ତାଙ୍କ ସୃଷ୍ଟିର ବ୍ୟାପକତା ଅନୁମେୟ । ତାଙ୍କ ରଚିତ 'ଶୂନ୍ୟ ସଂହିତା', 'ଅଣାକାର ସଂହିତା', 'ବ୍ରହ୍ମ ସଂହିତା', 'ଶବ୍ଦ ବ୍ରହ୍ମସଂହିତା', 'ଏକାକ୍ଷର ସଂହିତା', 'ପଟଳ ସଂହିତା', 'ଅନାହତ ସଂହିତା, ଗୁରୁଭକ୍ତି ଗୀତା, ଗରୁଡ଼ଗୀତା, କୈବର୍ତ୍ତଗୀତା, ଶୂନ୍ୟଗୀତା, ତତ୍ତ୍ୱସାଗରଗୀତା, ଏକାକ୍ଷରଗୀତା, ଜ୍ଞାନ ପ୍ରଦୀପ ଗୀତା, ପଦ୍ମବନରାସ, ଶୂନ୍ୟରାହାସ, ନିତ୍ୟରାହସ, ଠୁଳଶୂନ୍ୟରାସ, ଅବତାର ମାଳିକା, କଳିଯୁଗ ମାଳିକା, ଆଗତ ଭବିଷ୍ୟମାଳିକା, ଦଶପଟଳ ମାଳିକା, ଜ୍ଞାନସାଗର ବୋଲି, ଅଳଙ୍କାର ବୋଲି, ପଦ୍ମବୋଲି, ବଣଭୋଜି ବୋଲି, ବ୍ରହ୍ମାଣ୍ଡ ସାଗର ବୋଲି, ଜ୍ଞାନୋଦୟ କୋଇଲି, ବାଖର କୋଇଲି, 'ଡିବିଡିବି କୋଇଲି, ଅଷ୍ଟଗୁର୍ଜରୀ, ବର୍ଣ୍ଣଟୀକା, ପଦ୍ମଟୀକା, ବୈଶାଖ କଳ୍ପ, ପଦ୍ମକଳ୍ପ, ଦଶପଟଳ, ଚବିଶିପଟଳ, ନିର୍ଘଣ୍ଟ, ଊଁକାର ବସାଣ, ବିପ୍ରଚାଳକ, ଅନନ୍ତଗୋଇ, ବାରମାସୀଗୀତ, ମନ୍ତ୍ରଯନ୍ତ୍ରଭେଦ, ବ୍ରହ୍ମବିଦ୍ୟା, ଷଡଚକ୍ରବିଚାର, ଦୂତୀବୋଧ, ଘାଟସଧା, ଗୋପାଳଙ୍କ ଓଗାଳ, ଲଉଡିଖେଳ, ଉଦୟକାହାଣୀ, ବ୍ରହ୍ମଶାଙ୍କୋଳି, ଭାବନାବର, ଅମରଭ୍ରମର, ସର୍ବାର୍ଥ ଚିନ୍ତାମଣି ଓ ହରିବଂଶ ପ୍ରଭୃତି ଗୋଟିଏ ଗୋଟିଏ ମହନୀୟ କୃତୀ । ଏହିସବୁ କୃତୀରେ ସେ ଶୂନ୍ୟବାଦ, ନାମତତ୍ତ୍ୱ, ରାଧାକୃଷ୍ଣତତ୍ତ୍ୱ, ଧାମତତ୍ତ୍ୱ, ମହାମନ୍ତ୍ର, ପ୍ରଣବ ମନ୍ତ୍ର, ବୀଜମନ୍ତ୍ର, ଗାୟତ୍ରୀମନ୍ତ୍ର, ଅଷ୍ଟାଙ୍ଗଯୋଗ, ନବଧାଭକ୍ତି, ଗୁରୁବାଦ, ଜଗନ୍ନାଥ ମହାତ୍ମ୍ୟ, ସାଧନତତ୍ତ୍ୱ ପ୍ରଭୃତିକୁ ସରଳ ଭାବରେ ବାଖ୍ୟା କରିଛନ୍ତି । ଜାତ୍ୟାଭିମାନ ବିରୁଦ୍ଧରେ ସାମାଜିକ ଚେତନାସୃଷ୍ଟି ତାଙ୍କ ସାହିତ୍ୟର ମହତ ଉଦ୍ଦେଶ୍ୟ ଥିଲା । ସେ ଜଣେ କ୍ରାନ୍ତିକାରୀ ସ୍ରଷ୍ଟା, ଭବିଷ୍ୟତ ଦ୍ରଷ୍ଟା ଓ ସଂସ୍କାରକ ଥିବାରୁ ତାଙ୍କର ପ୍ରତ୍ୟେକଟି କୃତୀ ସାରସ୍ୱତ କ୍ଷେତ୍ରରେ ମହତ୍ତ୍ୱପୂର୍ଣ୍ଣ ସ୍ଥାନ ଅଳଙ୍କୃତ କରିଥିଲା । ଯଶୋବନ୍ତ ଦାସ ପଞ୍ଚସଖାଙ୍କ ମଧ୍ୟରେ ଅନ୍ୟତମ । ସେ ପ୍ରେମଭକ୍ତି ବ୍ରହ୍ମଗୀତା, ଶିବସ୍ୱରୋଦୟ, ଗୋବିନ୍ଦଚନ୍ଦ୍ର, ଆତ୍ମ ପରଚେ ଗୀତା, ଅଦ୍ରଙ୍ଗ ଗଡମାଳିକା, ବ୍ରହ୍ମଏକାକ୍ଷର ଗୀତା ପ୍ରଭୃତି ରଚନା କରିଛନ୍ତି । ଅନ୍ୟତମ ପଞ୍ଚସଖା ଶିଶୁ ଅନନ୍ତ ଦାସ ହେତୁଉଦୟ ଭାଗବତ, ଗୁପ୍ତଟୀକା–ଉଦେବାଖର ଓ ବୈଷ୍ଣବ ପ୍ରଭୃତି ରଚନା କରିଛନ୍ତି । ଏଗୁଡିକ ଓଡ଼ିଆ ଭାଷାର ମହତ୍ତ୍ୱପୂର୍ଣ୍ଣ ସାହିତ୍ୟ । ପଞ୍ଚସଖା ଯୁଗକୁ ଓଡ଼ିଆ ସାହିତ୍ୟର ଧର୍ମଯୁଗ ପୁରାଣଯୁଗ କୁହାଯାଏ । ଏହି ଯୁଗରେ ଅନ୍ୟାନ୍ୟ ଓଡ଼ିଆ କବିକୋବିଦ ବୃନ୍ଦ ମଧ୍ୟ ଅନେକ ମହତ୍ତ୍ୱପୂର୍ଣ୍ଣ ସାହିତ୍ୟ ରଚନା କରିଛନ୍ତି । ସେହିସବୁ ସାହିତ୍ୟ ମଧ୍ୟରେ ଚୈତନ୍ୟଦାସଙ୍କ ବିଷ୍ଣୁଗର୍ଭ ପୁରାଣ ଓ ନିର୍ଗୁଣମହାତ୍ମ୍ୟ କହ୍ନାଇ ଖୁଣ୍ଟିଆଙ୍କ ମହାଭାବ ପ୍ରକାଶ, ଦିବାକର ଦାସଙ୍କ ଜଗନ୍ନାଥ ଚରିତାମୃତ, ମାଧବ ପଟ୍ଟନାୟକଙ୍କ ବୈଷ୍ଣବଲୀଳାମୃତ ଓ ଚୈତନ୍ୟ ବିଳାସ, ଈଶ୍ୱର ଦାସଙ୍କ ଚୈତନ୍ୟ ଭାଗବତ ଓ ପୀତାମ୍ବର ଦାସଙ୍କ ନୃସିଂହ ପୁରାଣ ପ୍ରଭୃତି ପ୍ରଧାନ । ଏତଦ୍‌ଭିନ୍ନ ପଞ୍ଚସଖା ଯୁଗରେ ମହାଦେବ ଦାସ, ଦାଶରଥି ଦାସ, କୃଷ୍ଣଦାସ,

ସାଲବେଗ, ରାୟରାମାନନ୍ଦ ମାଧବୀ ଦାସୀ, ଦାମୋଦର ଚମ୍ପତିରାଏ, କାହ୍ନୁଦାସ, ମୁରାରୀ, ଶଙ୍କର ଦାସ, ନନ୍ଦ ଦାସ, ବାଳକ ଶ୍ରୀହରି ଦାସ, ଦ୍ୱାରିକା ଦାସ ପ୍ରଭୃତି ଅସଂଖ୍ୟ ମହତ୍ତ୍ୱପୂର୍ଣ୍ଣ ଓଡ଼ିଆ ସାହିତ୍ୟ ରଚନା କରିଛନ୍ତି । ଏହି ପଞ୍ଚସଖା ଯୁଗରେ ଓଡ଼ିଆ କାବ୍ୟ ସାହିତ୍ୟ ରଚନାର ଉନ୍ମେଷ ଘଟିଥିଲା । ସେହିସବୁ ଓଡ଼ିଆ କାବ୍ୟ ମଧ୍ୟରେ ଅର୍ଜୁନ ଦାସଙ୍କ ରାମବିଭା ଓ କଳ୍ପଲତା, ଦେବଦୁର୍ଲଭ ଦାସଙ୍କ ରହସ୍ୟମଞ୍ଜରୀ, ଶିଶୁଶଙ୍କର ଦାସଙ୍କ ଉଷାଭିଳାଷ, କାର୍ତ୍ତିକ ଦାସଙ୍କ ରୁକ୍ମିଣୀବିଭା, ନରସିଂହ ସେଣଙ୍କ ପରିମଳା ଓ ଗୋପକେଳି, ପ୍ରତାପ ରାୟଙ୍କ ଶଶୀସେଣା, ବନମାଳୀ ଦାସଙ୍କ ଚାଟ ଇଚ୍ଛାବତୀ, ଚାନ୍ଦ ଦାସଙ୍କ ଗୋପୀଚନ୍ଦନ, ପୁରୁଷୋତ୍ତମ ଦାସଙ୍କ କାଞ୍ଚିକାବେରୀ, କପିଳେଶ୍ୱର ଦାସଙ୍କ କପଟକେଳି, ବିଷ୍ଣୁଦାସଙ୍କ ପ୍ରେମଲୋଚନ, ହରିହର ନରେନ୍ଦ୍ରଙ୍କ ମଦାଳସା, ଧନଞ୍ଜୟ ଭଞ୍ଜଙ୍କ ଅନଙ୍ଗରେଖା, ଇଚ୍ଛାବତୀ, ତ୍ରିପୁରମୋହିନୀ ଓ ମଦନମଞ୍ଜରୀ ପ୍ରଭୃତି ପ୍ରଣିଧାନଯୋଗ୍ୟ । ସେହି ସମୟରେ ରଚିତ ଦନାଇ ଦାସଙ୍କ 'ଗୋପୀଭାଷା' ଓଡ଼ିଶାର ସର୍ବଜନାଦୃତ ସାହିତ୍ୟ । ଓଡ଼ିଆ ଭାଷାର ମହତ୍ତ୍ୱପୂର୍ଣ୍ଣ ସାହିତ୍ୟ ରଚନା ପରମ୍ପରାରେ ଏଗୁଡିକର ଭୂମିକା ଉଲ୍ଲେଖନୀୟ ।

ଖ୍ରୀଷ୍ଟାବ୍ଦ ୧୫୦୦ରୁ ୧୬୫୦ ମଧ୍ୟରେ ପଞ୍ଚସଖା ଯୁଗୀୟ ମହତ୍ତ୍ୱପୂର୍ଣ୍ଣ ସାହିତ୍ୟ ରଚିତ ହୋଇଥିଲେ ହେଁ ୧୬୫୦ରୁ ୧୮୫୦ ମଧ୍ୟରେ ବହୁ ମହତ୍ୱପୂର୍ଣ୍ଣ ଓଡ଼ିଆ କାବ୍ୟ ରଚିତ । ଏହି ସମୟରେ ଭକ୍ତକବି ଦୀନକୃଷ୍ଣ ଦାସଙ୍କ ରଚିତ ରସକଲ୍ଲୋଳ ହେଉଛି ପ୍ରଥମ ପୂର୍ଣ୍ଣାଙ୍ଗ କାବ୍ୟ । ଶ୍ରୀକୃଷ୍ଣଙ୍କ ଗୋପଲୀଳା ଏହି କାବ୍ୟର ମୁଖ୍ୟ ପ୍ରତିପାଦ୍ୟ ପ୍ରସଙ୍ଗ ହୋଇଥିବାରୁ ଏହାକୁ ମହତ୍ତ୍ୱପୂର୍ଣ୍ଣ କାବ୍ୟର ମର୍ଯ୍ୟାଦା ପ୍ରଦାନ କରାଯାଏ । ରସର ଭଣ୍ଡାର ରସକଲ୍ଲୋଳରେ ବାତ୍ସଲ୍ୟ, ବୀର, ଭୟାନକ, କରୁଣ, ହାସ୍ୟ, ଶାନ୍ତ ପ୍ରଭୃତି ରସ ପରିବେଷଣ ହୋଇଥିଲେ ହେଁ ଶୃଙ୍ଗାର ରସ ମୁଖ୍ୟସ୍ଥାନ ଗ୍ରହଣ କରିଛି । କାବ୍ୟଟିରେ ରସ କଲ୍ଲୋଳାୟିତ ହେଉଥିବାରୁ କବି ଏହାର ନାମ ରସକଲ୍ଲୋଳ ବ୍ୟତୀତ ଦୀନକୃଷ୍ଣ ରସବିନୋଦ, ନାମରତ୍ନଗୀତା, ପ୍ରସ୍ତାବସିନ୍ଧୁ, ନାବକେଳି, ନାମମାଳିକା, ଆର୍ତ୍ତତ୍ରାଣ ଚଉତିଶା, ନବଘନ ଚଉତିଶା, କୁମାର ବୋଧନ ପ୍ରଭୃତି ବହୁ ମହନୀୟ ସାହିତ୍ୟ ରଚନା କରିଛନ୍ତି । ଏହି ଯୁଗର ଶ୍ରେଷ୍ଠ କବିଗୌରବ ଉପେନ୍ଦ୍ର ଭଞ୍ଜଙ୍କୁ ମିଳିଥାଏ । ଶବ୍ଦ ଓ ଅର୍ଥଜ୍ଞାନରେ ପ୍ରବୀଣ ଏହି କବିଙ୍କ ଲେଖନୀରୁ ବୈଦେହୀଶ ବିଳାସ, କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ, ଲାବଣ୍ୟବତୀ, ରସିକ ହାରାବଳୀ, ପ୍ରେମ ସୁଧାନିଧି, ସୁଭଦ୍ରା ପରିଣୟ, କଳାକଉତୁକ, ଅବନା ରସତରଙ୍ଗ, ଚିତ୍ରକାବ୍ୟ ବନ୍ଧୋଦୟ, ରସଲେଖା, ସୁବର୍ଣ୍ଣଲେଖା, ପଞ୍ଚସାୟକ, ଦଶପୋଇ, ଲାବଣ୍ୟନିଧି, ରସମଞ୍ଜରୀ, ଛଅପୋଇ, ବଜାରବୋଲି, ଷୋଳପୋଇ, ପ୍ରେମଲତା, ମନୋରମା, କାମକକ୍ଷ, ଚିତ୍ରଲେଖା, ଚଉପଦୀ ଭୂଷଣ, ତ୍ରୈଲୋକ୍ୟମୋହିନୀ, ପଦ୍ମାବତୀ ପରିଣୟ, ମୁକ୍ତାବତୀ, କୁଞ୍ଜବିହାର ପ୍ରଭୃତି ଅନେକ କାବ୍ୟକବିତା ନିସୃତ ହୋଇଥିଲା । କାବ୍ୟକୌଶଳ, ଅଳଙ୍କାର ପ୍ରୟୋଗ, ରସ ପରିବେଷଣ, ସାଙ୍ଗୀତଳତା, ଶୃଙ୍ଗାରିକତା ପ୍ରତ୍ୟେକ କ୍ଷେତ୍ରରେ ସେ ଥିଲେ ଅଗ୍ରଣୀ । ସ୍ୱକୀୟ ରଚନାରେ ସେ ଆଦ୍ୟଯମକ, ପ୍ରାନ୍ତ ନାମକ, ଆଦ୍ୟପ୍ରାନ୍ତ ଯମକ, ମାଳଯମକ, ମହାଯମକ, ଯୋଡି ଯମକ, ତ୍ରିବୃତ୍ତ ଯମକ, ଉପମା ଅନୁପ୍ରାସ, ଉତ୍ପ୍ରେକ୍ଷା, ଉଲ୍ଲେଖ, ପ୍ରତୀପ, ପର୍ଯ୍ୟୟୋକ୍ତି, ଆକ୍ଷେପ, ବିଷମ, ଅନ୍ୟୋନ୍ୟ, ଲଳିତ, ବିଶେଷ ଦୃଷ୍ଟାନ୍ତ, ବ୍ୟତିରେକ, ଅର୍ଥାନ୍ତର ନ୍ୟାସ ପ୍ରଭୃତି ଅଳଙ୍କାର ଏବଂ ରୂପକ, ଶ୍ଳେଷ, ଅଭଙ୍ଗ, ପ୍ରଭଙ୍ଗ, ଭାନ୍ତିମା ଅସମ୍ଭବ, ଅର୍ଥାପରି, ପ୍ରୌଢୋକ୍ତି, ସମ୍ଭାବନା, ବ୍ୟାଜୋକ୍ତି, ଅତ୍ୟୁକ୍ତି ପ୍ରଭୃତି ଚିତ୍ରାଳଙ୍କାର ତଥା ଲୋମବିଲୋମ ବକୋକ୍ତି, ଏକାକ୍ଷର, ଦ୍ୱିକ୍ଷର, ଦଭାକ୍ଷର, ପୁନରୁଛି, ଚୁତାକ୍ଷର, ସତଷ୍ଟ, ନିରୋଷ୍ଟକ, ସକାରତ୍ରୟ, ଗୋମୂତ୍ର, ବିରୋଧା ଭାଷ, ଅନ୍ତର୍ଲିପିକା ଓ ବହିର୍ଲିପିକା ପ୍ରଭୃତିର ବ୍ୟବହାର ଓ ପ୍ରୟୋଗ କରିଛନ୍ତି, ଯାହା ଭାରତର ଅନ୍ୟାନ୍ୟ ପ୍ରାନ୍ତୀୟ ଭାଷାରେ ବିରଳ । ଉପେନ୍ଦ୍ର ଭଞ୍ଜଙ୍କ କାବ୍ୟ କଳ୍ପନା, ନିର୍ମାଣ କୌଶଳ ଓ ଶବ୍ଦ ପ୍ରୟୋଗ ଅତ୍ୟନ୍ତ ପାଣ୍ଡିତ୍ୟପୂର୍ଣ୍ଣ ହୋଇଥିବାରୁ ତାଙ୍କ ରଚିତ ସାହିତ୍ୟକୁ ଓଡ଼ିଆ

ଭାଷାର ସର୍ବାଧିକ ମହତ୍ତ୍ୱପୂର୍ଣ୍ଣ ସାହିତ୍ୟର ମର୍ଯ୍ୟାଦା ପ୍ରଦାନ କରାଯାଏ । ବିଦଗ୍ଧ କବି ଓ ଆଳଙ୍କାରିକ ଅଭିମନ୍ୟୁ ସାମନ୍ତସିଂହାରଙ୍କ ଅମରକୃତୀ ହେଉଛି 'ବିଦଗ୍ଧ ଚିନ୍ତାମଣି' । ଏହି କାବ୍ୟରେ ଉପମା, ଅର୍ଥଗୌରବ ଓ ପଦଲାଳିତ୍ୟ ତିନିଗୋଟି ଗୁଣର ସମାହାର ଘଟିଛି । କାବ୍ୟାଦର୍ଶ ଓ ବୈଷ୍ଣବ ସାହିତ୍ୟର ରସତତ୍ତ୍ୱ, ପ୍ରେମତତ୍ତ୍ୱ ଓ ଭକ୍ତିତତ୍ତ୍ୱକୁ ଆଧାର କରି କାବ୍ୟଟି ରଚିତ ହୋଇଥିବାରୁ ଏହା ଭାରତର ଗୋଟିଏ ଉଚ୍ଚାଙ୍ଗ କୃଷ୍ଣକାବ୍ୟର ମର୍ଯ୍ୟାଦା ଲାଭ କରିଛି । ସେ ମଧ ପ୍ରେମକଳା, ରସବତୀ, ସୁଲକ୍ଷଣା ଓ ପ୍ରେମଚିନ୍ତାମଣି କାବ୍ୟ ରଚନା କରିଛନ୍ତି । ତାଙ୍କ ରଚନାରେ ଅଳଙ୍କାର, ରସ, ରୀତି, ଧ୍ୱନି, ବକ୍ରୋକ୍ତି ଓ ସଂଗୀତର ପ୍ରୟୋଗ ଚାତୁରୀ ଅତ୍ୟନ୍ତ ହୃଦୟସ୍ପର୍ଶୀ ହୋଇଥିବାରୁ ଏଗୁଡିକ ଓଡ଼ିଆ ଭାଷାର ମହତ୍ତ୍ୱପୂର୍ଣ୍ଣ ସୃଷ୍ଟି । କବି ବଳଦେବରଥ ଜଣେ ସଂଗୀତଜ୍ଞ, ଆଶୁକବି ଓ ବହୁଶାସ୍ତ୍ରଦର୍ଶୀ ଥିଲେ । କିଶୋରଚନ୍ଦ୍ରାନନ ଚମ୍ପୂ ତାଙ୍କର ଏକ ଉଚ୍ଚାଙ୍ଗ ରଚନା । ଏତଦ୍‌ଭିନ୍ନ ସେ ପ୍ରେମୋଦୟ ଚମ୍ପୂ, ରତ୍ନାକର ଚମ୍ପୂ, ହାସ୍ୟକଲ୍ଲୋଳ, ଚନ୍ଦ୍ରକଳା ତଥା ଅସଂଖ୍ୟ ଚଉତିଶା, ଚଉପଦୀ, ମନାସ, ମାଳଶ୍ରୀ ଓ ଭକ୍ତିଗୀତିକା ରଚନା କରି ଓଡ଼ିଆ ସାହିତ୍ୟକୁ ସମୃଦ୍ଧ କରି ଯାଇଛନ୍ତି । ତାଙ୍କ ସୃଷ୍ଟିରେ ଆବେଗର ମର୍ମସ୍ପର୍ଶୀ ଗଭୀରତା, ପ୍ରକାଶଭଙ୍ଗୀରେ ଚଟୁଳତା ଓ ଭାଷାବିନ୍ୟାସର ମୌଳିକତା ପରିଲକ୍ଷିତ ହେଉଥିବାରୁ ଏଗୁଡିକ ମହତ୍ତ୍ୱପୂର୍ଣ୍ଣ ଓଡ଼ିଆ ସାହିତ୍ୟ । ଏହି ସମୟରେ ଅନ୍ୟାନ୍ୟ ଓଡ଼ିଆ କବିଙ୍କ ମଧ୍ୟରେ ଲୋକନାଥ ବିଦ୍ୟାଧର ପଦ୍ମାବତୀ ପରିଣୟ, ରସକଳା, ବୃନ୍ଦାବନ ବିହାର, ନୀଳାଦ୍ରିମହୋଦୟ ଓ ସର୍ବାଙ୍ଗସୁନ୍ଦରୀ, ଭୂପତି ପଣ୍ଡିତ ପ୍ରେମପଞ୍ଚାମୃତ, ଚନ୍ଦ୍ରଶେଖର ଭଞ୍ଜ ପ୍ରେମମଞ୍ଜରୀ, ପୁରୁଷୋତ୍ତମ ମାନ୍ଧାତା ଶୋଭାବତୀ, ହଳଧର ପଟ୍ଟନାୟକ ଅଧ୍ୟାତ୍ମ ରାମାୟଣ, ବୃନ୍ଦାବତୀ ଦାସ୍ୟ ପୂର୍ଣ୍ଣତମ ଚନ୍ଦ୍ରୋଦୟ ବିଶ୍ୱନାଥ ଖୁଣ୍ଟିଆ 'ବିଚିତ୍ର ରାମାୟଣ, ସଦାନନ୍ଦ କବିସୂର୍ଯ୍ୟ ବ୍ରହ୍ମା ଯୁଗଳ ରସାମୃତ ଲହରୀ ପ୍ରଭୃତି ନିଶଙ୍କରାୟରାଣୀ ପଦ୍ମାବତୀ, ରଘୁନାଥ ଭଞ୍ଜ ରସଲହରୀ, ପଦ୍ମନାଭ ଶ୍ରୀଚନ୍ଦନ ଶଶୀରେଖା, ତ୍ରିବିକ୍ରମ ଭଞ୍ଜ କନକଲତା, ଯଦୁମଣି ମହାପାତ୍ର ପ୍ରବନ୍ଧ ପୂର୍ଣ୍ଣଚନ୍ଦ୍ର ପ୍ରଭୃତି ରଚନା କରିଥିଲେ । ଏଗୁଡିକ ଓଡ଼ିଆ ଭାଷାର ଗୋଟିଏ ଗୋଟିଏ ମହତ୍ତ୍ୱପୂର୍ଣ୍ଣ ସାହିତ୍ୟ । ଏହି ଯୁଗରେ ଆପଣା ଜୀବନକୁ ନରକନିକ୍ଷିପ୍ତ କରି ଅଖିଳ ବିଶ୍ୱକୁ ବେଦନାମୁକ୍ତ କରିବା କାମନାରେ ଭୀମଭୋଇ ସ୍ତୁତିଚିନ୍ତାମଣି, ଶ୍ରୁତିନିଷେଧଗୀତା, ଅଷ୍ଟକବିହାରୀ ଗୀତା, ନିର୍ବେଦ ସାଧନ, ବ୍ରହ୍ମନିରୂପଣ ଗୀତା, ପଦ୍ମକଳ୍ପ ଚଉତିଶା ମଧୁଚକ୍ର, ବ୍ରହ୍ମଚାଳକ ଓ ଭଜନମାଳା ପ୍ରଭୃତି ରଚନା କରିଥିଲେ । ତାଙ୍କର ପ୍ରତ୍ୟେକଟି କୃତୀ ଓଡ଼ିଆ ସାହିତ୍ୟର ମହତ୍ତ୍ୱପୂର୍ଣ୍ଣ ରଚନା ତଥା ଉଚ୍ଚାଙ୍ଗ ଓଡ଼ିଆ ସାହିତ୍ୟ । ଏହି ଯୁଗର ଶେଷାର୍ଦ୍ଧରେ ଜନପ୍ରିୟ କବି ବ୍ରଜନାଥ ବଡଜେନା ଅମ୍ବିକା ବିଳାସ, କେଳିକଳାନିଧି, ବିଚକ୍ଷଣା, ତ୍ରିଭୁବନ ସୁନ୍ଦରୀ, ଶ୍ୟାମରାସୋତ୍ସବ, ଗୋପୀବିଳାପ, ରାଜସଭା, ରାଜନଙ୍କୁ ଛଳୋକ୍ତି, ଦଶପୋଇ, ସମରତରଙ୍ଗ ପ୍ରଭୃତି କାବ୍ୟ ଓ ଚତୁରବିନୋଦ ନାମକ ପ୍ରଥମ ଓଡ଼ିଆ ଗଳ୍ପ ସାହିତ୍ୟ ରଚନା କରିଥିଲେ । ଓଡ଼ିଆ ଜାତିର ଏକ ଐତିହାସିକ ମହାସମର ତାଙ୍କ ସାହିତ୍ୟରେ ତରଙ୍ଗାୟିତ ହୋଇଥିବାରୁ ସେ ଏହାର ନାମ ସମର ତରଙ୍ଗ ରଖିଥିଲେ । ଏହି ଗ୍ରନ୍ଥଟି ଇଂରାଜୀରେ Warwaves ନାମରେ ଅନୁଦିତ ହୋଇ ଆନ୍ତର୍ଜାତୀୟ ପ୍ରସିଦ୍ଧି ଲାଭ କରିଅଛି । ତାଙ୍କର ପ୍ରତ୍ୟେକଟି ରଚନା ଗୋଟିଏ ଗୋଟିଏ ମହନୀୟ କୃତୀ । ଏହି ଯୁଗରେ କବି ଭକ୍ତଚରଣ ଦାସ ମଥୁରାମଙ୍ଗଳ, ମନବୋଧ ଚଉତିଶା ଓ କଳାକଳେବର ଚଉତିଶା ପ୍ରଭୃତି ରଚନା କରିଥିଲେ । ଏତଦ୍‌ଭିନ୍ନ ଅନେକ ଓଡ଼ିଆ କବି ମହତ୍ତ୍ୱପୂର୍ଣ୍ଣ ସାହିତ୍ୟ ରଚନା ପରମ୍ପରାରେ ଅଗଣିତ ଓଡ଼ିଆ ସାହିତ୍ୟ ରଚନା କରିଯାଇଛନ୍ତି । ଏହି ପରମ୍ପରା ୬୦୦ ଖ୍ରୀଷ୍ଟାବ୍ଦଠାରୁ ୧୮୫୦ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ଦୀର୍ଘ ବାରଶହ ବର୍ଷରୁ ଊର୍ଦ୍ଧ୍ୱକାଳ ଅବ୍ୟାହତ ରହିଥିଲା ।

୧୮୫୦ ଖ୍ରୀଷ୍ଟାବ୍ଦ ପରେ ଓଡ଼ିଆ ସାହିତ୍ୟରେ ଆଧୁନିକ ଯୁଗ ଆରମ୍ଭ ହେଲା । ଓଡ଼ିଶା ମାଟି, ମଣିଷ, ପ୍ରକୃତି, ଧର୍ମଧାରା, ସଂସ୍କୃତି ଓ ଇତିହାସକୁ ଆଧାର କରି ଓଡ଼ିଆ ସ୍ରଷ୍ଟାଗଣ ଅଗଣିତ ପ୍ରବନ୍ଧ, ଗଳ୍ପ, ଉପନ୍ୟାସ,

ନାଟକ, କାବ୍ୟକବିତା, ଶିଶୁ ସାହିତ୍ୟ, ଭ୍ରମଣ କାହାଣୀ ଓ ଜୀବନୀ ପ୍ରଭୃତି ରଚନା କରି ଓଡ଼ିଆ ସାହିତ୍ୟକୁ ସମୃଦ୍ଧ କରିଥିଲେ । ଏହି ଯୁଗରେ ରଚିତ ସକଳ ସାହିତ୍ୟ ମହତ୍ତ୍ୱପୂର୍ଣ୍ଣ । ସ୍ୱାଧୀନତା ପରେ ବହୁସ୍ରଷ୍ଟା ଓଡ଼ିଆ ସାହିତ୍ୟର ସକଳ ବିଭାଗରେ ଲେଖନୀ ଚାଳନା କରି ଓଡ଼ିଆ ବାଣୀ ଭଣ୍ଡାରକୁ ସମୃଦ୍ଧ କରିଛନ୍ତି, ଯାହା ଆଲୋଚନା କଲେ ଗୋଟିଏ ବିଶାଳ ଗ୍ରନ୍ଥହେବ। ସାରସ୍ୱତ ସାଧନା ଓ ମହତ୍ତ୍ୱପୂର୍ଣ୍ଣ ସାହିତ୍ୟ ରଚନା ନିମିତ୍ତ ଅନେକ ଓଡ଼ିଆ ସ୍ରଷ୍ଟା ଜ୍ଞାନପୀଠ, ମୂର୍ତ୍ତିଦେବୀ, କେନ୍ଦ୍ର ସାହିତ୍ୟ ଏକାଡେମୀ, ଓଡ଼ିଶା ସାହିତ୍ୟ ଏକାଡେମୀ, ଶାରଳା, ସାହିତ୍ୟଭାରତୀ, ବିଷୁବ ପ୍ରଭୃତି ବହୁ ପୁରସ୍କାର ଲାଭ କରିବାର ଗୌରବ ଅର୍ଜନ କରିପାରିଛନ୍ତି । ସଂକ୍ଷେପରେ ଉଲ୍ଲେଖ କଲେ, ପ୍ରାଚୀନ ଯୁଗ ଅର୍ଥାତ୍ ଷଷ୍ଠ ଶତାବ୍ଦୀଠାରୁ ଆଜିପର୍ଯ୍ୟନ୍ତ ଦୀର୍ଘ ପନ୍ଦର ଶହ ବର୍ଷ ବ୍ୟାପୀ ଓଡ଼ିଆ ଭାଷାରେ ମହତ୍ତ୍ୱପୂର୍ଣ୍ଣ ସାହିତ୍ୟ ରଚନାର ପରମ୍ପରା ଅବ୍ୟାହତ ରହିଛି । ଏହାଦ୍ୱାରା ଭାରତ ସରକାରଙ୍କ ଦ୍ୱାରା ଉଦ୍‌ଘୋଷିତ ଦ୍ୱିତୀୟ ମାନ୍ୟତା ପୂରଣ ହୋଇପାରୁଛି ।

ଭାରତ ସରକାରଙ୍କ ଦ୍ୱାରା ନିର୍ଦ୍ଧାରିତ ତୃତୀୟ ମାନ୍ୟତା ହେଉଛି 'ଶାସ୍ତ୍ରୀୟ ମାନ୍ୟତା ଦାବି କରୁଥିବା ଭାଷା ଅନ୍ୟକୌଣସି ଭାଷା ଦ୍ୱାରା ପ୍ରଭାବିତ ନହୋଇ ମୌଳିକ ସୃଷ୍ଟି ସମ୍ଭାରରେ ସମୃଦ୍ଧ ହୋଇଥିବ । ଓଡ଼ିଆ ଭାଷାରେ ଷଷ୍ଠ ଶତାବ୍ଦୀଠାରୁ ସାହିତ୍ୟ ସୃଷ୍ଟି ଆରମ୍ଭ ହୋଇଛି ବୋଲି ଉପରୋକ୍ତ ଆଲୋଚନାରେ ସୁସ୍ପଷ୍ଟ । ସେହି ସମୟରେ ଅନ୍ୟକୌଣସି ପ୍ରାନ୍ତୀୟ ଭାଷାରେ ସାହିତ୍ୟ ସୃଷ୍ଟି ହୋଇନଥିଲା । ତେଣୁ ଓଡ଼ିଆ ସ୍ରଷ୍ଟାଗଣ ଅନ୍ୟକୌଣସି ଭାଷାଦ୍ୱାରା ପ୍ରଭାବିତ ହେବାର ସମ୍ଭାବନା ନଥିଲା । ସେହି ସମୟରେ କେବଳ ସଂସ୍କୃତ ଭାଷାରେ ସାହିତ୍ୟ ସୃଷ୍ଟି ହୋଇଥିଲା । କିନ୍ତୁ ସେହି ସମୟରେ ଓଡ଼ିଆ ଭାଷାରେ ରଚିତ ଚର୍ଯ୍ୟାଗୀତି ସଂସ୍କୃତ ଭାଷାଦ୍ୱାରା ପ୍ରଭାବିତ ଓଡ଼ିଆ ସାହିତ୍ୟ ନୁହେଁ । ଅଧିକନ୍ତୁ, ଚର୍ଯ୍ୟାଗୀତି ରଚନା ହେବାପରେ ଦ୍ୱାଦଶ ଶତାବ୍ଦୀରେ ମୁନିଦତ୍ତଙ୍କ ଦ୍ୱାରା ସେଗୁଡିକ ସଂସ୍କୃତ ଭାଷାରେ ଅନୂଦିତ ହୋଇଥିଲା । ଏଥିରୁ ପ୍ରମାଣିତ ହେଉଛି, ଓଡ଼ିଆ ଭାଷାରେ ସୃଷ୍ଟ ଆଦ୍ୟ ସାହିତ୍ୟ 'ଚର୍ଯ୍ୟାଗୀତି' ଓଡ଼ିଆ ଭାଷାର ମୌଳିକ ସୃଷ୍ଟି ସମ୍ଭାର । ସୂଚନାଯୋଗ୍ୟ ଯେ, ଚର୍ଯ୍ୟାଗୀତିର ଦ୍ୱୈତାର୍ଥକ ଭାଷାରେ ପ୍ରଭାବିତ ହୋଇ ଅନ୍ୟାନ୍ୟ ପ୍ରାନ୍ତୀୟ ଭାଷାର କବିକୋବିଦବୃନ୍ଦ ସେମାନଙ୍କ ଭାଷାରେ ଏତାଦୃଶ ସାହିତ୍ୟ ସୃଷ୍ଟି କରିଥିଲେ । ଚର୍ଯ୍ୟାଗୀତି ପରେ ଓଡ଼ିଆ ଭାଷାରେ ନାଥ ସାହିତ୍ୟ ଓ ଶୈବସାହିତ୍ୟ ସୃଷ୍ଟି ହୋଇଥିଲା । ଏଗୁଡିକ ଓଡ଼ିଆ ଭାଷାର ମୌଳିକ କୃତୀ । ନାଥ ମହନ୍ତ ଓ ଶୈବାଚାର୍ଯ୍ୟ ବୃନ୍ଦ ଅନ୍ୟକୌଣସି ଭାଷାଦ୍ୱାରା ପ୍ରଭାବିତ ନହୋଇ ସ୍ୱକୀୟ ସାଧନାର ଦିବ୍ୟାନୁଭୂତିରେ ଏହିସବୁ ସାହିତ୍ୟ ରଚନା କରିଥିଲେ । ଅନ୍ୟକୌଣସି ଭାଷା ବା ସାହିତ୍ୟଦ୍ୱାରା ପ୍ରଭାବିତ ନହୋଇ ସେମାନେ ନିଜ ନିଜର ଅନୁଭୂତି ସର୍ବସାଧାରଣଙ୍କ ଅବଗତି ନିମିତ୍ତ ଏହିସବୁ ସାହିତ୍ୟରେ ପରିବେଷଣ କରିଯାଇଛନ୍ତି । ତେଣୁ ନିଃସନ୍ଦେହରେ ବ୍ୟକ୍ତ କରାଯାଇପାରେ ଯେ, ଓଡ଼ିଆ ନାଥ ସାହିତ୍ୟ ଓ ଶୈବ ସାହିତ୍ୟ ହେଉଛି ଓଡ଼ିଆ ଭାଷାର ମୌଳିକ ସୃଷ୍ଟି ସମ୍ଭାର । ତତ୍‌ପରବର୍ତ୍ତୀ କାଳରେ ମାଟିର ମହାକବି ସାରଳା ଦାସ ଓଡ଼ିଆ ମହାଭାରତ ରଚନା କରିଥିଲେ । ଓଡ଼ିଆ ଭାଷାର ଏହି ବିଶାଳଗ୍ରନ୍ଥ ସଂସ୍କୃତ ମହାଭାରତର ଅନୁବାଦ ନୁହେଁ । ଏହା ସାରଳା ଦାସଙ୍କ ମୌଳିକ ସୃଷ୍ଟି ବୋଲି ଦେଶୀବିଦେଶୀ ସକଳ ଗବେଷକଙ୍କ ଦ୍ୱାରା ସ୍ୱୀକୃତ । ଏହି ପରମଗ୍ରନ୍ଥରେ ଓଡ଼ିଶାର ସାମାଜିକ, ସାଂସ୍କୃତିକ, ସାମରିକ, ରାଜନୈତିକ ଚିତ୍ର ସ୍ଥାନିତ ହୋଇଥିବାରୁ ଏହାକୁ ଓଡ଼ିଆ ଜାତୀୟ ଜୀବନର ବେଦ କୁହାଯାଏ । ମୂଳ ସଂସ୍କୃତ ମହାଭାରତଠାରୁ ଏହା ବହୁଗୁଣରେ ବଡ ଏବଂ ସାରଳାଦାସ ବହୁ ନିଜସ୍ୱ କଳ୍ପିତ କାହାଣୀ ସଂଯୋଜନା କରି ଅଗଣିତ ଓଡ଼ିଆ ପାଠକଙ୍କ ନିକଟରେ ନିତ୍ୟନୂତନ ରୂପରେ ଏହାକୁ ପରିବେଷଣ କରିଥିଲେ । ଏଥିରୁ ସ୍ପଷ୍ଟ ପ୍ରମାଣିତ ହୁଏ, ଓଡ଼ିଆ ମହାଭାରତ ଓଡ଼ିଆ ଭାଷାର ମୌଳିକ ଗ୍ରନ୍ଥ । ଏହାପରେ ବଳରାମ ଦାସ ଓଡ଼ିଆ ରାମାୟଣ ରଚନା କଲେ ।

ସେହି ଗ୍ରନ୍ଥ ମଧ୍ୟ ମୂଳ ସଂସ୍କୃତ ରାମାୟଣର ଅନୁବାଦ ବା ଭାବାନୁବାଦ ନୁହେଁ । ମୂଳ ସଂସ୍କୃତ ରାମାୟଣରେ ପ୍ରଭୁ ଶ୍ରୀରାମଙ୍କୁ ପରଂବ୍ରହ୍ମ ସ୍ୱରୂପରେ ପ୍ରତିପାଦନ କରାଯାଇଥିବା ସ୍ଥଳେ ବଳରାମ ଦାସ ଓଡ଼ିଆ ଦାଣ୍ଡୀ ରାମାୟଣରେ ଶ୍ରୀଜଗନ୍ନାଥଙ୍କୁ ପରଂବ୍ରହ୍ମ ଏବଂ ଶ୍ରୀରାମଙ୍କୁ ତାଙ୍କର ସପ୍ତମ ଅବତାର ସ୍ୱରୂପରେ ଉପସ୍ଥାପନା କରିଛନ୍ତି । ଏହି ରାମାୟଣ ଦାଣ୍ଡୀବୃତ୍ତରେ ରଚିତ ହୋଇଥିବାରୁ ଦାଣ୍ଡୀ ରାମାୟଣ ତଥା ଶ୍ରୀଜଗନ୍ନାଥ ବା ଜଗମୋହନଙ୍କୁ ଉପଲକ୍ଷ୍ୟ କରି ରଚନା କରାଯାଇଥିବାରୁ ଜଗମୋହନ ରାମାୟଣ ନାମରେ ଖ୍ୟାତ । ସାରଳା ଦାସଙ୍କ ସଦୃଶ ବଳରାମ ଦାସ ଓଡ଼ିଆ ରାମାୟଣରେ ଓଡ଼ିଶାର ସାମାଜିକ ଚଳଣି, ଆଚାର ବ୍ୟବହାର, ପୂଜାପାର୍ବଣ, ବେଶଭୂଷା, ରାଜନୀତି ପ୍ରଭୃତିକୁ ସଂଯୋଜିତ କରିଛନ୍ତି । ସେହି ସମୟ ପର୍ଯ୍ୟନ୍ତ ସଂସ୍କୃତବ୍ୟତୀତ ଅନ୍ୟକୌଣସି ପ୍ରାନ୍ତୀୟ ଆର୍ଯ୍ୟଭାଷାରେ ରାମାୟଣ ରଚନା ହୋଇନଥିଲା । ବଳରାମ ଦାସ ଓଡ଼ିଆ ଭାଷାରେ ରାମାୟଣ ରଚନା କରିବା ପରେ ଗୋସ୍ୱାମୀ ତୁଳସୀ ଦାସ ଅବଧି ଭାଷାରେ ଶ୍ରୀରାମଚରିତମାନସ, ମରାଠୀ ଭାଷାରେ ଶ୍ରୀଧର ରାମାୟଣ ଓ ବଙ୍ଗଳା ଭାଷାରେ କୃତ୍ତିବାସ ରାମାୟଣ ପ୍ରଭୃତି ରଚନା ହେଲା । ଏଥିରୁ ପ୍ରମାଣିତ ହୁଏ, ବଳରାମ ଦାସଙ୍କ କୃତ ରାମାୟଣ ଓଡ଼ିଆ ଭାଷାର ଗୋଟିଏ ମୌଳିକ ସୃଷ୍ଟି । ଓଡ଼ିଆ ମହାଭାରତ ଓ ଓଡ଼ିଆ ରାମାୟଣ ସଦୃଶ ଓଡ଼ିଆ ଭାଗବତ ମଧ୍ୟ ଓଡ଼ିଆ ଭାଷାର ଏକ ମୌଳିକ ସୃଷ୍ଟି । ଏହା ସଂସ୍କୃତ ଭାଗବତର ଅନୁବାଦ ନୁହେଁ । ମୂଳ ସଂସ୍କୃତ ଭାଗବତର ଶ୍ଳୋକସଂଖ୍ୟା ଅଠର ହଜାର ହୋଇଥିବା ସ୍ଥଳେ ଓଡ଼ିଆ ଭାଗବତର ପଦ ସଂଖ୍ୟା ଏକସ୍ତରୀ ହଜାର ସତସ୍ତରୀ । ଓଡ଼ିଆମାନେ ମୂଳ ସଂସ୍କୃତ ଭାଗବତକୁ ଗାଦୀରେ ପୂଜା ନକରି ଓଡ଼ିଆ ଭାଗବତକୁ ଗାଦୀରେ ରଖି ପୂଜା କରନ୍ତି । ଭାଗବତର ଭାଷା ହିଁ ଓଡ଼ିଆର ମାନକ ଭାଷା । ଜଗନ୍ନାଥ ଦାସ ଷୋଡଶ ଶତାବ୍ଦୀର ପ୍ରଥମ ଦଶନ୍ଧିରେ ଭାଗବତ ରଚନା କଲେ । ସେତେବେଳକୁ ଅନ୍ୟାନ୍ୟ ପ୍ରାନ୍ତୀୟ ଭାଷାରେ ଭାଗବତ ରଚନା ହୋଇନଥିଲା । ତେଣୁ ଜଗନ୍ନାଥ ଦାସ ଅନ୍ୟଭାଷା ଦ୍ୱାରା ପ୍ରଭାବିତ ହୋଇ ଓଡ଼ିଆ ଭାଗବତ ରଚନା କରିନଥିଲେ । ସ୍ୱକୀୟ ପ୍ରଜ୍ଞା ଓ ପ୍ରତିଭା ବଳରେ ଜଗଦ୍‌ଗୁରୁ ଶ୍ରୀଧର ସ୍ୱାମୀଙ୍କ ଚବିଶ ହଜାର ଶ୍ଳୋକ ବିଶିଷ୍ଟ ଭାଗବତ ଟୀକା ଭାବାର୍ଥ ଦୀପିକାର ଭାବକୁ ଆଧାର କରି ସେ ଓଡ଼ିଆରେ ଭାଗବତ ରଚନା କରିଥିଲେ । ଏହି ପରମଗ୍ରନ୍ଥ ଓଡ଼ିଆ ଭାଷାର ମୌଳିକ ସୃଷ୍ଟି । ସ୍ୱଳ୍ପକାଳ ମଧ୍ୟରେ ଓଡ଼ିଆ ଭାଗବତ ଅଗଣିତ ଓଡ଼ିଆଙ୍କର ନିତ୍ୟପୂଜନୀୟ ଗ୍ରନ୍ଥର ମର୍ଯ୍ୟାଦା ଲାଭ କଲା ଏବଂ ଭାଗବତ ପାଠ କରିବା ନିମିତ୍ତ ବିନା ବିଦ୍ୟାଳୟରେ ଲକ୍ଷ ଲକ୍ଷ ଓଡ଼ିଆ ସାକ୍ଷର ହୋଇଗଲେ । ଓଡ଼ିଆ ଭାଗବତ ଯୋଗୁଁ ଓଡ଼ିଆ ଭାଷା ଶିକ୍ଷା ନିମିତ୍ତ ଓଡ଼ିଶାର କୋଣେ ଅନୁକୋଣେ ହଜାର ହଜାର ଚାଟଶାଳୀ ସ୍ଥାପନ ହେଲା । ଓଡ଼ିଆ ଭାଷା, ସଂସ୍କୃତ ଓ ସାହିତ୍ୟକୁ ତଥା ଶିକ୍ଷା ବିକାଶରେ ଭାଗବତର ଭୂମିକା ଅନନ୍ୟ ଓ ଅନୁପମ ।

ପଞ୍ଚସଖା ଓ ତାଙ୍କର ସମସାମୟିକ ସ୍ରଷ୍ଟାଗଣ ଯେଉଁସବୁ ଓଡ଼ିଆ ସାହିତ୍ୟ ସୃଷ୍ଟି କରିଛନ୍ତି ସେଗୁଡିକ ସେମାନଙ୍କର ମୌଳିକ ସୃଷ୍ଟି । ସେମାନେ କୌଣସି ଭାଷାଦ୍ୱାରା ପ୍ରଭାବିତ ହୋଇନଥିଲେ ଅଥବା ଅନ୍ୟକୌଣସି ଭାଷାର ଶାସ୍ତ୍ରକୁ ଓଡ଼ିଆରେ ଅନୁବାଦ କରିନଥିଲେ । ସେମାନେ ସିଦ୍ଧସାଧକ ଥିଲେ ତଥା ନିଜର ଦିବ୍ୟାନୁଭୂତିକୁ ସରଳ ଭାବରେ ଓଡ଼ିଆ ଭାଷାରେ ଲେଖିଥିଲେ । ଅଚ୍ୟୁତାନନ୍ଦ ଦାସ ଜଣେ ଆଶୁକବି ଥିଲେ । ସୂକ୍ଷ୍ମଧର୍ମ ତତ୍ତ୍ୱ ତଥା ସାଧନ ପ୍ରଣାଳୀକୁ ସ୍ୱକୀୟ କବିସୁଲଭ ଶୈଳୀରେ ଅଗଣିତ ଓଡ଼ିଆ ଶାସ୍ତ୍ରରେ ସେ ପରିବେଷଣ କରିଥିଲେ । ଅନୁକରଣ ବା ଅନୁସରଣ ଦ୍ୱାରା ଦିବ୍ୟାନୁଭୂତି ଅର୍ଜନ ଓ ବିତରଣ କରାଯାଇପାରେ ନାହିଁ । ଅଗଣିତ ଓଡ଼ିଆ ଶାସ୍ତ୍ରରେ ବର୍ଣ୍ଣିତ ତାଙ୍କ ଗୂଢତଥ୍ୟ କୌଣସି ପ୍ରାନ୍ତୀୟ ଭାଷାର ସାହିତ୍ୟରେ ପରିଦୃଷ୍ଟ ହୁଏନାହିଁ । ଏହି ଦୃଷ୍ଟିକୋଣରୁ ତାଙ୍କର ସକଳ ରଚନା ଓଡ଼ିଆ ଭାଷାର ମୌଳିକ ସୃଷ୍ଟି ସମ୍ଭାର । ଯଶୋବନ୍ତ ଦାସ ଓ ଶିଶୁ ଅନନ୍ତ ଦାସ ମଧ୍ୟ ଅନ୍ୟକୌଣସି ଭାଷାରେ ପ୍ରଭାବିତ ନହୋଇ ପିଣ୍ଡବ୍ରହ୍ମାଣ୍ଡତତ୍ତ୍ୱ ଓ ଜଗନ୍ନାଥଙ୍କ ମହାନ ଓଡ଼ିଆ ଭାଷାରେ

ବ୍ୟକ୍ତ କରିଥିଲେ । ପଞ୍ଚସଖାଙ୍କ ପଦାଙ୍କ ଅନୁସରଣ କରି ଅନ୍ୟାନ୍ୟ ଓଡ଼ିଆ ସାଧକ ଓ କବିଗଣ ସ୍ୱକୀୟ ମୌଳିକ ଦୃଷ୍ଟି ଓ ଦର୍ଶନରେ ବହୁଶାସ୍ତ୍ର ଓଡ଼ିଆରେ ଲେଖିଯାଇଛନ୍ତି, ଯାହା ପୂର୍ବରୁ ଆଲୋଚିତ । ଏପରିକି ଯବନଭକ୍ତ ସାଲବେଗ ମଧ ଅନ୍ୟ ଭାଷାରେ ପ୍ରଭାବିତ ନହୋଇ ଖାଣ୍ଟି ଓଡ଼ିଆରେ ନିଜସ୍ୱ ରୀତିରେ ଭଜନଜଣାଣ ଲେଖିଥିଲେ । ପଞ୍ଚସଖା ଯୁଗରେ ଯେଉଁ କେତେଜଣ ଓଡ଼ିଆ କବି ଓଡ଼ିଆ ଭାଷାରେ କାବ୍ୟ ରଚନା କରିଥିଲେ । ସେମାନେ ଅନ୍ୟ ଭାଷାରେ ପ୍ରଭାବିତ ନହୋଇ ଓଡ଼ିଆ ଛନ୍ଦ ଓ ରାଗରାଗିଣୀରେ ଲେଖିଥିଲେ । ଏହି ସମୟରେ ଦନାଇଦାସ ରଚନା କରିଥିବା ଗୋପୀଭାଷା, ମାର୍କଣ୍ଡଦାସଙ୍କ କେଶବକୋଇଲି ଓ ହରିଦାସଙ୍କ ଚଉତିଶା ପ୍ରଭୃତି ଅନ୍ୟ ଭାଷା ପ୍ରଭାବରେ ରଚିତ ନୁହେଁ, ଅଧିକନ୍ତୁ ଓଡ଼ିଆ ଭକ୍ତିଧାରାର ପାରମ୍ପରିକ ପରିଧିରେ ଏଗୁଡିକ ଆତ୍ମିକ ସନନ୍ଦ ଭାବରେ ପ୍ରତିଭାତ । ସେମାନେ ବୋଲି, ପୋଇ ଓ ପଦିଆ ପ୍ରଭୃତି ରଚନା କରିଥିଲେ, ଯାହା ଓଡ଼ିଆ ଭାଷାର ନିଜସ୍ୱ ଶୈଳୀ । ଏଥିରୁ ପ୍ରମାଣିତ ହୁଏ, ପଞ୍ଚସଖା ଯୁଗର ସକଳ ସୃଷ୍ଟି ଓଡ଼ିଆ ଭାଷାର ମୌଳିକ ସୃଷ୍ଟିସମ୍ଭାର ।

ଓଡ଼ିଆ ସାହିତ୍ୟର କାବ୍ୟ ଯୁଗର ସ୍ରଷ୍ଟାଗଣ ଅର୍ଥାତ୍ ଦୀନକୃଷ୍ଣ, ଉପେନ୍ଦ୍ର ଭଞ୍ଜ, ଅଭିମନ୍ୟୁ ଓ ଅନ୍ୟାନ୍ୟ କବିକୋବିଦ ବୃନ୍ଦ ଯେଉଁସବୁ ଓଡ଼ିଆ କାବ୍ୟକବିତା ରଚନା କରିଛନ୍ତି ସେଗୁଡିକ ସେମାନଙ୍କର ମୌଳିକ କୃତୀ । କୌଣସି ଭାଷା ବା ସାହିତ୍ୟ ଦ୍ୱାରା ପ୍ରଭାବିତ ନହୋଇ ସେମାନେ ଓଡ଼ିଆ ଛନ୍ଦ, ଅଳଙ୍କାର, ରାଗରାଗିଣୀ, ଶୈଳୀ ପ୍ରଭୃତି ପ୍ରୟୋଗକରି ସେମାନେ ଏଗୁଡିକ ରଚନା କରିଛନ୍ତି । ଅଧିକନ୍ତୁ, ଉପେନ୍ଦ୍ର ଭଞ୍ଜ ସ୍ୱକୀୟ ରଚନା ଦ୍ୱାରା ଓଡ଼ିଆ ଭାଷାକୁ ସଂସ୍କୃତ ସମ ଶୁଦ୍ଧ ଓ ଶୀଳ କରିବାକୁ ମହତ ପ୍ରୟାସ କରିଥିଲେ । ସେହି ସମୟରେ ତାଙ୍କ ସମକକ୍ଷ ଅନ୍ୟ କୌଣସି କବି ପ୍ରାନ୍ତୀୟ ଭାଷାରେ ନଥିବାରୁ ସେ ଅନ୍ୟକାହାଦ୍ୱାରା ପ୍ରଭାବିତ ହେବାର ସମ୍ଭାବନା ନଥିଲା, ବରଂ ତାଙ୍କ ଦ୍ୱାରା ଅନ୍ୟ ଭାଷାର କବି ପ୍ରଭାବିତ ହୋଇଥିଲେ । ଗବେଷକଙ୍କ ମତରେ, ପ୍ରାନ୍ତୀୟ ହିନ୍ଦୀ, ବଙ୍ଗଳା, ଆସାମୀ, ମୈଥିଳୀ ଓ ତେଲଗୁ ସାହିତ୍ୟରେ କୋଟିବ୍ରହ୍ମାଣ୍ଡ ସୁନ୍ଦରୀ, ଲାବଣ୍ୟବତୀ ଓ ବୈଦେହୀଶ ବିଳାସ ପରି କାବ୍ୟ ଦୁର୍ଲ୍ଲଭ । ବଳଦେବଙ୍କ ଚମ୍ପୂ ଓ ମନାସ ପ୍ରଭୃତି ଓଡ଼ିଆ ଭାଷାର ନିଜସ୍ୱ । କାବ୍ୟ ଯୁଗର ଅନ୍ୟାନ୍ୟ ଓଡ଼ିଆ ସ୍ରଷ୍ଟାଙ୍କ ରଚନାରେ ମଧ ଓଡ଼ିଆ ଶୈଳୀ ପରିଦୃଷ୍ଟ । ଏହି ଯୁଗର ବ୍ରଜନାଥ ବଡଜେନା ଓ ଭୀମଭୋଇଙ୍କ ଓଡ଼ିଆ ରଚନାର ବିକଳ୍ପ ନାହିଁ । ବଡଜେନା ସମରତରଙ୍ଗରେ ସଂସ୍କୃତ ଗ୍ରନ୍ଥରେ ଥିବା ଯୁଦ୍ଧବର୍ଣ୍ଣନା ଶୈଳୀ ଅନୁକରଣ ନକରି ଓଡ଼ିଆବୀରଙ୍କ ଯୁଦ୍ଧଶୈଳୀ ପ୍ରତ୍ୟକ୍ଷଦର୍ଶୀ ବିବରଣୀ ଭାବରେ ପ୍ରଦାନ କରିଛନ୍ତି । ଭୀମଭୋଇ ନିର୍ଗୁଣ ତତ୍ତ୍ୱକୁ ଯେପରି ସରଳ, ପ୍ରାଞ୍ଜଳ ଓ ହୃଦୟସ୍ପର୍ଶୀ ଧାରାରେ ଓଡ଼ିଆ ଭାଷାରେ ବ୍ୟକ୍ତ କରିଛନ୍ତି, ଅଦ୍ୟାବଧି କୌଣସି ପ୍ରାନ୍ତୀୟ ଭାଷାରେ ସେପରି ସାହିତ୍ୟ ସୃଷ୍ଟି ହୋଇପାରିନାହିଁ । ବ୍ରଜନାଥ ବଡଜେନା ଓଡ଼ିଆ ଭାଷାର ପ୍ରଥମଗଳ୍ପ ଚତୁରବିନୋଦରେ ସଂସ୍କୃତ ଶୈଳୀ ଅନୁକରଣ ନକରି ନିଜର ଓଡ଼ିଆ ଶୈଳୀ ପ୍ରୟୋଗ କରିଛନ୍ତି । ସେ କଥା ସାହିତ୍ୟର ସ୍ୱତନ୍ତ୍ର ସଂଜ୍ଞା ନିରୂପଣ କରିଛନ୍ତି । ପରବର୍ତ୍ତୀ ଓଡ଼ିଆ ଗଳ୍ପ ଲେଖକ ବୃନ୍ଦ ବଡଜେନାଙ୍କ ଶୈଳୀକୁ ଅନୁସରଣ କରି ଓଡ଼ିଆ ଗଳ୍ପର ପରିଧିକ ବ୍ୟାପକ କରିପାରିବେ । ଭକ୍ତଚରଣ– କୌଣସି ସଂସ୍କୃତ ବାକ୍ୟକୁ ଅନୁସରଣ ନକରି ସମ୍ପୂର୍ଣ୍ଣ ଓଡ଼ିଆ ଶୈଳୀରେ ମଥୁରାମଙ୍ଗଳ ଓ ଚଉତିଶା ପ୍ରଭୃତି ରଚନା କରିଛନ୍ତି । କାବ୍ୟଯୁଗର ଅନ୍ୟାନ୍ୟ କବିକୋବିଦ ବୃନ୍ଦ ଓଡ଼ିଆ କାବ୍ୟକବିତାରେ ଏପରି ଶୈଳୀ ପ୍ରୟୋଗ କରିଛନ୍ତି, ଯାହା ଅନ୍ୟ ଭାଷାରେ ନାହିଁ । ଏହି ପୁରୋଦୃଷ୍ଟିରେ କାବ୍ୟଯୁଗର ସକଳ ସୃଷ୍ଟି ଓଡ଼ିଆ ଭାଷାର ମୌଳିକ ସୃଷ୍ଟି ସମ୍ଭାର ।

ଊନବିଂଶ ଶତାବ୍ଦୀର ମଧଭାଗରୁ ଆଧୁନିକ ଓଡ଼ିଆ ସାହିତ୍ୟ ସୃଷ୍ଟି ହୋଇଥିବା ଏହି ସମୟରୁ ଓଡ଼ିଶାରେ ପାଶ୍ଚାତ୍ୟ ଶିକ୍ଷାର ପ୍ରଚଳନ ହେଲା । ଗତାନୁଗତିକ କାବ୍ୟଧାରା ବଦଳରେ ଓଡ଼ିଆ ସ୍ରଷ୍ଟାଗଣ ପରମ୍ପରାର

ପରିଧି ଭିତରେ ଆତ୍ମିକ ସନନ୍ଦ ଭାବରେ ପ୍ରତିଭାତ ହୋଇ ସାରସ୍ୱତ ଚିନ୍ତା ଓ ଚେତନାରେ ନବୀନ ସାହିତ୍ୟ ସୃଷ୍ଟିରେ ମନୋନିବେଶ କରିଥିଲେ । ପରେ ପରେ ୧୮୬୫-୬୬ର ନଅଙ୍କ ଦୁର୍ଭିକ୍ଷରେ ଅଣ୍ଟାଭାଙ୍ଗି ପଡିଥିବା ଓଡ଼ିଆ ଜାତିର ଆତ୍ମପରିଚୟ ଲୁପ୍ତ କରିବାକୁ ଅର୍ଥାତ୍ ଓଡ଼ିଆ ଭାଷା ବିଲୋପ କରିବାକୁ ଷଡଯନ୍ତ୍ର କରାଯାଇଥିଲା । ଫଳରେ ସମଗ୍ର ଓଡ଼ିଆ ଭାଷାଭାଷୀ ଅଞ୍ଚଳରେ ଜାତୀୟଚେତନା ଜାଗି ଉଠିଥିଲା । ଏହି ପରିପ୍ରେକ୍ଷୀରେ ବୁଧ, ଜ୍ଞାନୀ ଓ ପଣ୍ଡିତ ଗୋଷ୍ଠୀଙ୍କ ଭିତରେ ସୀମାବଦ୍ଧ ଥିବା ସାହିତ୍ୟ ସାର୍ବଜନୀନ ସ୍ୱରୂପ ଗ୍ରହଣ କରିଥିଲା ନବ୍ୟଚେତନାବାଦୀ ସ୍ରଷ୍ଟାଙ୍କର ଲେଖନୀରେ । ସେମାନେ କୌଣସି ଭାଷା ବା ସାହିତ୍ୟ ଦ୍ୱାରା ପ୍ରଭାବିତ ନହୋଇ ଓଡ଼ିଶାର ମାଟି, ମଣିଷ ପ୍ରକୃତି, ଜୀବନଯାତ୍ରା, ଧର୍ମଧାରାକୁ ଆଧାର କରି ସାହିତ୍ୟ ସୃଷ୍ଟିକଲେ, ଯାହା ଲକ୍ଷ ଲକ୍ଷ ସାକ୍ଷର ନିରକ୍ଷର ଓଡ଼ିଆଙ୍କ ପ୍ରାଣକୁ ସ୍ପର୍ଶ କରିଥିଲା । ଓଡ଼ିଆ ସାହିତ୍ୟ ଓଡ଼ିଆ ସମାଜ ସହିତ ଅଙ୍ଗାଙ୍ଗୀଭାବେ ଜଡିତ ହୋଇ ଭାଷା, ଜାତୀୟତା, ସମାଜ ସଂସ୍କାର ଓ ବିଶ୍ୱାତ୍ମଚେତନାରେ ରସାଣିତ ହେଲା ପ୍ରତ୍ୟେକ ସ୍ରଷ୍ଟା ଓ ଅଗଣିତ ପାଠକ ମାତୃଭୂମି, ମାତୃଭାଷା, ଜାତୀୟ ଐତିହ୍ୟ, ଓଡ଼ିଆ ସଂସ୍କୃତିକୁ ଶ୍ରେୟ ମଣିଲେ । ସୂଚନାଯୋଗ୍ୟ ଯେ, ସେହି ସମୟରେ ଭାଷାଭିତ୍ତିକ ପ୍ରଦେଶ ଗଠନର ପ୍ରଥମ ଦାବି ଓଡ଼ିଶାରୁ ଆରମ୍ଭ ହୋଇଥିଲା ଏବଂ ଓଡ଼ିଆଙ୍କ ଦୀର୍ଘକାଳ ସଂଗ୍ରାମ ପରେ ୧୯୩୬ରେ ଓଡ଼ିଶା ଭାରତର ପ୍ରଥମ ଭାଷାଭିତ୍ତିକ ପ୍ରଦେଶର ମାନ୍ୟତା ଲାଭ କଲା । ଏହି ଦୃଷ୍ଟିକୋଣରୁ ଓଡ଼ିଆ ସାହିତ୍ୟରେ ସ୍ୱତଃ ନବୋଦୟ ଘଟିଥିଲା । ଏହା କୌଣସି ଭାଷା ବା ସାହିତ୍ୟର ପ୍ରଭାବରୁ ନଘଟି ଓଡ଼ିଆ ସ୍ୱାଭିମାନରୁ ଜନ୍ମ ନେଇଥିଲା । ଓଡ଼ିଆ ସାହିତ୍ୟର ଧାରା ସ୍ୱାଭାବିକ ଭାବରେ ବଦଳି ଯାଇ ନୂତନ ରୂପ ଧାରଣ କଲା । ସାହିତ୍ୟରେ ପାରମ୍ପରିକ ଭାଷାଶୈଳୀ ପରିବର୍ତ୍ତିତ ହୋଇଗଲା । ଓଡ଼ିଆ ସାହିତ୍ୟ, ପ୍ରବନ୍ଧ, ନାଟକ, କାବ୍ୟ, କବିତା, ଗଳ୍ପ, ଉପନ୍ୟାସ, ଗୀତ, ସମାଲୋଚନା ନାନାଦି ବର୍ଣ୍ଣରେ ଉଦ୍ଭାସିତ ହେଲା । ରାଧାନାଥ, ଫକୀରମୋହନ ଓ ମଧୁସୂଦନ ଏହାର ସୂତ୍ରଧର ହେଲେ ହେଁ ଅଗଣିତ ସ୍ରଷ୍ଟା ଲେଖନୀ ଚାଳନା କରି ଓଡ଼ିଆ ସାହିତ୍ୟର ଅଙ୍ଗ ଓ ଆତ୍ମାରେ ବିରାଟ ପରିବର୍ତ୍ତନର ସୂତ୍ରପାତ ଘଟାଇଥିଲେ, ଯାହା ପୂର୍ବରୁ ଆଲୋଚିତ । ବିଭିନ୍ନ ପତ୍ରପତ୍ରିକା ପ୍ରକାଶିତ ହୋଇ ଓଡ଼ିଆ ସାହିତ୍ୟର ପ୍ରଚାର ଓ ପ୍ରସାର ବ୍ୟାପକ ହେବା ଫଳରେ ସର୍ବତ୍ର ସାହିତ୍ୟର ପ୍ରବେଶ ଘଟିଲା ତଥା ଅନେକ ନୂତନ ସ୍ରଷ୍ଟା ଓ ଅସଂଖ୍ୟ ପାଠକ ସୃଷ୍ଟି ହେଲେ । ବ୍ୟାପକ ଅନୁବାଦ ସାହିତ୍ୟ ସୃଷ୍ଟି ହେବା ଫଳରେ ବିଶ୍ୱ ସାହିତ୍ୟ ସହିତ ଓଡ଼ିଆ ସାହିତ୍ୟର ଘନିଷ୍ଠ ସମ୍ପର୍କ ସ୍ଥାପନା ହେଲା । ସାହିତ୍ୟରେ ସାମାଜିକ ଚେତନାର ସ୍ୱର ଶାଣିତ ହେବା ଫଳରେ ସମାଜରେ ବ୍ୟାପକ ସଂସ୍କାର ଘଟି ଚେତନାର ସ୍ଫୁରଣ ଘଟିଥିଲା । ସାରସ୍ୱତ ଚେତନାର କ୍ରମବିକାଶ ଧାରାରେ ସତ୍ୟବାଦୀ ଗୋଷ୍ଠୀ, ସବୁଜଗୋଷ୍ଠୀ, ପ୍ରଗତିବାଦୀ ଗୋଷ୍ଠୀ ପ୍ରଭୃତି ପ୍ରତିଭାତ ହୋଇଥିଲେ ହେଁ ବସ୍ତୁତଃ ଏହା ଥିଲା ଆଧୁନିକ ଓଡ଼ିଆ ସାହିତ୍ୟର ଆତ୍ମିକ ପରିପ୍ରକାଶ । ଏଥିନିମିତ୍ତ ଓଡ଼ିଆ ସ୍ରଷ୍ଟାଗଣ କୌଣସି ଜାତି, ଗୋଷ୍ଠୀ, ଭାଷା ବା ସଂସ୍କୃତି ଦ୍ୱାରା ପ୍ରଭାବିତ ହୋଇନଥିଲେ, ବରଂ ସାମାଜିକ ପ୍ରତିବଦ୍ଧତାରେ ଲେଖନୀ ଚାଳନା କରିଥିଲେ । ସୃଷ୍ଟି ପ୍ରକ୍ରିୟା ଐଶ୍ୱରୀୟ, ଅନୁକରଣୀୟ ନୁହେଁ । ଜାତି ଓ ସଂସ୍କୃତିର ପୁନଃନିର୍ମାଣ ନିମିତ୍ତ ଓଡିଆ ସ୍ରଷ୍ଟାଗଣ ଯୁଗୋପଯୋଗୀ ସାହିତ୍ୟ ସୃଷ୍ଟି କଲେ । ବିଂଶ ଶତାବ୍ଦୀର ମଧ୍ୟଭାଗରୁ ସ୍ୱାଧୀନତାର ସ୍ପର୍ଶରେ ସାହିତ୍ୟରେ ମୁକ୍ତଚିନ୍ତନ ପ୍ରତିଭାତ ହେଲା । ଅଗଣିତ ନୂଆ ନୂଆ ଲେଖକ ଲେଖନୀ ଚାଳନା କରି ଏହି ଚେତନାକୁ ବ୍ୟାପକ କଲେ । କ୍ରମଶଃ ବୌଦ୍ଧିକତା ଓ ପ୍ରଜ୍ଞା ଓଡ଼ିଆ ସାହିତ୍ୟର ଧ୍ୟେୟ ହେଲା । ବ୍ୟକ୍ତିଗତ, ପାରିବାରିକ ଓ ସାମାଜିକ ପ୍ରତ୍ୟେକଟି ଚିତ୍ର ସାହିତ୍ୟରେ ପ୍ରତିଫଳିତ ହୋଇ ସାହିତ୍ୟ ସାମାଜିକ ଚେତନାର ଉତ୍ତରଣ ସୁରଭିତ ହେଲା । ପାଠକୀୟରୁଚିକୁ ଆଖି ଆଗରେ ରଖି ଅନେକ ଓଡ଼ିଆ ସ୍ରଷ୍ଟା ଯୁଗୋପଯୋଗୀ

ଓ ଚେତନାଶୀଳ ସାହିତ୍ୟ ସୃଷ୍ଟି କଲେ । ଏହି କଳାକୌଶଳ ସ୍ୱାଭାବିକ ଭାବରେ ସ୍ରଷ୍ଟାଙ୍କ ହୃଦୟରେ ଜାଗ୍ରତ ହୋଇଥିଲା, କୌଣସି ଭାଷା ବା ସାହିତ୍ୟ ପ୍ରଭାବରେ ନୁହେଁ । ପ୍ରତ୍ୟେକ ଓଡ଼ିଆ ସ୍ରଷ୍ଟା ପରିସ୍ଥିତି ଓ ପରିବେଶର ସରହଦରୁ ପ୍ରକଟିତ ହୋଇ ପରଂପରାର ପରିଧିରେ ଲେଖନୀ ଚାଳନା କରିଥିଲେ । ତେଣୁ ଓଡ଼ିଆ ସାହିତ୍ୟର ବିକାଶର ଧାରାରେ କୌଣସି ଦୁର୍ଘଟଣା ଘଟି ନଥିଲା । ପରଂପରାର ପରିଧି ବାହାରକୁ ଯାଇ ଅନ୍ୟ ଭାଷା ସାହିତ୍ୟକୁ ଅନୁକରଣ କରିଥିଲେ ଦୁର୍ଘଟଣା ଘଟିଥାନ୍ତା, ଅନ୍ୟଜାତି, ଭାଷା ବା ସାହିତ୍ୟ ଦ୍ୱାରା ପ୍ରଭାବିତ ନହୋଇ ଓଡ଼ିଆ ସ୍ରଷ୍ଟାଗଣ ସ୍ୱାଭାବିକ ଭାବରେ ଲେଖନୀ ଚାଳନା କରିଥିଲେ ତଥା ସ୍ୱକୀୟ ସାରସ୍ୱତ କଳାକୌଶଳରେ ଓଡ଼ିଆ ସାହିତ୍ୟ ଋଦ୍ଧିମନ୍ତ ଓ ମର୍ଯ୍ୟାଦାବନ୍ତ କରି ପାରିଥିଲେ । ସ୍ୱାଧୀନତା ପରଠାରୁ ଅଦ୍ୟାବଧି ସେହି ଧାରା ଅବ୍ୟାହତ ରହିଛି । ଅନ୍ୟ ଭାଷାରେ ଉଲ୍ଲେଖ କଲେ, ଓଡ଼ିଆ ସାହିତ୍ୟର ଗତି, ପ୍ରଗତି ଓ ଉନ୍ନତି ସବୁ କିଛି ଓଡ଼ିଆ ସ୍ରଷ୍ଟାଙ୍କ ମୌଳିକତା, ବାସ୍ତବତା ଏବଂ ସାମାଜିକ ପ୍ରତିବଦ୍ଧତା । ଏହି ଦୃଷ୍ଟିକୋଣୁ ବ୍ୟକ୍ତ କରାଯାଇପାରେ ଯେ, ଊନବିଂଶ ଶତାବ୍ଦୀର ମଧ୍ୟଭାଗରୁ ଆଜି ପର୍ଯ୍ୟନ୍ତ ଓଡ଼ିଆ ଭାଷାରେ ଯେଉଁ ବିଶାଳ ସାହିତ୍ୟ ଭଣ୍ଡାର ସୃଷ୍ଟି ହୋଇଛି ତାହା ଅନ୍ୟକୌଣସି ଭାଷାର ପ୍ରଭାବ ନୁହେଁ, ଓଡ଼ିଆ ଭାଷାର ମୌଳିକ ସୃଷ୍ଟିସମ୍ଭାର । ଭାରତ ସରକାର ନିର୍ଦ୍ଧାରଣ କରିଥିବା ତୃତୀୟ ମାନ୍ୟତା ଅନୁଯାୟୀ ବିଶ୍ଳେଷଣ କଲେ ପ୍ରମାଣିତ ହେଉଛି, ଓଡ଼ିଆ ଭାଷାରେ ସକଳ ସୃଷ୍ଟି ସମ୍ଭାର ଓଡ଼ିଆ ସ୍ରଷ୍ଟାଙ୍କ ମୌଳିକ ସର୍ଜନା, କୌଣସି ଭାଷାର ପ୍ରଭାବରେ ସୃଷ୍ଟି ହୋଇନାହିଁ । ଓଡ଼ିଆ ଭାଷା ଏକ ଆହରଣଶୀଳ ଭାଷା ହୋଇଥିବାରୁ ବହୁ ଭାଷାର ବିଭବକୁ ନିଜର କରି ନେଇଛି, କିନ୍ତୁ କୌଣସି ଭାଷାକୁ ଅନୁକରଣ କରିନାହିଁ । 'ସାହିତ୍ୟରେ ଆଧୁନିକତା ଏକ ଅନୁକରଣ ସର୍ବସ୍ୱ କଳା ନୁହେଁ' । ଓଡ଼ିଆ ସାହିତ୍ୟର ବିକାଶଧାରାରେ ଏହା ପ୍ରମାଣିତ । ଓଡ଼ିଆ ସାହିତ୍ୟ ସୃଷ୍ଟିକାଳରୁ ସ୍ୱକୀୟ ସ୍ୱାଭାବିକ କ୍ରମବିକାଶ ଧାରାରେ ଯୁଗୋପଯୋଗୀ ପରିବର୍ତ୍ତିତ ସ୍ୱରୂପ ଧାରଣପୂର୍ବକ ଏକବିଂଶ ଶତାବ୍ଦୀରେ ଉପଗତ ଏବଂ ଏହି ବିକଶିତ ଧାରାରେ ଓଡ଼ିଆ ଭାଷା କୌଣସି ଭାଷାଦ୍ୱାରା ପ୍ରଭାବିତ ନହୋଇ ସରଳ, ସୁବୋଧ ଓ ରସୋତ୍ତୀର୍ଣ୍ଣ ହୋଇ ଭାରତ ସରକାରଙ୍କ ନିର୍ଦ୍ଧାରିତ ଶାସ୍ତ୍ରୀୟ ଭାଷାର ତୃତୀୟ ମାନ୍ୟତା ପୂରଣ କରିପାରିଛି ।

ଶାସ୍ତ୍ରୀୟ ଭାଷା ନିମିତ୍ତ ଭାରତ ସରକାର ନିର୍ଦ୍ଧାରଣ କରିଥିବା ଚତୁର୍ଥ ମାନ୍ୟତା ହେଉଛି, 'ଶାସ୍ତ୍ରୀୟ ମାନ୍ୟତା ଦାବି କରୁଥିବା ଭାଷାର ପ୍ରାଚୀନ ଓ ଆଧୁନିକ ରୂପମଧ୍ୟରେ ଅବିଚ୍ଛିନ୍ନ ସମ୍ପର୍କ ନଥାଇପାରେ ।' ଶାସ୍ତ୍ରୀୟ ଭାଷା ସ୍ଥିତିଶୀଳ ନୁହେଁ, ଗତିଶୀଳ । ଏକ ସ୍ୱଚ୍ଛନୀରା ନଦୀ ନିରବିଚ୍ଛିନ୍ନ ପ୍ରବାହ ଯୋଗୁଁ ସ୍ୱକୀୟ ଜଳଧାରାକୁ ସ୍ୱଚ୍ଛ ରଖେ ଏବଂ ତାହାର ଧାରା ଯେପରି ଅଖଣ୍ଡ ତଥା ଗତିପଥ ବିଭିନ୍ନ, ଭାଷା ସେହିପରି ବିଭିନ୍ନ ସ୍ଥାନରେ ଓ କାଳରେ ନିଜର ରୂପ । ଭାଷାର ପରିବର୍ତ୍ତନ ମନ୍ଥର ହୋଇଥିବାରୁ ଏହାକୁ ବ୍ୟବହାର କରୁଥିବା ଭାଷାଭାଷୀ ଏହି ପରିବର୍ତ୍ତନକୁ ଅନୁଭବ କରିପାରନ୍ତି ନାହିଁ । ସେମାନଙ୍କ ଅଜ୍ଞାତରେ ଭାଷାର ପରିବର୍ତ୍ତନ ହୋଇଥାଏ, ଅବଶ୍ୟ କେତେକ କ୍ଷେତ୍ରରେ ସେମାନଙ୍କ ଜ୍ଞାତସାରରେ ଭାଷାର ପରିବର୍ତ୍ତନ ଘଟିଥାଏ । ଓଡ଼ିଆ ଭାଷାରେ ସେଇୟାହିଁ ଘଟିଛି । ଓଡ଼ିଆ ଭାଷା ପରିବର୍ତ୍ତନ ଦ୍ୱାରା କ୍ରମବର୍ଦ୍ଧିଷ୍ଣୁ ଓ କ୍ରମସମୃଦ୍ଧ ହୋଇ ବିକଶିତ ହୋଇଛି । ଏକ ନଦୀ ସଦୃଶ ଓଡ଼ିଆ ଭାଷାର ଦୁଇହଜାରରୁ ଅଧିକ କାଳର ପ୍ରବାହ ରହିଛି ଏବଂ ଏହି ଭାଷା ତାର ଗତିପଥରେ ବହୁ ପରିବର୍ତ୍ତନର ସମ୍ମୁଖୀନ ହୋଇଛି । ଏହି ପରିବର୍ତ୍ତନ ଦ୍ୱାରା ଓଡ଼ିଆ ଭାଷାର ପ୍ରାଚୀନ ଓ ଆଧୁନିକ ରୂପ ମଧ୍ୟରେ ଅବିଚ୍ଛିନ୍ନ ସମ୍ପର୍କ ରହିପାରିନାହିଁ । ଏହା ପ୍ରତ୍ୟେକ ଉତ୍କୃଷ୍ଟ ବା ଶାସ୍ତ୍ରୀୟ ଭାଷାର ଲକ୍ଷଣ । ଏହି ପୁରୋଦୃଷ୍ଟିରୁ ଭାରତ ସରକାର ଭାଷାର ଶାସ୍ତ୍ରୀୟତା ନିରୂପଣ ନିମିତ୍ତ ଭାଷାର ପ୍ରାଚୀନ ଓ ଆଧୁନିକ ରୂପ ମଧ୍ୟରେ ଅବିଚ୍ଛିନ୍ନ ସମ୍ପର୍କ ନରହିପାରେ ବୋଲି ମାନ ନିର୍ଦ୍ଧାରଣ କରିଛନ୍ତି ।

ଭାଷାର ପରିବର୍ତ୍ତନକୁ ଧ୍ୱନି ପରିବର୍ତ୍ତନ, ରୂପ ପରିବର୍ତ୍ତନ ଓ ଅର୍ଥ ପରିବର୍ତ୍ତନ ତିନିଗୋଟି ପ୍ରକରଣରେ ବିଭକ୍ତ କରାଯାଇଛି । ଧ୍ୱନି ହିଁ ଭାଷାର କଥିତ ରୂପ, ଏହି ଧ୍ୱନିର ବର୍ଣ୍ଣବିନ୍ୟାସ ଓ ବାକ୍ୟବିନ୍ୟାସର ପଦ୍ଧତି ହେଉଛି ରୂପ ଏବଂ ରୂପ ମଧ୍ୟରେ ଥିବା ଶବ୍ଦର ଭାବ ହେଉଛି ଅର୍ଥ । ଧ୍ୱନି ପରିବର୍ତ୍ତନ ହେଲେ ଭାଷାର କଥିତ ବା ଉଚ୍ଚାରିତ ରୂପର ପରିବର୍ତ୍ତନ ଘଟିଥାଏ, ରୂପ ପରିବର୍ତ୍ତନ ଘଟିଲେ ଭାଷାର ଆଙ୍ଗିକ ପରିବର୍ତ୍ତନ ଘଟିଥାଏ ତଥା ଅର୍ଥ ପରିବର୍ତ୍ତନ ଯୋଗୁଁ ଭାଷାର ତାତ୍ପର୍ଯ୍ୟ ମଧ୍ୟ ବଦଳିଯାଏ । ଓଡ଼ିଆ ଭାଷାର ପ୍ରାଚୀନ ଓ ଆଧୁନିକ ରୂପର ସମ୍ପର୍କ ବିଶ୍ଳେଷଣରୁ ଜଣାଯାଏ, ଧ୍ୱନିଲୋପ, ଧ୍ୱନିଆଗମ ଧ୍ୱନି ବିପର୍ଯ୍ୟୟ, ସମୀଭବନ, ବିଷମୀ ଭବନ, ତାଲବୀ ଭବନ ଓ ନାସିକଇ ଭବନ ଯୋଗୁଁ ଓଡ଼ିଆ ଭାଷାରେ ବହୁ ପରିବର୍ତ୍ତନ ପରିଦୃଷ୍ଟ । ଫଳରେ ପ୍ରାଚୀନ ଓ ଆଧୁନିକ ରୂପ ମଧ୍ୟରେ ଅବିଚ୍ଛିନ୍ନ ସମ୍ପର୍କ ରହିପାରିନାହିଁ । ଉଦାହରଣ ସ୍ୱରୂପ, ଧ୍ୱନିଲୋପ ଯୋଗୁଁ 'ବାପା'କୁ 'ବାଆ' ଓ ମାଆକୁ 'ମା', ଧ୍ୱନି ଆଗମ ଯୋଗୁଁ ସ୍କୁଲକୁ ଇସ୍କୁଲ, ଧ୍ୱନିବିପର୍ଯ୍ୟୟ ଯୋଗୁଁ ରିକ୍ସାକୁ ରିସ୍କା, ସମୀଭବନ ଯୋଗୁଁ ଅନସୂୟାକୁ ଅନୁସୂୟା ବା ଅସ୍ତସୂୟା, ବିଷମୀଭବନ ଯୋଗୁଁ କଙ୍କଣକୁ କଙ୍ଖଣ, ତାଲବୀ ଭବନ ଯୋଗୁଁ ମଧ୍ୟମକୁ ମଝିଆ ଏବଂ ନାସିକୀ ଭବନ ଯୋଗୁଁ ଭୂମିକୁ ଭୂଇଁ ଇତ୍ୟାଦି ଉଚ୍ଚାରଣ କରାଯାଇଥାଏ । ଧ୍ୱନି ପରିବର୍ତ୍ତନ ଯୋଗୁଁ ଅନେକ ଶବ୍ଦର ପରିବର୍ତ୍ତନ ଘଟିଥାଏ । ସ୍ଥଳ ବିଶେଷରେ ଶବ୍ଦର ପରିବର୍ତ୍ତନରେ ବର୍ଣ୍ଣବିଲୋପ ଓ ବର୍ଣ୍ଣଆଗମ ଘଟି ବର୍ଣ୍ଣବିନ୍ୟାସ ଓ ବାକ୍ୟ ବିନ୍ୟାସର ପରିବର୍ତ୍ତନ ଅର୍ଥାତ୍ ରୂପ ପରିବର୍ତ୍ତନ ଘଟିଥାଏ । ଏହାଦ୍ୱାରା ଓଡ଼ିଆ ଭାଷାର ପ୍ରଚୀନ ରୂପ ଓ ଆଧୁନିକ ରୂପ ମଧ୍ୟରେ ଅବିଚ୍ଛିନ୍ନ ସମ୍ପର୍କ ରହିପାରିନାହିଁ । ଭାଷାର ଦୁଇଟି ରୂପ । ଗୋଟିଏ କଥିତ ରୂପ ଓ ଅନ୍ୟଟି ଲିଖିତ ରୂପ । ବହୁ ସମୟରେ କଥିତ ରୂପ ଓ ଲିଖିତ ରୂପ ମଧ୍ୟରେ ସ୍ୱାତନ୍ତ୍ର୍ୟ ପରିଲକ୍ଷିତ ହୋଇଥାଏ । ଓଡ଼ିଆ ଭାଷାରେ ଜଗନ୍ନାଥ ଦାସଙ୍କ ଭାଗବତର ଭାଷା ହେଉଛି ମାନକ ଓଡ଼ିଆ ଭାଷା । ଏହି ମାନକ ଓଡ଼ିଆ ଭାଷା ସହିତ ଓଡ଼ିଶାର ବିଭିନ୍ନ ଅଞ୍ଚଳର କଥିତ ଭାଷା ପ୍ରଭେଦ ରହିଛି । କେବଳ ଭାଷା ନୁହେଁ, ଓଡ଼ିଆ ଲିପି ମଧ୍ୟ କ୍ରମବିକାଶ ଧାରାରେ ପରିବର୍ତ୍ତିତ ହୋଇଅଛି ରୂପଗତ ପରିବର୍ତ୍ତନ ଯୋଗୁଁ ଓଡ଼ିଆ ଭାଷାରେ ବାକ୍ୟର ମଧ୍ୟ ପରିବର୍ତ୍ତନ ଘଟିଅଛି । ଭାଷାର କ୍ରମବିକାଶ ଧାରାରେ ଶବ୍ଦକ୍ରମ ପରିବର୍ତ୍ତନ ଓ ଅନ୍ୱୟ ସମ୍ପର୍କିତ ପରିବର୍ତ୍ତନ ପ୍ରଭୃତି ଯୋଗୁଁ ପ୍ରାଚୀନ ବାକ୍ୟ ଓ ଆଧୁନିକ ବାକ୍ୟ ମଧ୍ୟରେ ପ୍ରଭେଦ ପରିଦୃଷ୍ଟ ହୋଇଛି । ଓଡ଼ିଆ ଭାଷାରେ ଶବ୍ଦ ସମ୍ପ୍ରସାରଣ, ଶବ୍ଦ ସଙ୍କୋଚନ, ଶବ୍ଦଲୋପ ଓ ଶବ୍ଦ ଆଗମ ଘଟି ଓଡ଼ିଆ ଶବ୍ଦର ପ୍ରାଚୀନ ଓ ଆଧୁନିକ ଶବ୍ଦ ମଧ୍ୟରେ ପ୍ରଭେଦ ସୃଷ୍ଟି ହୋଇଛି । ରୂପ ବା ପଦର ଆଧାର ଶବ୍ଦ ହେଲେ ହେଁ ଅର୍ଥ ହେଉଛି ଭାଷାର ଆତ୍ମା ଭାଷାର ପରିବର୍ତ୍ତନ ଘଟି କିପରି ଓଡ଼ିଆ ଶବ୍ଦର ଅର୍ଥଗତ ପରିବର୍ତ୍ତନ ହେଉଛି, ତାହା ଭାଷାବିଜ୍ଞାନ ଆଲୋଚନା ପରିସରଭୁକ୍ତ । ଏହା ଅର୍ଥବିସ୍ତାର, ଅର୍ଥ ସଙ୍କୋଚନ, ଅର୍ଥ ଆବେଶ, ଅର୍ଥ ଉତ୍କର୍ଷ ଓ ଅର୍ଥ ଅପକର୍ଷ ପ୍ରଭୃତି ଯୋଗୁଁ ହୋଇଥାଏ ।

ଭାଷା ବିଜ୍ଞାନୀମାନେ ଭାଷା ପରିବର୍ତ୍ତନର ଅନେକ କାରଣ ବ୍ୟକ୍ତ କରିଥିଲେ । ସେହି କାରଣଗୁଡିକ ସ୍ଥୁଳତଃ ଦୁଇଭାଗରେ ବିଭକ୍ତ । ତାହା ହେଉଛି ବାହ୍ୟକାରଣ ଓ ଆଭ୍ୟନ୍ତରୀଣ କାରଣ ଓଡ଼ିଆ ଭାଷାରେ ବାହ୍ୟକାରଣ ଅର୍ଥାତ୍ ବାଣିଜ୍ୟ, ଭୌଗଳିକ, ଜାତୀୟ ସମ୍ମେଳନ, ସାଂସ୍କୃତିକ ପ୍ରଭାବ, ସାମାଜିକ ବ୍ୟବସ୍ଥା, ବିଜ୍ଞାନ, ସଂସର୍ଗ ଓ ସ୍ଥାନଗତ ପରିବର୍ତ୍ତନ ଯୋଗୁଁ ବହୁ ପରିବର୍ତ୍ତନ ଘଟିଛି । ପର୍ତ୍ତୁଗୀଜ୍, ଫରାସୀ ଓ ଇଂରେଜମାନେ ଓଡ଼ିଶାରେ ଆସି ବାଣିଜ୍ୟ ବ୍ୟବସାୟ କରିବା ଫଳରେ ସେମାନଙ୍କ ଭାଷାର ସଂସ୍ପର୍ଶରେ ଓଡ଼ିଆ ଭାଷାରେ ଅନେକ ପରିବର୍ତ୍ତନ ଘଟିଛି । ଆଲମିରା, ବେଞ୍ଚ, ସାବୁନ ପ୍ରଭୃତି ପର୍ତ୍ତୁଗୀଜ ଶବ୍ଦ, ସ୍କୁଲ, ପୋଷ୍ଟଅଫିସ, ମେଡିକାଲ, ପେନ୍ସିଲ ପ୍ରଭୃତି ଇଂରାଜୀ ଶବ୍ଦ ଓ ଦ୍ରାବିଡ ଭାଷା ଅଗଣିତ ଶବ୍ଦ, ଓଡ଼ିଆ ଭାଷାରେ ପ୍ରବେଶ କରିଛି । ଓଡ଼ିଶା ଭୂଖଣ୍ଡରେ ବିଭିନ୍ନ ଅଞ୍ଚଳରେ

ଭୌଗଳିକ ବାତାବରଣ ସମାନ ନୁହେଁ । ତେଣୁ ଜଳବାୟୁଜନିତ ମାନସିକ ଚିନ୍ତାଧାରାରେ ବିଭିନ୍ନ ଅଞ୍ଚଳର ଭାଷାର ଉଚ୍ଚାରଣରେ ତାରତମ୍ୟ ପରିଲକ୍ଷିତ ହୋଇଥାଏ । ଶୀତଦିନରେ ପାହାଡିଆ ଅଞ୍ଚଳରେ ବାସକରୁଥିବା ବ୍ୟକ୍ତିଗଣ ମୁଖ ଖୋଲିବାର ଅସୁବିଧା ହେତୁ ବିବୃତଧ୍ୱନିକୁ ସଂବୃତଧ୍ୱନି ଭାବରେ ଉଚ୍ଚାରଣ କରିଥାନ୍ତି ଏବଂ ଗ୍ରୀଷ୍ମଦିନରେ ମୁଖ ଅଧିକ ଖୋଲା ରହୁଥିବାରୁ ସଂବୃତ ଧ୍ୱନିକୁ ବିବୃତ କରି ଉଚ୍ଚାରଣ କରିଥାନ୍ତି । ଜାତୀୟ ସମ୍ମିଳନୀ ଅର୍ଥାତ୍ ବିଭିନ୍ନ ଗୋଷ୍ଠୀ ଏକତ୍ର ହେଲେ ପରସ୍ପର ଭାଷାର ଆଦାନ ପ୍ରଦାନ ଘଟି ଭାଷାରେ ପରିବର୍ତ୍ତନ ଘଟିଥାଏ । ଓଡ଼ିଆ ଭାଷାରେ ବ୍ୟବହୃତ ମିଟିଂ, କମିଟି, କୋର୍ଟ, ଜଜ୍, ସ୍କୁଲ, କ୍ଲାସ ପ୍ରଭୃତି ଇଂରାଜୀ ଶବ୍ଦ, ଆଇନ, ଅଦାଲତ, କାନୁନ୍ ପ୍ରଭୃତି ମୁସ୍‌ଲିମ୍ ଓ ପାର୍ଶୀଶବ୍ଦ ଏବଂ ଆଟୁ, ଆଟିକା, ଅମୁଣିଆ, ଢଡପ, କୋଇଲି ପ୍ରଭୃତି ଦ୍ରାବିଡ ଶବ୍ଦ ଏହିପରି ଭାବରେ ଓଡ଼ିଆ ଭାଷାରେ ପ୍ରବେଶ ଓ ପ୍ରଚଳନ ହୋଇ ବିଭବ ପାଲଟିଯାଇଛି । ବନ୍ୟା, ବାତ୍ୟା, ଜଡ ପ୍ରଭୃତି ପ୍ରାକୃତିକ ବିପର୍ଯ୍ୟୟ କାଳରେ ବିପଦରେ ପଡି ଓଡ଼ିଆମାନେ ଭାଷାର ଶୁଦ୍ଧି ଅଶୁଦ୍ଧି ପ୍ରତି ଦୃଷ୍ଟିଦିଅନ୍ତି ନାହିଁ । ଫଳରେ ଅନେକ ଶବ୍ଦ ଖଣ୍ଡିତ ଓ ସଂକ୍ଷିପ୍ତ ହୋଇ ପରିବର୍ତ୍ତିତ ହୋଇଥାଏ । ଏହି କାରଣରୁ କଲେକ୍ଟରଙ୍କୁ କଲିଟର, ମାଜିଷ୍ଟ୍ରେଟଙ୍କୁ ମାଜିଷ୍ଟ, ଉପଜିଲ୍ଲାପାଳଙ୍କ କାର୍ଯ୍ୟାଳୟକୁ ଅଞ୍ଚଳ ଅଫିସ ଭାବରେ କେତକ ଓଡ଼ିଆ କହିଥାନ୍ତି । ସ୍ଥାନ ପରିବର୍ତ୍ତନ ଯୋଗୁଁ ଉତ୍ତର ଓଡ଼ିଶା, ପଶ୍ଚିମ ଓଡ଼ିଶା ଓ ଦକ୍ଷିଣ ଓଡ଼ିଶାରେ ଭାଷାରେ ଉଚ୍ଚାରଣ ବା ପାର୍ଥକ୍ୟ ଅନୁଭୂତ ହୋଇ ଭାଷାର ପରିବର୍ତ୍ତନ ଘଟିଛି । ସମୟ ସମୟରେ ଲିପି ଅସ୍ପଷ୍ଟ ଥିବାରୁ ଓଡ଼ିଆ ଭାଷାର କେତେକ ଶବ୍ଦ ଅଶୁଦ୍ଧ ଉଚ୍ଚାରଣ ହୋଇ ପରିବର୍ତ୍ତିତ ସ୍ୱରୂପ ଧାରଣ କରିଥାଏ ।

ଭାଷାର ଆଭ୍ୟନ୍ତରୀଣ ପରିବର୍ତ୍ତନର ମଧ ଅନେକ କାରଣ ରହିଛି । ଉଚ୍ଚାରଣରେ ଅକ୍ଷମତା, ସ୍ୱରଯନ୍ତ୍ରରେ ବିକାଶ, ଶାରୀରିକ ବିକୃତି ପ୍ରଭୃତି କାରଣରୁ ଓଡ଼ିଆ ବିଭିନ୍ନ ଶବ୍ଦର ସଠିକ ଉଚ୍ଚାରଣ କରିପାରନ୍ତି ନାହିଁ । ଜ୍ଞାନାଭାବ ଯୋଗୁଁ କେତେକ ଅଶିକ୍ଷିତ ଓଡ଼ିଆ ଅନେକ ଶବ୍ଦର ଭୁଲ୍ ଉଚ୍ଚାରଣ କରିଥାନ୍ତି । ମାନସିକ କାରଣ ଯୋଗୁଁ ଅସାବଧନତା ବଶତଃ କେତେକ ଗୋଟିଏ ଶବ୍ଦ ବଦଳରେ ଅନ୍ୟ ଶବ୍ଦ ଉଚ୍ଚାରଣ କରିଥାଏ । ଯଥା: ଆଳିମାଳି କାଳିକା, ତୃଣତୁଣିଆ ପୋକ, ତୃଣତୃଣ ହେଉଛି, ଆଳୁ ବାରପଳ ଓ ସାରୁ ବାରପଳ ଇତ୍ୟାଦି । କେହି ଘୋଡାକୁ ଘୋଳା, ଲାଲକୁ ନାଲ ପ୍ରଭୃତି କହିଥାନ୍ତି । ଶୀଘ୍ର ଶୀଘ୍ର ଉଚ୍ଚାରଣ ଯୋଗୁଁ ଭୋଗମଣ୍ଡପକୁ ଭଅଣ୍ଡ, ପୁରୁଷୋତ୍ତମ ପୁରସ୍ତମ ଓଡ଼ିଆମାନେ କହିଥାନ୍ତି । ଲୌକିକ ବ୍ୟୁତ୍ପତ୍ତି ଦ୍ୱାରା ଅନେକ ବିଦେଶୀ ଶବ୍ଦ ଓଡ଼ିଆରେ ଭୁଲ ଉଚ୍ଚାରଣ ହୋଇଥାଏ । ଯଥା: ଆର୍ମ ଚେୟାରକୁ ଆରାମଚେୟାର, ଆଲମିରାହାକୁ ଆଲିମିରା ବୋଲି ଓଡ଼ିଆମାନେ ଉଚ୍ଚାରଣ କରିଥାନ୍ତି ।

ବ୍ରାହ୍ମଣକୁ ବାଭୁଣ ବୋଲି କହିଥାନ୍ତି । ଅନ୍ଧବିଶ୍ୱାସ ଯୋଗୁଁ ଓଡ଼ିଶାର ସ୍ତ୍ରୀ ଲୋକମାନେ ଶ୍ୱଶୁର, ଶାଶୁ, ଦେଢ଼ଶୁରମାନଙ୍କ ନାମ ପଡୁଥିବା ଅଥବା ସେହି ନାମରେ କୌଣସି ଅକ୍ଷର ଥିବା ଶବ୍ଦକୁ ଭିନ୍ନ ଭାବରେ ଉଚ୍ଚାରଣ କରିଥାନ୍ତି । ଯଥା: କାଳିଆ କୁ ନାଳିଆ, ପାଣିକୁ ଲାଣି, ରବିବାରକୁ ଖରବାର ଇତ୍ୟାଦି । ଅନେକ ଓଡ଼ିଆ ଭାବପ୍ରବଣ ହୋଇ କାଳନ୍ଦୀକୁ କାଳିଆ, ବଳରାମକୁ ବଳିଆ, ଅନ୍ତର୍ଯ୍ୟାମୀକୁ ଅନ୍ତରା ପ୍ରଭୃତି କହିଥାନ୍ତି । ଶବ୍ଦ ଦୀର୍ଘ ହୋଇଥିଲେ ସଂକ୍ଷିପ୍ତରେ ପ୍ରକାଶ କରିଥାନ୍ତି । ଯଥା: ଲ.ସା.ଗୁ, ଗ.ସା.ଗୁ, DRDA, USA, WHO, UNICEF ପ୍ରଭୃତି । ବଳାଘାତ ଯୋଗୁଁ ଅଭ୍ୟନ୍ତରକୁ ଭିତର, ଉଧାରକୁ ଧାର ପ୍ରଭୃତି ଓଡ଼ିଆମାନେ କହିଥାନ୍ତି । ବର୍ଣ୍ଣ ବିପର୍ଯ୍ୟୟ ଯୋଗୁଁ ବାକ୍ସକୁ ବାସ୍କ, ମେଡ଼ିକାଲକୁ ମେଡ଼ିକାଲ ପ୍ରଭୃତି କେତେକ କହିଥାନ୍ତି । ବ୍ୟାକରଣ ନିୟମ ଉଲଂଘନ କରି କେହିକେହି ଅପୁତ୍ରକକୁ ଅପୁତ୍ରିକ, ନିର୍ଦ୍ଦୋଷକୁ ନିର୍ଦ୍ଦୋଷୀ ପ୍ରଭୃତି ଉଚ୍ଚାରଣ କରିଥାନ୍ତି । ଏହିପରି ଅନେକ କାରଣଯୋଗୁ ଭାଷାର ଆଭ୍ୟନ୍ତରୀଣ ପରିବର୍ତ୍ତନ ଘଟିଥାଏ ।

ଧ୍ୱନି ପରିବର୍ତ୍ତନ ହେଲେ ଭାଷାର ରୂପ ପରିବର୍ତ୍ତନ ରୂପ ପରିବର୍ତ୍ତନ ହୋଇଥାଏ । ଓଡ଼ିଆ ଭାଷା ପ୍ରାକୃତ ଓ ଅପଭ୍ରଂଶ ପଥଦେଇ ଓଡ଼ିଆଭାଷା ଆଧୁନିକତାର ସ୍ୱରୂପ ଗ୍ରହଣ କରିଛି ବୋଲି ଭାଷାବିଜ୍ଞାନୀଙ୍କ ମତ । ପ୍ରାକୃତ ଓ ଅପଭ୍ରଂଶର କେତେକ ଧ୍ୱନି ଆଧୁନିକ ଓଡ଼ିଆ ଭାଷାରେ ପରିବର୍ତ୍ତିତ । ଲିପିର କ୍ରମବିକାଶଧାରାରେ ଲିପି ପରିବର୍ତ୍ତନ ହେଲେ ଭାଷାର ରୂପ ପରିବର୍ତ୍ତନ ହୋଇଥାଏ । ଓଡ଼ିଆ ଗୋଟିଏ ଉତ୍କୃଷ୍ଟ ବା ଶାସ୍ତ୍ରୀୟ ଭାଷା । ତେଣୁ ଏହାର ପ୍ରାଚୀନ ରୂପ ନିମ୍ନମାନର ଓ ଆଧୁନିକ ରୂପ ଉଚ୍ଚମାନର ଅର୍ଥାତ୍ ପ୍ରାଚୀନ ରୂପ ଓ ଆଧୁନିକ ରୂପ ମଧ୍ୟରେ ଅବିଚ୍ଛିନ୍ନ ସମ୍ପର୍କ ନାହିଁ । ଭାଷା ଅଭିବ୍ୟକ୍ତ ପଦ୍ଧତିର ନ୍ୟୂନତମ ଅର୍ଥହୀନ ଏକକ ହେଉଛି ''ଧ୍ୱନିଗ୍ରାମ'', ଭାଷାର ନ୍ୟୂନତମ ଉଚ୍ଚାରଣକ୍ଷମ ଏକକ ହେଉଛି ''ଅକ୍ଷର'' ଏବଂ ଭାଷାର ନ୍ୟୂନତମ ଅର୍ଥପୂର୍ଣ୍ଣ ଏକକ ହେଉଛି ''ରୂପ'' । ଉଦାହରଣ ସ୍ୱରୂପ ''ଆ'' ହେଉଛି ଓଡ଼ିଆ ଭାଷାରେ ଏକାଧାରରେ ଗୋଟିଏ ଧ୍ୱନିଗ୍ରାମ, ଗୋଟିଏ ଅକ୍ଷର ଓ ଗୋଟିଏ ରୂପ । (୨୩) ''ଆ'' ଓଡ଼ିଆ ଭାଷାର ଗୋଟିଏ ଅକ୍ଷର , ଯାହା ଧ୍ୱନିଗ୍ରାମ ଓ ରୂପ ଭାବରେ ଭୂମିକା ନିର୍ବାହ କରିପାରୁଛି । କିନ୍ତୁ ''କଟକ'' କହିଲେ ଏହି ଶବ୍ଦରେ ତିନିଗୋଟି ଅକ୍ଷର, ତିନିଗୋଟି ଧ୍ୱନିଗ୍ରାମ ଓ ଗୋଟିଏ ରୂପ ରହିଛି । ରୂପ ମୁକ୍ତ ଓ ବଦ୍ଧ ଭେଦରେ ଦୁଇ ପ୍ରକାର । ପ୍ରତ୍ୟେକ ମୁକ୍ତରୂପ ହେଉଛି ଶବ୍ଦ । ସେଥିରେ ବଦ୍ଧରୂପ ସଂଯୋଗ ହେଲେ ତାହା ବ୍ୟବହାର ଉପଯୋଗୀ ହୋଇ ରୂପ ଗ୍ରହଣ କରେ । ''ଗଉଡ଼'' ହେଉଛି ମୁକ୍ତରୂପ, ସେଥିରେ ''ଉଣୀ'' ବଦ୍ଧରୂପ ଯୋଗହେଲେ ତାହା ହେବ ''ଗଉଡୁଣୀ'' । ଶବ୍ଦ ଓ ଧାତୁକୁ ବୈୟାକରଣମାନେ ପ୍ରକୃତ କହନ୍ତି । ଶବ୍ଦ ଓ ଧାତୁ ଅର୍ଥାତ୍ ପ୍ରକୃତ ବିଭକ୍ତି ଓ ପ୍ରତ୍ୟୟ ଯୋଗରେ ପଦ ହୁଏ । ଶବ୍ଦ ସହିତ ରେ, ଠାରୁ, କୁ, ଙ୍କ, ଏ ପ୍ରଭୃତି ଯୋଗହୁଏ । ଏଗୁଡ଼ିକୁ ଶବ୍ଦ ବିଭକ୍ତି କୁହାଯାଏ । ଧାତୁ ସହିତ ଇଲା, ଇଥିଲି, ଉଥିଲା, ଉଅଛି, ଇବ ଇତ୍ୟାଦି ଯୋଗକରାଯାଏ । ଏଗୁଡ଼ିକୁ ପ୍ରତ୍ୟୟ କୁହାଯାଏ । ଶବ୍ଦ ଓ ଧାତୁ ଯଥାକ୍ରମେ ବିଭକ୍ତି ଓ ପ୍ରତ୍ୟୟ ସହିତ ସଂଯୋଗ ହୋଇ ପଦରେ ପରିଣତ ହୁଅନ୍ତି ଏବଂ ପଦବଦ୍ଧ ସଂରଚନା ହେଉଛି ବାକ୍ୟବିଚାର । ବାକ୍ୟ ସମୂହରେ ବ୍ୟବହୃତ ପଦଗୁଡ଼ିକର ତତ୍ତ୍ୱ ଜାଣିବା ଭାଷାବିଜ୍ଞାନର ବିଶିଷ୍ଟ ବିଭାବ । ସେହି ତତ୍ତ୍ୱକୁ ବିଶ୍ଳେଷଣ କରିବାକୁ ପଦବିଜ୍ଞାନ ବା ରୂପବିଜ୍ଞାନ କୁହାଯାଏ । ଏଥିରେ ସମ୍ବନ୍ଧତତ୍ତ୍ୱ, ତହିଁର ପ୍ରକାର ଓ ପ୍ରବୃତ୍ତି ବ୍ୟାକରଣସିଦ୍ଧ ରୂପର ବିକାଶ, ଧାତୁ, ଉପସର୍ଗ ଓ ପ୍ରତ୍ୟୟ ପ୍ରଭୃତିର ସୌଦ୍ଧାନ୍ତିକ ଅଧ୍ୟୟ ହୋଇଥାଏ । ଭାଷାବିଜ୍ଞାନୀମାନେ ମଧ ରୂପବିଜ୍ଞାନକୁ ସମକାଳୀନ ରୂପବିଜ୍ଞାନ, ଐତିହାସିକ ରୂପବିଜ୍ଞାନ ଓ ତୁଳନାତ୍ମକ ରୂପବିଜ୍ଞାନ ତିନିଭାଗରେ ବିଭକ୍ତ କରିଛନ୍ତି । ଓଡ଼ିଆ ଭାଷାର ରୂପବିଜ୍ଞାନ ବିଶ୍ଳେଷଣ କଲେ ଜଣାଯାଏ, ଉତ୍ପତ୍ତି କାଳରୁ ପଦଗୁଡ଼ିକ ଯଦୃଚ୍ଛା ବ୍ୟବହୃତ ହୋଇ କ୍ରମେ ପରିବର୍ତ୍ତିତ ପ୍ରକ୍ରିୟାରେ ପରସ୍ପର ସହିତ ସମ୍ବନ୍ଧିତ ହେଲା, ତହିଁରେ ପ୍ରକାର ଓ ପ୍ରବୃତ୍ତି ନିରୂପଣ ହେଲା ଏବଂ ଶେଷରେ ବ୍ୟାକରଣ ସିଦ୍ଧ ରୂପର ବିକାଶ ଘଟିଲା । ଏହି କାରଣ ଦୃଷ୍ଟେ ଓଡ଼ିଆ ଭାଷାର ପ୍ରାଚୀନ ରୂପ ଓ ଆଧୁନିକ ରୂପ ମଧ୍ୟରେ ନିରବିଚ୍ଛନ୍ନ ସମ୍ପର୍କ ରହିପାରିଲା ନାହିଁ ।

ଓଡ଼ିଆ ଭାଷାର ପ୍ରାଚୀନରୂପ ଓ ଆଧୁନିକରୂପ ମଧ୍ୟରେ କିପରି ନିରବିଚ୍ଛନ୍ନ ସମ୍ପର୍କ ନାହିଁ ତହିଁର ଉଦାହରଣ ପ୍ରଦାନ କରିବା ପ୍ରାସଙ୍ଗିକ ବୋଧହୁଏ । ପ୍ରାଚୀନ ଓଡ଼ିଆ ଭାଷାର ନିଦର୍ଶନ ବହୁ ଅଭିଲେଖରେ ପରିଦୃଷ୍ଟ । ଶୈଳୋଦ୍ଭବ ବଂଶର ଧର୍ମରାଡ଼ ସପ୍ତମ ଶତାବ୍ଦୀରେ ଗୋଟିଏ ଗ୍ରାମଦାନ ପୂର୍ବକ ତାମ୍ରପତ୍ର ପ୍ରଦାନ କରିଥଲେ । ସେହି ତାମ୍ରପତ୍ରରେ ପ୍ରାଚୀନ ଓଡ଼ିଆ ଭାଷାରେ ଉଲ୍ଲେଖ ଅଛି, ''ଗ୍ରାମସ୍ୟ (ଶି) (ସୀ)ମା କ (କୃ) ତ । ପଛିମଡ଼ସହି ତୃ (ତ୍ରି) କୁଟ ଯୋଡ଼ ପାପାଦି ବଣରାଃ । ଭତର ଦିସହି ଦୃକୁଟ । ପାଣି ସାଖତିରି ମଣିବଧୌବଣି ଭିତର ଦିସହି ଦିର୍ଘସିଳ । ପୁବେହି ଅତବଣରାଇ ବାଡ଼ । ପୁବ ଉତର କୋତୋହି ସୋମଣିତି (ତ୍ରି) କୁଟ । ପୁବ ଦକ୍ଷିଣ ହି ସେ ମତୃ (ତ୍ରି) କୁଟ । ପୁବ ଦିସହି ଲାଡ଼ । ପୁବ ଦକ୍ଷିଣ

କୋଣହି ବାଘଗୃହ ଦୃ (ତ୍ରି) କୁଟ । ଦକ୍ଷିଣ ଦିଗ ପବଦିସିଳ ଗାଡ଼ି ସାବତଃଣ୍ଡ ପୁର ଦ୍ୱିଟିମ୍ପରି । (୨୪) ତାମ୍ରଲେଖର ଭାଷା ଅପରିବର୍ତ୍ତିତ ରହୁଥିବାରୁ ପ୍ରାଚୀନ ଓଡ଼ିଆ ଭାଷାର ସ୍ୱରୂପ ଜାଣିବା ନିମିତ୍ତ ଏହି ତାମ୍ରପତ୍ରଟିର ଉଦାହରଣ ଦିଆଗଲା । ତାମ୍ରଲେଖରେ ଖୋଦିତ ଓଡ଼ିଆ ବାକ୍ୟରେ କ୍ରିୟା, କର୍ତ୍ତା ଓ ପଦର ସ୍ୱରୂପ ଅବ୍ୟବସ୍ଥିତ । କୌଣସି ପଦରେ ବିଭକ୍ତି ବା ପ୍ରତ୍ୟୟ ପରିଲକ୍ଷିତ ହେଉନାହିଁ । ହୃଦବୋଧ ହୁଏ, ସପ୍ତମ ଶତାବ୍ଦୀରେ ଗଠିତ ଓଡ଼ିଆ ବାକ୍ୟରେ ବ୍ୟାକରଣ ଶୃଙ୍ଖଳା ନଥିଲା । ଆଧୁନିକ ଓଡ଼ିଆ ଭାଷାରେ ଏହି ତାମ୍ରପତ୍ରର ସଠିକ ସ୍ୱରୂପ ହେଉଛି, ‘‘ପ୍ରଦତ୍ତ ଦ୍ୱିଟିମ୍ପିରି ଗ୍ରାମର ସୀମା ନିରୂପଣ ପୂର୍ବକ ସୂଚନା ପ୍ରଦାନ କରାଯାଇଅଛିଯେ, ଏହାର ପଶ୍ଚିମ ଦିଗରେ ତ୍ରିକୂଟ ଯୋଡ଼ ପାପାଦି ବଣ । ଉତ୍ତର ଦିଗରେ ତ୍ରିକୂଟ ଜଳଧାରା ଓ ମଣିବଧେଇବଣ ଏବଂ ଦିଘସିଳ । ପୂର୍ବରେ ବଣାରାଇବାଡ଼ । ପୂର୍ବ ଉତ୍ତର କୋଣରେ ସୋମଣି ଓ ତ୍ରିକୂଟ । ପୂର୍ବ ଦକ୍ଷିଣରେ ସେହି ତ୍ରିକୂଟ । ପୂର୍ବ ଦିଗରୁ ଆରମ୍ଭ କରି ପୂର୍ବ ଦକ୍ଷିଣ କୋଣ ପର୍ଯ୍ୟନ୍ତ ବାଘଗୃହ ଓ ତ୍ରିକୂଟ । ଦକ୍ଷିଣ ଦିଗରେ ପବଦିସିଳ ସାବତିଣ୍ଡପୁର’’ । ଏହି ଉଦାହରଣରେ ପ୍ରାଚୀନ ଓଡ଼ିଆ ଭାଷାର ରୂପ ଓ ଆଧୁନିକ ଓଡ଼ିଆ ଭାଷାର ରୂପ ମଧ୍ୟରେ ନିରବିଚ୍ଛିନ୍ନ ସମ୍ପର୍କ ନାହିଁ । ସପ୍ତମ ଶତାବ୍ଦୀରେ ଗ୍ରାମର ଚତୁଃସୀମା ବର୍ଣ୍ଣନାରେ ତାମ୍ରଲେଖରେ ଥିବା ଅବ୍ୟବସ୍ଥିତ ବାକ୍ୟ ଲେଖାଯାଉଥିଲା । କ୍ରମେ କ୍ରମେ ଏହି ଭାଷା ପରିବର୍ତ୍ତିତ ହୋଇ ଆଧୁନିକ ଯୁଗରେ ବ୍ୟାକରଣ ସିଦ୍ଧ ରୂପ ଧାରଣକଲା । ଏହି ବ୍ୟାକରଣ ସିଦ୍ଧ ଶ୍ଳୀଳ ତଥା ଉତ୍କୃଷ୍ଟ ଭାଷା ହିଁ ଶାସ୍ତ୍ରୀୟ ଭାଷା । ପ୍ରମାଣିତ ହୁଏ, ଓଡ଼ିଆ ଭାଷା ଉନ୍ମେଷ କାଳରେ ଉନ୍ନତ ରୂପ ଧାରଣ ପୂର୍ବକ ଶ୍ଳୀଳ, ସାଧୁ, ଉଚ୍ଚ, ଉତ୍କୃଷ୍ଟ ଓ ଶାସ୍ତ୍ରୀୟ ହେବା ନିମିତ୍ତ ଦୀର୍ଘ ସୋନପୁର ଶିଳାଲେଖରେ ଖୋଦିତ ଓଡ଼ିଆ ଭାଷାର ରୂପ ପାଠକଲେ ଜଣାଯାଏ, ‘‘ସ୍ୱସ୍ତି ଶ୍ରୀ ବୀର ଭାଣୁଦେବସ୍ୟ ପ୍ରବଧ୍ୟମାନ ବିଜଏ ରାଜେ ସମ୍ବତ ୭ ସାହି ମୀନକୃଷ୍ଣ ୩ ସଉରିବାରେ ସୂନୁପର କଟକ ପଶ୍ଚିମଦେଶ ଅଧିକାରୀ ସାମାନ୍ତ ଦିସ ପଡ଼ରାଂକ୍ତ ଅଧିକାରେ ଶ୍ରୀ ବୀରରାଣୁ ଦେବ ରାଜାଙ୍କର ଆଇଉସ୍ୱ କାମାର୍ଥେ ଶ୍ରୀ ବଇଦ୍ୟନାଥ ଦେବଙ୍କର ନଏଡ଼ି ବିଷୟ (ଗ୍ରା)ମ ବାରହତଳ ୧୨ । ଏହାଯେ ହରଇ ହରାଅଇ ତାହାର କପାଳେ ସିବତାଳ ବ୍ରହ୍ମତାଳ ବିଷ୍ଣୁତାଳ ପଡ଼ଇ ତାଙ୍କର କଟି (ଯା)ଇ ନ୍ରିବନସ ହୋଇ ।’’ (୨୫) ପାଠୋଦ୍ଧାରରୁ ହୃଦ୍‌ବୋଧ ହୁଏ, ସପ୍ତମ ଶତାବ୍ଦୀର ଓଡ଼ିଆ ଭାଷାର ରୂପ ଅପେକ୍ଷା ତ୍ରୟୋଦଶ ଶତାବ୍ଦୀ ଓଡ଼ିଆ ଭାଷାର ରୂପ ଉନ୍ନତ, କିନ୍ତୁ ବ୍ୟାକରଣ ସିଦ୍ଧ ନୁହେଁ । ଏହି ଶିଳାଲେଖରେ ‘‘ବାରେ’’ ରାଜାଙ୍କର ‘‘ଅଧିକାରେ’’, ‘‘ଦେବଙ୍କର’’, ‘‘ହରଇ’’, ‘‘ହୋଇ’’ ପ୍ରଭୃତି ବିଭକ୍ତି ଓ ପ୍ରତ୍ୟୟ ଯୁକ୍ତ ପଦ ରହିଛି, ଅଥଚ ବାକ୍ୟବିନ୍ୟାସ ବ୍ୟାକରଣସିଦ୍ଧ ନୁହେଁ । ଏହି ଶିଳାଲେଖର ଭାଷା ଆଧୁନିକ ଓଡ଼ିଆଭାଷାର ରୂପରେ ପରିବର୍ତ୍ତନ କଲେ ପାଠୋଦ୍ଧାରଟି ହେବ, ‘‘ଶ୍ରୀବୀର ଭାନୁଦେବଙ୍କ ପ୍ରବଧମାନ ବିଜୟ ରାଜ୍ୟର ସପ୍ତମ ସମ୍ବତ୍ସର ମୀନମାସ କୃଷ୍ଣପକ୍ଷ ତୃତୀୟା ଶନିବାରରେ ସୋନପୁର ପଶ୍ଚିମଦେଶ ଅଧିକାରୀ ସାମନ୍ତ ଶ୍ରୀ ବୀରଭାନୁଦେବଙ୍କ ଆୟୁଷ ବୃଦ୍ଧି କାମନାରେ ଶ୍ରୀ ବୈଦ୍ୟନାଥ ଦେବଙ୍କୁ ନଏଡ଼ି ବିଷ ବରହତଳ ଗ୍ରାମ ପ୍ରଦାନକଲେ । ଏହାକୁ ଯିଏ ହରଣ କରିବ ବା କରାଇବ ତା କପାଳରେ ଶିବତାଳ, ବ୍ରହ୍ମତାଳ ଓ ବିଷ୍ଣୁତାଳ ପଡ଼ିବ ତଥା ସେ ଅନ୍ନବସ୍ତ୍ର ପାଇବ ନାହିଁ ।’’ ଏଥିରେ ମଧ୍ୟ ପ୍ରାଚୀନ ଓଡ଼ିଆ ଭାଷାର ରୂପ ଓ ଆଧୁନିକ ଓଡ଼ିଆ ଭାଷାର ପୁପ ମଧ୍ୟରେ ନିରବିଚ୍ଛିନ୍ନ ସଂପର୍କ ରହୁନାହିଁ । ସେହି ତ୍ରୟୋଦଶ ଶତାବ୍ଦୀରେ ୧୨୮୮ ଖ୍ରୀଷ୍ଟାବ୍ଦରେ ଦ୍ୱିତୀୟ ନରସିଂହଦେବ ଦ୍ୱାରା ଖୋଦିତ ଭୁବନେଶ୍ୱରରୁ ପ୍ରାପ୍ତ ଦ୍ୱିଭାଷିକ ଶିଳାଲେଖରେ ଗୋଟିଏ ପାର୍ଶ୍ୱରେ ତାମିଲି ଲିପି ଓ ଅପରପାର୍ଶ୍ୱରେ ପ୍ରନ୍ ଓଡ଼ିଆ ଲିପି ରହିଅଛି । ଓଡ଼ିଆ ଭାଷାର ଅନୁଶୀଳନ ଦୃଷ୍ଟିରୁ ଏହି ଶିଳାଲେଖଟି ଗୁରୁତ୍ୱପୂର୍ଣ୍ଣ । ଏହି ଶିଳାଲେଖରେ ‘‘କଇଁ’’ ପ୍ରତ୍ୟୟ ରହିଛି, ଯାହାକି ପରବର୍ତ୍ତୀ କାଳରେ ସାରଳା ଦାସଙ୍କ ଦ୍ୱାରା ବହୁଳ ଭାବରେ ବ୍ୟବହୃତ ।

ଏଥିରୁ ହୃଦ୍‌ବୋଧ ହୁଏ, ତ୍ରୟୋଦଶ ଶତାବ୍ଦୀ ବେଳକୁ ଓଡ଼ିଆ ଭାଷା ପୂର୍ଣ୍ଣାଙ୍ଗ ରୂପ ଧାରଣ କଲାଣି । ଶିଳାଲେଖରେ ଥିବା ବାକ୍ୟଗଠନ ପ୍ରଣାଳୀ ପୂର୍ବ ଅଭିଲେଖମାନଙ୍କରେ ଥିବା ବାକ୍ୟଗଠନ ପ୍ରଣାଳୀଠାରୁ ଉନ୍ନତ ।

ଭାବାନୁବାଦରେ ବ୍ୟାକରଣ ଶୃଙ୍ଖଳା ରହିଥିବାରୁ ଏହା ସିବୋଧ, ସୁଖପାଠ୍ୟ ଓ ପ୍ରାଚୀନ ରୂପଠାରୁ ଉନ୍ନତ । ଏଥିରୁ ପ୍ରମାଣିତ ହୁଏ, ପ୍ରାଚୀନ ଓଡ଼ିଆ ଭାଷାର ରୂପରେ ବ୍ୟାକରଣ ଶୃଙ୍ଖଳା ନଥିବାରୁ ଏହା ଆଧୁନିକ ଓଡ଼ିଆ ସାହିତ୍ୟର ଭାଷା ସହିତ ନିରବଚ୍ଛିନ୍ନ ସମ୍ପର୍କ ରଖିପାରୁନାହିଁ । ବ୍ୟାକରଣ ଶୃଙ୍ଖଳା ନଥିଲେ ହେଁ ଏହା ରଚନାକାଳର ପ୍ରଚଳିତ ଭାଷା ହୋଇଥିବାରୁ ସେତେବେଳର ଶ୍ରୋତା ବା ପାଠକ ବୁଝିପାରୁଥିଲେ । ବର୍ତ୍ତମାନର ବ୍ୟାକରଣ ଶୃଙ୍ଖଳିତ ଭାଷା ବ୍ୟବହାରକାରୀଙ୍କ ନିମିତ୍ତ ଏହା ଦୁବୋଧ । ଏହି କାରଣ ଦୃଷ୍ଟେ, ଓଡ଼ିଆ ଭାଷାର ପ୍ରାଚୀନ ରୂପ ଓ ଆଧୁନିକ ରୂପ ମଧ୍ୟରେ ନିରବିଚ୍ଛିନ୍ନ ସମ୍ପର୍କ ରହୁନାହିଁ ।

ପ୍ରାଚୀନ ଓଡ଼ିଆ ଭାଷାର ରୂପ ଏବଂ ଆଧୁନିକ ଓଡ଼ିଆ ଭାଷାର ରୂପ ମଧ୍ୟରେ ନିରବିଚ୍ଛିନ୍ନ ସମ୍ପର୍କ ନ ରହିବାର କେତେକ ଭାଷାତାତ୍ତ୍ୱିକ କାରଣ ରହିଛି । ପ୍ରାଚୀନ ଓଡ଼ିଆ ଭାଷାରେ ପଦବଦ୍ଧ ସଂରଚନା ଓ ବାକ୍ୟବିଚାର ପ୍ରଭୃତି ଉପରେ ଗୁରୁତ୍ୱ ପ୍ରଦାନ କରାଯାଉନଥିଲା, ଅଥଚ ସଂପ୍ରତି ଏହା ଗୁରୁତ୍ୱପୂର୍ଣ୍ଣ ହୋଇଥିବାରୁ ଉଭୟ ରୂପରେ ସାଦୃଶ୍ୟ ଅନୁଭୂତ ହେଉନାହିଁ । ଓଡ଼ିଆରେ ପାଞ୍ଚଗୋଟି କାରକ ପ୍ରତ୍ୟୟଭିତ୍ତିକ ହେଲେହେଁ ପ୍ରାଚୀନ ସାହିତ୍ୟର ଭାଷାର ଏହା ଉପରେ ଗୁରୁତ୍ୱ ଦିଆଯାଉନଥିଲା । ପ୍ରାଚୀନ ଓଡ଼ିଆ ଭାଷାରେ ତିନିଗୋଟି ସର୍ବନାମ ଭିନ୍ନ ରୂପରେ ପ୍ରତିଭାତ ହୋଇଥାନ୍ତି ଏବଂ ଅସମାପିକା କ୍ରିୟା ପ୍ରୟୋଗରେ ଶୃଙ୍ଖଳା ନାହିଁ । ପ୍ରାଚୀନ ଓଡ଼ିଆ ଭାଷାରେ ପଦବିନ୍ୟାସ ଓ ବାକ୍ୟବିନ୍ୟାସ ନାହିଁ । କ୍ରମେ କ୍ରମେ ଏହା ବ୍ୟାକରଣର ଛନ୍ଦୋବଦ୍ଧ ନିୟମରେ ଶୃଙ୍ଖଳିତ ହୋଇଛି । ଏହିସବୁ କାରଣ ଦୃଷ୍ଟେ ପ୍ରାଚୀନ ଓଡ଼ିଆ ଭାଷାର ରୂପ ସହିତ ଆଧୁନିକ ଓଡ଼ିଆ ଭାଷାର ରୂପ ନିରବଚ୍ଛିନ୍ନ ସଂପର୍କ ରଖିପାରୁନାହିଁ । ପ୍ରାଚୀନ ଓଡ଼ିଆ ଭାଷାର ଧ୍ୱନି, ରୂପ ଓ ଅର୍ଥର କ୍ରମ ପରିବର୍ତ୍ତନ ଘଟି ଆଧୁନିକ ଓଡ଼ିଆ ଭାଷା ସୃଷ୍ଟି ହୋଇଛି । ଏହି ଦୃଷ୍ଟିକୋଣରୁ ପ୍ରାଚୀନ ଓ ନବୀନ ଉଭୟ ମୌଳିକ ଭାଷା ହେଲେହେଁ ରୂପ ଭିନ୍ନ ଭିନ୍ନ । ଭିନ୍ନ ଭିନ୍ନ ରୂପର ସାମଞ୍ଜସ୍ୟ ବା ନିରବିଚ୍ଛନ୍ନ ସମ୍ପର୍କ ନରହିବା ସ୍ୱାଭାବିକ । ମହର୍ଷି ପତଞ୍ଜଳି 'ମହାଭାଷ୍ୟ' ରେ ଏହାକୁ ଭାଷାର ବିକାଶ ବୋଲି ଅଭିହିତ କରିଛନ୍ତି । ପ୍ରମାଣିତ ହୁଏ, ଓଡ଼ିଆ ଭାଷା ଏକ ମୌଳିକ ଓ ବିକାଶଶୀଳ ଭାଷା ତଥା ସ୍ୱକୀୟ ସ୍ୱାଭାବିକ ବିକାଶ ପ୍ରକ୍ରିୟାରେ ଏହା ମାର୍ଜିତ ଓ ଶୃଙ୍ଖଳିତ ହୋଇ ଆଧୁନିକ ଓଡ଼ିଆ ଭାଷା ରୂପେ ପ୍ରତିଭାତ ହୋଇଛି । ମାର୍ଜିତ ଓ ଶୃଙ୍ଖଳିତ ହେବାପରେ ସ୍ୱରୂପ ପରିବର୍ତ୍ତନ ହୋଇଥିବାରୁ ଆଧୁନିକ ଓଡ଼ିଆ ଭାଷାର ରୂପ ପ୍ରାଚୀନ ଓଡ଼ିଆ ଭାଷାର ରୂପ ସହିତ ନିରବଚ୍ଛିନ୍ନ ସମ୍ପର୍କ ରଖିପାରିନାହିଁ । ଏହାହିଁ ଶାସ୍ତ୍ରୀୟ ଭାଷାର ଲକ୍ଷଣ, ଯାହା ଚତୁର୍ଥ ମାନ୍ୟତା ରୂପରେ ଭାରତ ସରକାରଙ୍କ ଦ୍ୱାରା ନିର୍ଦ୍ଧାରିତ । ସେହି ଚତୁର୍ଥ ମାନ୍ୟତାନୁସାରେ ଓଡ଼ିଆ ଭାଷା ଗୋଟିଏ ଶାସ୍ତ୍ରୀୟ ଭାଷା । ଓଡ଼ିଆ ଭାଷା ଏକ ପ୍ରାଚୀନ ଓ ମୌଳିକ ଆର୍ଯ୍ୟଭାଷା । ସମୟକ୍ରମେ ନୂତନ ଭାଷାବିଭବ ଯୁକ୍ତ ହୋଇ ଏହା ସମୃଦ୍ଧ ହୋଇଛି । ସ୍ୱକୀୟ ଉତ୍ପାଦନ କ୍ଷମତା ଦ୍ୱାରା ଏହି ପ୍ରାଚୀନ ଭାଷା ଶବ୍ଦାବଳୀର ଆହରଣ, ସ୍ୱାନୁକୂଳ ଆରୋପଣ, ନୂତନ ଶବ୍ଦ ନିର୍ମାଣ, ନୂତନ ଅର୍ଥ ଉଦ୍‌ଭାବନ, ବାକ୍ୟଗଠନର ନୂତନୀକରଣ ଏବଂ ନୂତନ ଶୈଳୀର ପ୍ରବର୍ତ୍ତନ ଘଟାଇ ଏହା ନବ୍ୟ ରୂପ ଧାରଣ କରିଛି । ପ୍ରବହମାନ ଧାରରେ ଏହି ଭାଷା ଜୀବନ୍ତ, ପ୍ରଚଳିତ, ପରିମାର୍ଜିତ ଓ ପରିବର୍ଦ୍ଧିତ ହୋଇ ନୂତନ ରୂପ ଧାରଣ କରିଥିବାରୁ ପ୍ରାଚୀନରୂପ ଓ ଆଧୁନିକ ରୂପ ମଧ୍ୟରେ ଭାବଗତ ଐକ୍ୟ ରହିପାରିନାହିଁ । ଓଡ଼ିଆ ଭାଷାରେ ସର୍ବଦା ସଂସ୍କାର ଓ ସଂଶୋଧନ କ୍ରିୟା ସଂପାଦିତ ହେଉଥିବାରୁ ଏହା ପ୍ରାଚୀନ ହେଲେ ମଧ୍ୟ

ନିତ୍ୟ ନୂତନ । ଏହି ପ୍ରକ୍ରିୟାରେ ଓଡ଼ିଆ ଭାଷା ଜୀର୍ଣ୍ଣ ଶୀର୍ଣ୍ଣ, ଦୁର୍ବଳ ଓ ଅରୁଚିକର ଭାଷାବିଭବକୁ ପରିହାର କରି ସୁଦୃଢ଼, ଉପାଦେୟ ଓ ରୁଚିକର ଭାଷାବିଭବକୁ ନିଜସ୍ୱ କରିଛି । ଅର୍ଥାତ୍ ଓଡ଼ିଆ ଭାଷାର ପ୍ରାଚୀନ ରୂପରେ ଅରୁଚିକର ଜୀର୍ଣ୍ଣ ଶୀର୍ଣ୍ଣ ଭାଷାବିଭବ ରହିଛି ଏବଂ ଆଧୁନିକ ରୂପରେ ଉପାଦେୟ ଓ ରୁଚିକର ଭାଷାବିଭବ ରହିଛି । ତେଣୁ ଉଭୟରୂପେ ମଧ୍ୟରେ ନିରବିଚ୍ଛିନ୍ନ ସମ୍ପର୍କ ନରହିବା ସ୍ୱାଭାବିକ, ଯାହାକୁ ଭାଷାର ଶାସ୍ତ୍ରୀୟ ଲକ୍ଷଣ ନାମରେ ଅଭିହିତ କରାଯାଇଛି । ଭାଷାବିଜ୍ଞାନୀଙ୍କ ମତରେ ନଦୀ ଯେପରି ଅଖଣ୍ଡଧାରାରେ ପ୍ରବାହିତ ହୋଇଥାଏ ତଥା ଗତିପଥ ପରିବର୍ତ୍ତନ କରିଥାଏ, ଭାଷା ସେହିପରି ନିରବିଚ୍ଛିନ୍ନ ଭାବରେ ପ୍ରଚଳିତ ହୋଇ ତାର ସ୍ୱରୂପ ପରିବର୍ତ୍ତନ କରିଚାଲିଥାଏ । (୨୮) ସେହିପରି ଦୁଇ ହଜାରରୁ ଅଧିକ ବର୍ଷ ଧରି ପ୍ରଚଳିତ ଓଡ଼ିଆ ଭାଷାର ଏକହଜାର ବର୍ଷତଳେ ଯେଉଁ ସ୍ୱରୂପ ଥିଲା ବର୍ତ୍ତମାନ ସେହି ସ୍ୱରୂପ ପରିବର୍ତ୍ତନ ହୋଇଯାଇଛି । ଏବଂ ଆଗାମୀ ଏକହଜାର ବର୍ଷ ପରେ ମଧ୍ୟ ନୂତନ ରୂପ ପରିବର୍ତ୍ତନ ହୋଇଯିବ । କାରଣ ଭାଷା ଯୁଗେ ଯୁଗେ ପରିବର୍ତ୍ତନଶୀଳ । ଏପରିସ୍ଥଳେ ପ୍ରାଚୀନ, ନବୀନ ଓ ଭବିଷ୍ୟତ ରୂପେ ମାଧ୍ୟମରେ ଅବିଚ୍ଛିନ୍ନ ସମ୍ପର୍କ ଅସମ୍ଭବ । ଅତଏବ, ନିଃସନ୍ଦେହରେ ବ୍ୟକ୍ତ କରାଯାଇପାରେ ଯେ ଭାରତ ସରକାରଙ୍କ ନିର୍ଦ୍ଧାରିତ ଚତୁର୍ଥ ମାନ୍ୟତା ଅନୁଯାୟୀ ଓଡ଼ିଆ ଏକ ଶାସ୍ତ୍ରୀୟ ଭାଷା ।

ଭାରତ ସରକାର ଶାସ୍ତ୍ରୀୟ ଭାଷାର ଯେଉଁ ଚତୁର୍ଥ ଲକ୍ଷଣ ନିର୍ଦ୍ଧାରଣ କରିଛନ୍ତି, ତାହା ଐତିହାସିକ ଭାଷାବିଜ୍ଞାନର ଆଲୋଚନା ପରିସରଭୁକ୍ତ । ଐତିହାସିକ ଭାଷାବିଜ୍ଞାନରେ ଭାଷା ପରିବାରର ମୂଳଭାଷାକୁ ଅଧ୍ୟୟନ ସାମଗ୍ରୀରୂପେ ଗ୍ରହଣ କରାଯାଇ ବିଭିନ୍ନ ଅବସ୍ଥାରେ ବିଭିନ୍ନ ସ୍ଥାନରେ ଓ ବିଭିନ୍ନ କାଳରେ ତାହାର କାଳଗତ ଧାରାବାହିକ ରୂପାନ୍ତରର ବିଶ୍ଳେଷଣ କରାଯାଇଥାଏ । ଓଡ଼ିଆ ଭାଷାର ଐତିହାସିକ ଭାଷାବିଜ୍ଞାନ ଅଧ୍ୟୟନ ନିମିତ୍ତ ତାହାର ଅର୍ଥ ପରିବର୍ତ୍ତନ ଓ ରୂପ ପରିବର୍ତ୍ତନ ସମ୍ପର୍କରେ ଆଲୋଚନା ଆବଶ୍ୟକ । ଓଡ଼ିଆ ଭାଷା ଖ୍ରୀଷ୍ଟପୂର୍ବ କାଳରୁ ଉତ୍ପତ୍ତି ହୋଇ ପ୍ରଥମେ ଔଡ୍ରୀ, ପ୍ରାକୃତ, ଖ୍ରୀଷ୍ଟପୂର୍ବ ତୃତୀୟ ଶତାବ୍ଦୀ ବେଳକୁ ଔଡ୍ରୀମାଗଧୀ ବା ଅର୍ଦ୍ଧମାଗଧୀ ଓ ପରେ ଓଡ଼ିଆ ଭାଷା ଭାବରେ ପ୍ରତିଭାତ ହୋଇଛି ଭାଷାବିଜ୍ଞାନୀମାନେ ଏହାକୁ ଭିନ୍ନ ଭାବରେ ବିବେଚନା ପୂର୍ବକ ମତପ୍ରକାଶ କରିଛନ୍ତି ଯେ, ଓଡ଼ିଆ ଭାଷାର ପୂର୍ବସ୍ୱରୂପ ପ୍ରାକୃତ, ଯାହାର ଐତିହାସିକ ସୀମା ପ୍ରଥମ ଶତାବ୍ଦୀ ଠାରୁ ପଞ୍ଚମ ଶତାବ୍ଦୀ ଏବଂ ଏହା ପ୍ରଥମଶତାବ୍ଦୀ ପର୍ଯ୍ୟନ୍ତ ପାଲି ନାମରେ ପରିଚିତ ଥିଲା । ପ୍ରଥମ ଶତାବ୍ଦୀ ପର୍ଯ୍ୟନ୍ତ ପାଲି ଓ ତତ୍‌ପରବର୍ତ୍ତୀ ପାଞ୍ଚଶହ ବର୍ଷ ପ୍ରାକୃତ ଓ ପରେ ଏହା ଅପଭ୍ରଂଶ ରୂପେ ପ୍ରତିଭାତ ହୋଇଥିଲା ବୋଲି ଭାଷାବିଜ୍ଞାନୀଙ୍କର ମତ । ପ୍ରକୃତ ପକ୍ଷେ ପାଲି, ପ୍ରାକୃତ ଓ ଅପଭ୍ରଂଶ ପରସ୍ପରଠାରୁ ଭିନ୍ନ । ସୂଚନାଯୋଗ୍ୟଯେ, ଭରତମୁନି ଖ୍ରୀଷ୍ଟପୂର୍ବ ତୃତୀୟ ଶତାବ୍ଦୀରେ ଓଡ୍ରା ଭାଷା ଓ ଓଡ୍ରମାଗଧୀ ପ୍ରବୃତ୍ତି ସମ୍ପର୍କରେ ଉଲ୍ଲେଖ କରିଥିବାରୁ ପ୍ରାମଣିତ ହୁଏ, ଓଡ଼ିଆ ଭାଷାର ପ୍ରାଚୀନ ସ୍ୱରୂପ ଥିଲା ଓଡ୍ରପ୍ରାକୃତ, ଖ୍ରୀଷ୍ଟପୂର୍ବ ତୃତୀୟ ଶତାବ୍ଦୀ ବେଳକୁ ଏହା ହେଲା ଓଡ୍ରମାଗଧୀ ତତ୍‌ପରେ ଅପଭ୍ରଂଶ ଓ ଶେଷରେ ଓଡ଼ିଆ । ଏହି ପ୍ରତ୍ୟେକ ଭାଷାର ରୂପ ପରସ୍ପରଠାରୁ ଭିନ୍ନ । ଓଡ଼ିଆ ଭାଷାର ଐତିହାସିକ ଦିଗ ପ୍ରତି ଆଲୋକପାତ କଲେ ଜଣାଯାଏ, ଏହି ଭାଷର ପାଞ୍ଚଗୋଟି ଐତିହାସିକ କାଳ ରହିଛି । ଉତ୍ପତ୍ତି କାଳରୁ ଖ୍ରୀଷ୍ଟପୂର୍ବ ତୃତୀୟ ଶତାବ୍ଦୀ ପର୍ଯ୍ୟନ୍ତ ପ୍ରଥମ ଐତିହ୍ୟ କାଳ, ଖ୍ରୀଷ୍ଟପୂର୍ବ ତୃତୀୟ ଶତାବ୍ଦୀ ଠାରୁ ଖ୍ରୀଷ୍ଟାବ୍ଦ ଷଷ୍ଠଶତାବ୍ଦୀ ପର୍ଯ୍ୟନ୍ତ ଦ୍ୱିତୀୟ ଐତିହାସିକ କାଳ ଷଷ୍ଠଶତାବ୍ଦୀଠାରୁ ଏକାଦଶ ଶତାବ୍ଦୀ ପର୍ଯ୍ୟନ୍ତ ତୃତୀୟ ଐତିହାସିକ କାଳ, ଏକାଦଶ ଶତାବ୍ଦୀ ଠାରୁ ପଞ୍ଚଦଶ ଶତାବ୍ଦୀ ପର୍ଯ୍ୟନ୍ତ ପଞ୍ଚମ ଐତିହାସିକ କାଳ । ଓଡ଼ିଆ ଭାଷା ଏହି ପାଞ୍ଚଗୋଟି ଐତିହାସିକ କାଳ ଅତିକ୍ରମ କରି ଆଧୁନିକ ଯୁଗରେ ଉପଗତ ଏବଂ ପ୍ରତ୍ୟେକ କାଳର ରୂପ ପରସ୍ପର ଠାରୁ ଭିନ୍ନ । ଏହି ପୁରୋଦୃଷ୍ଟିରେ ବ୍ୟକ୍ତ କରାଯାଇପାରେ, ଓଡ଼ିଆ ଭାଷାର ପ୍ରାଚୀନ ରୂପ ଓ

ଆଧୁନିକ ରୂପ ମଧ୍ୟରେ ନିରବଚ୍ଛିନ୍ନ ସମ୍ପର୍କ ନାହିଁ ତଥା ଐତିହାସିକ ଭାଷାବିଜ୍ଞାନ ଦୃଷ୍ଟିକୋଣରୁ ଓଡ଼ିଆ ଭାଷା ଏକ ଶାସ୍ତ୍ରୀୟ ଭାଷା ।

ଭାରତ ସରକାର ଶାସ୍ତ୍ରୀୟ ଭାଷା ଅଧିସୂଚନାରେ ଯେଉଁ ଚାରିଗୋଟି ମାନ୍ୟତା ନିର୍ଦ୍ଧାରଣ କରିଛନ୍ତି ଓଡ଼ିଆ ଭାଷାର ସେହି ଚାରିଗୋଟି ଲକ୍ଷଣ ରହିଛି । ଭାଷାବିଜ୍ଞାନର ବିଭିନ୍ନ ବିଭାଗ ମଧ୍ୟରୁ ତୁଳନାତ୍ମକ ଭାଷାବିଜ୍ଞାନ ଅନୁସାରେ ବଙ୍ଗଳା, ଆସାମୀ, ମୈଥିଳୀ ଓ ହିନ୍ଦୀ ପ୍ରଭୃତି ଭାଷା ସହିତ ଓଡ଼ିଆ ଭାଷାର ସୃଷ୍ଟି ଓ ବିକାଶ ବିଶ୍ଳେଷଣ କଲେ ଜଣାଯାଏ, ଓଡ଼ିଆ ଭାଷା ଏହିସବୁ ଭାଷାମାନଙ୍କ ମଧ୍ୟରେ ପ୍ରଥମେ ସୃଷ୍ଟ ଓ ବିକଶିତ । ଷଷ୍ଠ-ସପ୍ତମ ଶତାବ୍ଦୀରେ ଓଡ଼ିଆ ଭାଷା ସାହିତ୍ୟସୃଷ୍ଟି କରିବାକୁ ସାମର୍ଥ୍ୟ ଲାଭ କରିଥିଲେ ହେଁ ସେହି ସମୟ ପର୍ଯ୍ୟନ୍ତ ପ୍ରୋକ୍ତ ଭାଷା ଗୁଡ଼ିକର ଉତ୍ପତ୍ତି ଘଟିନଥିଲା । ଏପରିକି ଓଡ଼ିଆ ଭାଷାରେ ସପ୍ତଦଶ ଓ ଅଷ୍ଟଦଶ ଶତାବ୍ଦୀ ମଧ୍ୟରେ ବ୍ୟାପକ ମହତ୍ତ୍ୱପୂର୍ଣ୍ଣ ସାହିତ୍ୟ ସୃଷ୍ଟି ହୋଇ ସାରିଥିଲେ ହେଁ ସେ ପର୍ଯ୍ୟନ୍ତ ବଙ୍ଗଳା ଭୂଖଣ୍ଡରେ ପ୍ରଚଳିତ ବିଭିନ୍ନ ବୋଲିକୁ ନେଇ ମାନକ ବଙ୍ଗଳା ଭାଷା ସୃଷ୍ଟି ହୋଇନଥିଲା । ଏହାଦ୍ୱାରା ଜୀବନ୍ତ ଓ ପ୍ରଚଳିତ ଓଡ଼ିଆଭାଷାର ଶବ୍ଦଗଠନର ବ୍ୟାକରଣଗତ ଶୃଙ୍ଖଳା ଆବିଷ୍କାର ହୋଇପାରିଛି । ଏହି ସୂକ୍ଷ୍ମତାସୂକ୍ଷ୍ମ ଅଧ୍ୟୟନରୁ ଓଡ଼ିଆ ଭାଷାର ଶାସ୍ତ୍ରୀୟତା ପ୍ରମାଣିତ । ଐତିହାସିକ ଭାଷାବିଜ୍ଞାନ ମାନ୍ୟତାରେ ଓଡ଼ିଆ ଭାଷାର ଶାସ୍ତ୍ରୀୟତା ପୂର୍ବ ପରିଚ୍ଛେଦରେ ଆଲୋଚିତ । ସଂରଚନାତ୍ମକ ଭାଷାବିଜ୍ଞାନ ପରିପ୍ରେକ୍ଷୀରେ ଓଡ଼ିଆ ଭାଷାର ଧ୍ୱନି, ରୂପ ଓ ଅର୍ଥ ପ୍ରଭୃତିର ସମ୍ବନ୍ଧ ଅଧ୍ୟୟନ ହୋଇ ଏହାର ସ୍ୱତନ୍ତ୍ରସତ୍ତା ପ୍ରତିପାଦିତ ହୋଇପାରିଛି । ଏହାଦ୍ୱାରା ଓଡ଼ିଆ ଭାଷାର ଧ୍ୱନି, ରୂପ ଓ ଅର୍ଥ ପ୍ରଭୃତିର ଶୃଙ୍ଖଳା ବା ବ୍ୟବସ୍ଥା ପ୍ରମାଣିତ ହୋଇ ଶାସ୍ତ୍ରୀୟ ଧାରା ଆବିଷ୍କୃତ । ଓଡ଼ିଆ ଭାଷାର ମନୋଭାଷାବିଜ୍ଞାନ ଅଧ୍ୟୟନରୁ ତଥା ଓଡ଼ିଆ ଭାଷାଭାଷୀଙ୍କ ଉଚ୍ଚାରଣ ଭଙ୍ଗୀ, ଶବ୍ଦ ପ୍ରୟୋଗ ଚାତୁରୀ ବାକ୍ୟଗଠନ ପଦ୍ଧତି ଓ ଅଭିବ୍ୟକ୍ତ ଶୈଳୀରୁ ଓଡ଼ିଆ ଜାତିର ବ୍ୟକ୍ତିତ୍ୱ, ଚରିତ୍ର, ଗାମ୍ଭୀର୍ଯ୍ୟ ଓ ମନୋଭାବ ଅନୁଭୂତ ହୋଇଛି ତଥା ଭୌତିକ ଓ ମନୋବୈଜ୍ଞାନିକ ଆଧାରରେ ଓଡ଼ିଆ ଭାଷାର ଶାସ୍ତ୍ରୀୟତା ପ୍ରତିପାଦିତ ହୋଇଛି । ଓଡ଼ିଆ ଭାଷାର ସମାଜ ଭାଷାବିଜ୍ଞାନ ବିଶ୍ଳେଷଣରୁ ଓଡ଼ିଆ ସମାଜ ସହିତ ଓଡ଼ିଆ ଭାଷାର ସମ୍ବନ୍ଧ ପ୍ରମାଣିତ । ମହନୀୟତା ହେଉଛି, ଓଡ଼ିଆ ସମାଜର ସମସ୍ୟା ସହିତ ଓଡ଼ିଆ ଭାଷାର ସମସ୍ୟା ଅଙ୍ଗାଙ୍ଗୀ ଭାବରେ ଜଡ଼ିତ ଥିବାରୁ ସମାଜର ବିଭିନ୍ନ ସ୍ତରରେ ବ୍ୟବହୃତ ଭାଷାର ଧ୍ୱନି, ଶବ୍ଦ, ରୂପ, ଅର୍ଥ ଓ ବାକ୍ୟ ପ୍ରଭୃତିର ପ୍ରକୃତିଗତ ବୈଶିଷ୍ଟ୍ୟ ପରିଲକ୍ଷିତ ହୋଇଥାଏ । ଏହା ଶାସ୍ତ୍ରୀୟ ଭାଷାର ଅନ୍ୟତମ ଲକ୍ଷଣ ।

ଭାରତ ସରକାର ନିର୍ଦ୍ଧାରଣ କରିଥିବା ଶାସ୍ତ୍ରୀୟ ଭାଷାର ଚାରିଗୋଟି ଲକ୍ଷଣ ଓଡ଼ିଆ ଭାଷାରେ ନିହିତ ଥିବାରୁ ଓଡ଼ିଆ ଗୋଟିଏ ଶୁଦ୍ଧ, ଶ୍ଳୀଳ, ସାଧୁ, ଉତ୍କୃଷ୍ଟ ଓ ଶାସ୍ତ୍ରୀୟ ଭାଷା । ଏତଦ୍‌ଭିନ୍ନ ଓଡ଼ିଆ ଭାଷାର ବାକ୍ୟ ବିଜ୍ଞାନ, ରୂପବିଜ୍ଞାନ, ଶବ୍ଦବିଜ୍ଞାନ ଧ୍ୱନିବିଜ୍ଞାନ, ଅର୍ଥବିଜ୍ଞାନ, ଲିପିବିଜ୍ଞାନ, ଶୈଳୀବିଜ୍ଞାନ, ବ୍ୟୁତ୍ପତ୍ତିବିଜ୍ଞାନ, ଦାର୍ଶନିକ, ପୃଷ୍ଠଭୂମି, ବ୍ୟାକରଣ ଶୃଙ୍ଖଳା, ମୌଳିକ ସୃଷ୍ଟିସମ୍ଭାର, ବିକାଶରେ କ୍ରମ ବିକାଶ ଧାରା, ସଂରଚନା ସ୍ୱାତନ୍ତ୍ର୍ୟ ପ୍ରଭୃତି ଅନ୍ୱେଷଣ, ଅନୁଧ୍ୟାନ ଓ ଅନୁଶୀଳନ ଦ୍ୱାରା ଏହି ପ୍ରାଚୀନ ଆର୍ଯ୍ୟଭାଷାର ଶାସ୍ତ୍ରୀୟ ମହତ୍ତ୍ୱ ହୋଇଥାଏ । ଭାଷାବିଜ୍ଞାନର ଅନ୍ତଦୃଷ୍ଟିରେ ଓଡ଼ିଆ-ଏକ ଶାସ୍ତ୍ରୀୟ ଭାଷା ।

**ପାଦଟୀକା**

୧. ପ୍ରଧାନ, ନଗେନ୍ଦ୍ରନାଥ, ଓଡ଼ିଆ ନିର୍ଗୁଣ ସାହିତ୍ୟର ଭୂମିକା, ଓଡ଼ିଶା ରାଜ୍ୟ ପାଠ୍ୟପୁସ୍ତକ ପ୍ରଣୟନ ଓ ପ୍ରକାଶନ ସଂସ୍ଥା, ଭୁବନେଶ୍ୱର, ୨୦୦୯ ପୃ. ୭୩୪

୨.Geological Survey of India: D.N. Wadia ୩. ମିଶ୍ର, ଅନ୍ତର୍ଯ୍ୟାମୀ ମିଶ୍ର, ମୋ ଦୃଷ୍ଟିରେ ଓଡ଼ିଶା, କଟକ ଷ୍ଟୁଡ଼େଣ୍ଟସ୍ ଷ୍ଟୋର, ୨୦୦୪ ପୃ.୧୨୫-୧୩୦

୪. ସଂସ୍କୃତ ମହାଭାରତ, ବନପର୍ବ, ୧୧୪ ଅଧ୍ୟାୟ, ୪–୫ ଶ୍ଳୋକ

୫. ଋଗ୍‌ବେଦ, ଦଶମମଣ୍ଡଳ, ୧୫୫ ସୂକ୍ତ, ୩ୟ ମନ୍ତ୍ର

୬. ମିଶ୍ର, ଅନ୍ତର୍ଯ୍ୟାମୀ, ଓଡ଼ିଆ ଭାଷା, ଜାତି ଓ ଜାତୀୟତା, ଓଡ଼ିଶା ରାଜ୍ୟ ପାଠ୍ୟପୁସ୍ତକ ପ୍ରଣୟନ ଓ ପ୍ରକାଶନ ସଂସ୍ଥା, ଭୁବନେଶ୍ୱର, ୨୦୧୨ ପୃ.୨୦

୭. ଏକ୍କ ପୃ–୨୬

୮. ମହତାବ, ହରେକୃଷ୍ଣ, ଓଡ଼ିଶା ଇତିହାସ, ୨ୟ ସଂସ୍କରଣ, ୧୯୫୮ ପୃ.୫୭–୬୨

୯. ମିଶ୍ର, ପ୍ରବୋଧ କୁମାର, ଓଡ଼ିଆ ଜାତିର ଇତିହାସ ଓ ସଂସ୍କୃତ (ଇତିହାସ) ବିଦ୍ୟାପୁରୀ, ବାଲୁବଜାର କଟକ, ୨୦୦୮ ପୃ.୭

୧୦. ମହତାବ, ହରେକୃଷ୍ଣ, ଓଡ଼ିଶା ଇତିହାସ, ପୃ–୭

୧୧. ମହାପାତ୍ର, ପତିତ ପାବନ, ପ୍ରିୟଦର୍ଶୀ ଅଶୋକ ଓ କଳିଙ୍ଗ ଯୁଦ୍ଧ, ସୁଦେଷ୍ଣା କ୍ରିଏଟିଭ୍‌ସ, ୯, କ୍ଷେତ୍ରସନ ସ୍କୋୟାର, ଭୁବନେଶ୍ୱର, ୨୦୧୨ ପୃ–୩୫

୧୨. ମହତାବ, ହରେକୃଷ୍ଣ, ଓଡ଼ିଶା ଇତିହାସ ପୃ –୧୧

୧୩. ନାଟ୍ୟଶାସ୍ତ୍ର–ଭରତ, ୨ୟ ଭାଗ, ଓଡ଼ିଶା ସାହିତ୍ୟ ଏକାଡ଼େମୀ, ଭୁବନେଶ୍ୱର, ୨୦୦୩ ପୃ.୧୫୭–୫୮

୧୪. ପାଢ଼ୀ, ବେଣୀମାଧବ, ଓଡ଼ିଶାର ସାହିତ୍ୟ, ସଂସ୍କୃତି ଓ ଧର୍ମଧାରା, ୧୯୯୫ ପୃ–୬

୧୫. ମିଶ୍ର, ପ୍ରବୋଧକୁମାର, ଓଡ଼ିଆ ଜାତିର ଇତିହାସ ଓ ସଂସ୍କୃତ (ଇତିହାସ) ପୃ–୫୪

୧୬. ଏକ୍କ ପୃ–୬୯–୭୦

୧୭. ରାଜଗୁରୁ, ସତ୍ୟନାରାୟଣ, ଓଡ଼ିଆ ଭାଷାର ଉପଭାଷା, ଓଡ଼ିଶା ସାହିତ୍ୟ ଏକାଡ଼େମୀ, ୧୯୮୨, ପୃ–୪୨

୧୮. ମହତାବ, ହରେକୃଷ୍ଣ, ଓଡ଼ିଶା ଇତିହାସ, ପୃ–୩୭–୩୮

୧୯. ମିଶ୍ର, ପ୍ରବୋଧ କୁମାର, ଓଡ଼ିଆ ଜାତିର ଇତିହାସ ଓ ସଂସ୍କୃତ (ଇତିହାସ) ପୃ–୭୬

୨୦. ରାଜଗୁରୁ, ସତ୍ୟନାରାୟଣ, ଓଡ଼ିଶା ଭାଷାର ଉପଭାଷା ପୃ–୪୩

୨୧. କର, କରୁଣାକର, ଆଶ୍ଚର୍ଯ୍ୟ ଚର୍ଯ୍ୟାଚୟ, ଓଡ଼ିଶା ସାହିତ୍ୟ ଏକାଡ଼େମୀ, ୨ୟ ସଂସ୍କରଣ, ୧୯୮୯ ପୃ.–୬୬–୭୫

୨୨. ମହାନ୍ତି, ଆର୍ତ୍ତବଲ୍ଲଭ, ପ୍ରାଚୀନ ଗଦ୍ୟପଦ୍ୟାଦର୍ଶ, ଓଡ଼ିଶା ସାହିତ୍ୟ ଏକାଡ଼େମୀ, ୧୯୯୮ ମୁଖବନ୍ଧ ପୃ–୮୯

୨୩. ପଟ୍ଟନାୟକ, ଦେବୀ ପସନ୍ନ, ଓଡ଼ିଆ ଭାଷା ଓ ଭାଷାବିଜ୍ଞାନ, ଗ୍ରନ୍ଥମନ୍ଦିର ୨୦୦୭ ପୃ.୭୫

୨୪. ମହାନ୍ତି, ବଂଶୀଧର, ଓଡ଼ିଆ ସାହିତ୍ୟର ଇତିହାସ, ୧ମଭାଗ, ଫ୍ରେଣ୍ଡସ୍ ପବ୍ଲିସର୍ଶ, ୧୯୮୪ ପୃ.୧୧୨

୨୫. ନାଏକ, ସୁଦାମ, ସୋନପୁର ଶିଳାଲେଖ (ଝଙ୍କାର, ୫୪ ବର୍ଷ, ଦ୍ୱାଦଶସଂଖ୍ୟା, ମାର୍ଚ୍ଚ ୨୦୦୩ ପୃ.୧୪୯୪

୨୬. ଆଚାର୍ଯ୍ୟ, ପରମାନନ୍ଦ, ଭୁବନେଶ୍ୱର ଶିଳାଲିପି, ଓଡ଼ିଶା ସାହିତ୍ୟ ଏକାଡ଼େମୀ ୩ୟ ସଂସ୍କରଣ ୨୦୦୭ ପୃ–୪୨–୪୬

୨୭. କର, କରଣାକର, ଆଶ୍ଚର୍ଯ୍ୟ ଚର୍ଯ୍ୟାଚୟ ପୃ–୨୬୫

୨୮. ସାହୁ, ବାସୁଦେବ, ଭାଷାବିଜ୍ଞାନ ଓ ଭାଷାବିଜ୍ଞାନୀ, ଗ୍ରନ୍ଥମନ୍ଦିର, ୪ର୍ଥ ସଂସ୍କରଣ ୧୯୯୬ ପୃ.୧୪

(*ସୌଜନ୍ୟ* : ନିର୍ଦ୍ଦେଶକ, ଓଡ଼ିଆ ଭାଷା ପ୍ରତିଷ୍ଠାନ, ଭୁବନେଶ୍ୱର)

ସଦସ୍ୟ
ଓଡ଼ିଶା ସାହିତ୍ୟ ଏକାଡ଼େମୀ
ଦକ୍ଷିଣକାଳୀ ମାର୍ଗ, ଢେଙ୍କାନାଳ





# ଓଡ଼ିଆ ଭାଷା ଆନ୍ଦୋଳନ ଓ ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ

**ଡକ୍ଟର ଜନ୍ମେଜୟ ଚୌଧୁରୀ**

ସଂପ୍ରତି ଓଡ଼ିଆ ଭାଷାର ସ୍ଥିତି ସମ୍ପର୍କରେ ଆଲୋଚନା କରିବା ପୂର୍ବରୁ ପ୍ରଥମେ ଆମକୁ ଓଡ଼ିଆ ଭାଷାର ଇତିହାସକୁ ଅନୁଶୀଳନ କରିବାକୁ ହେବ । ସମ୍ବିଧାନ ସ୍ୱୀକୃତ ଭାରତୀୟ ଭାଷାମାନଙ୍କ ମଧ୍ୟରେ ଥିବା ଓଡ଼ିଆ ଭାଷା ସମୟାନୁକ୍ରମେ ବିଭିନ୍ନ ଧାରାରେ ପରିବର୍ତ୍ତନକୁ ଗ୍ରହଣ କରି ବର୍ତ୍ତମାନର ରୂପ ଧାରଣ କରିଛି । ପ୍ରାଚୀନ ଭାରତୀୟ ଆର୍ଯ୍ୟ ଭାଷା ଭଗ୍ନାଂଶର କ୍ରମବର୍ଦ୍ଧିତ ଭାଷା ହେଉଛି ଓଡ଼ିଆ ଭାଷା । ଏହାର ପୂର୍ବ ରୂପ ହେଉଛି ଅପଭ୍ରଂଶ ଓ ପ୍ରାକୃତ । ମାତ୍ର ପ୍ରାଚୀନ ରୂପ ହେଲା ଓଡ୍ର ବିଭାଷା, ଯାହାର ସୂଚନା ଭରତ ମୁନିଙ୍କ ନାଟ୍ୟଶାସ୍ତ୍ର ଗ୍ରନ୍ଥରୁ ମିଳିଥାଏ । ଲୌକିକ ବା ସଂସ୍କୃତ ଭାଷା ସହିତ ନାଟ୍ୟ ସାହିତ୍ୟରେ ପ୍ରଚଳିତ ତତ୍କାଳୀନ ସାତଟି ବିଭାଷା 'ଶବର, ଆଭୀର, ଚାଣ୍ଡାଳ, ଶାବର, ଦ୍ରାବିଡ଼ ବନଚର ସହିତ ଓଡ୍ର' ବିଭାଷାର ନାମୋଲ୍ଲେଖ କରିଛନ୍ତି ଭରତ ତାଙ୍କ ନାଟ୍ୟଶାସ୍ତ୍ର ଗ୍ରନ୍ଥରେ । ତେଣୁ ଏହି ସମୟରୁ ଉଡ୍ର ବା ଓଡ଼ିଆ ଭାଷାର ଭିତ୍ତିଭୂମିଟିଏ ତିଆରି ହୋଇସାରିଛି କହିଲେ ଭୁଲ ହେବ ନାହିଁ । ପୁନଶ୍ଚ ଏହି ଔଡ୍ରୀ ବିଭାଷା କେବଳ କଥିତ ନୁହେଁ, ଲିଖିତ ରୂପ ଥିବାର ସେ ଦର୍ଶାଇଛନ୍ତି । 'ନାଟ୍ୟଶାସ୍ତ୍ର'ରେ ବିଭିନ୍ନ ଶୈଳୀର ଉଲ୍ଲେଖ ପ୍ରସଙ୍ଗରେ ବିଭିନ୍ନ ରଚନା ଶୈଳୀ ଯଥା– ଆବନ୍ତୀ, ପାଞ୍ଚାଳ, ମଧ୍ୟମା, ଦାକ୍ଷିଣାତ୍ୟ ସହ ଔଡ୍ରୀ ମାଗଧୀର ନାମ ଉଲ୍ଲେଖ କରିଛନ୍ତି । ଏହି ଔଡ୍ରୀ ମାଗଧୀ ରୀତି ଓଡ଼ିଶା, ବଙ୍ଗ, ମଗଧ, ପ୍ରାଗ୍‌ଜ୍ୟୋତିଷ, ତାମ୍ରଲିପ୍ତ ପାଖାପାଖି ଅଞ୍ଚଳର କଥିତ ଭାଷା ଥିଲା । ତେବେ ଔଡ୍ରୀ ବିଭାଷାର ଲିଖିତ ରୂପକୁ ଆମେ ଅଶୋକଙ୍କ ଧଉଳି, ଜଉଗଡ଼ ଶିଳାଲେଖ ଏବଂ ଖାରବେଳଙ୍କ ହାତୀଗୁମ୍ଫା ଶିଳାଲେଖରେ ଦେଖିବାକୁ ପାଉ । କାରଣ ଅଶୋକ ଏବଂ ଖାରବେଳଙ୍କ ଅନୁଶାସନ ଶିଳାଲେଖ ଲୌକିକ ବା ଆଞ୍ଚଳିକ ଭାଷାରେ ଲିଖିତ ହୋଇଥିବାରୁ ଏହି ଲିପିକୁ ତତ୍କାଳୀନ ପ୍ରଚଳିତ ଔଡ୍ରୀ ବିଭାଷାର ଲିଖିତ ରୂପ ଭାବେ ଗ୍ରହଣ କରାଯାଇଥାଏ । ଭରତ ମୁନିଙ୍କ ପରେ ଓଡ଼ିଶା ଅଞ୍ଚଳର ଭାଷା ସମ୍ବନ୍ଧୀୟ ଉଲ୍ଲେଖ ସପ୍ତମ ଶତାବ୍ଦୀର ଚୀନ ପରିବ୍ରାଜକ ହୁଏନ୍‌ସାଂଙ୍କ ବିବରଣୀରୁ ଆମେ ପାଇଥାଉ । ସେ 'ଉ–ଚ' ବା ଉଡ୍ର ଦେଶର ଲୋକମାନଙ୍କ ସମ୍ପର୍କରେ କହିଛନ୍ତି– 'ଏହି ଅଞ୍ଚଳର ଅଧିବାସୀ ଉଗ୍ର ପ୍ରକୃତିର । ତେଣୁ ସେମାନଙ୍କର କଥିତ ଭାଷା ମଧ୍ୟ ଭାରତର ଭାଷାଠାରୁ ଭିନ୍ନ । ଏହି ବର୍ଣ୍ଣନାରୁ ଜଣାପଡ଼େ ଯେ ଉ–ଚ ବା ଓଡ଼ିଶା ଅଞ୍ଚଳରେ ପ୍ରଚଳିତ ଲୋକଭାଷା ଅନ୍ୟ ଭାରତୀୟ ଭାଷାଠାରୁ ପୃଥକ୍ ହୋଇ ଆତ୍ମପ୍ରକାଶ କରିଥିଲା, ଯାହାକୁ ଭରତଙ୍କ ଉଡ୍ର ବିଭାଷାର ପରବର୍ତ୍ତୀ ସଂସ୍କରଣ ରୂପେ ଗ୍ରହଣ କରାଯାଇପାରେ । ଏହା ବ୍ୟତୀତ ହୁଏନ୍‌ସାଂ ବା ତାଙ୍କ ପରବର୍ତ୍ତୀ ସମୟ ହେଉଛି ଭାରତୀୟ ଆର୍ଯ୍ୟ ଭାଷା ଇତିହାସରେ ଅପଭ୍ରଂଶ ଭାଷା ବିକାଶ ଯୁଗ । ଓଡ଼ିଆ ଭାଷାର କ୍ରମବିକଶିତ ରୂପ ଔଡ୍ରୀ ଅପଭ୍ରଂଶ ବା ପୂର୍ବ ମାଗଧୀ ଅପଭ୍ରଂଶର ଏକ ଶାଖା ଭାବରେ ଚର୍ଯ୍ୟା ପରବର୍ତ୍ତୀ ସମୟରେ ରାଜାନୁଗ୍ରହ ପାଇ

ଉଦ୍‌ଭାସିତ ହେବା ପରେ ସାରଳା ଦାସ ତାଙ୍କର ମହାନ୍ ଗ୍ରନ୍ଥଗୁଡ଼ିକୁ ଅପଭ୍ରଂଶ ପରିବର୍ତ୍ତେ ପ୍ରଚଳିତ ଓଡ଼ିଆ ଭାଷାରେ ଲେଖିବାର ନିଷ୍ପତ୍ତି ନେଇଥିଲେ । ଏହାଦ୍ୱାରା ତତ୍କାଳୀନ ଓଡ଼ିଆ ଭାଷାର ଏକ ନିର୍ଦ୍ଦିଷ୍ଟ ଚିତ୍ର ମିଳି ନାହିଁ, ବରଂ ତାଙ୍କ ସାହିତ୍ୟରେ ସେସମୟରେ ପ୍ରଚଳିତ ଅନ୍ୟ କେତେକ ଆଞ୍ଚଳିକ ଭାଷା ଓ ଲିପି ନାମୋଲ୍ଲେଖ କରି ଆଞ୍ଚଳିକ ଭାଷାଗୁଡ଼ିକର ସ୍ୱାତନ୍ତ୍ର୍ୟ ଦର୍ଶାଇଛନ୍ତି । ସେସମୟରେ ଓଡ଼ିଆ ସହିତ ତେଲେଗୁ, ନାଗରୀ ଆଦି ୬୪ ପ୍ରକାରର ଭାଷା ଓ ୧୨ ପ୍ରକାର ଲିପି ପ୍ରଚଳିତ ଥିବାର ପ୍ରମାଣ ମିଳେ । ସାରଳା ଦାସଙ୍କ ପରେ 'ଓଡ଼ିଆ ଭାଷା'ର ନାମୋଲ୍ଲେଖ ପରବର୍ତ୍ତୀ କବିଙ୍କ ଦୃଷ୍ଟିରେ ନଥିବାବେଳେ ୧୬ଶ ଶତାବ୍ଦୀର କବି ଜଗନ୍ନାଥ ଦାସଙ୍କ ଭାଗବତରେ ଓଡ଼ିଆ ଭାଷାକୁ 'ପ୍ରାକୃତ' ଭାଷା ବୋଲି କହିଛନ୍ତି । ଏଠାରେ ଉଲ୍ଲେଖଯୋଗ୍ୟ ଯେ 'ପ୍ରାକୃତ୍ୟ ଭାଷା' ହେଉଛି ସାଧାରଣ ଜନତାଙ୍କ ପ୍ରଚଳିତ ଭାଷା ଏବଂ ସଂସ୍କୃତ ହେଉଛି ପଣ୍ଡିତ ବା ଉଚ୍ଚବର୍ଗର ଲୋକଙ୍କର ପ୍ରଚଳିତ ଭାଷା । ଏହା ବ୍ୟତୀତ ଭାଷାତତ୍ତ୍ୱବିତ୍ ଓ ଆଳଙ୍କାରିକମାନେ 'ଭାଷା' ଆଲୋଚନା ବେଳେ 'ପ୍ରାକୃତ' ଭାଷାକୁ ଭାରତୀୟ ଆର୍ଯ୍ୟ ଭାଷାର କ୍ରମବିକାଶର ଏକ ସ୍ୱତନ୍ତ୍ର ସ୍ତର ଭାବରେ ଗ୍ରହଣ କରିଛନ୍ତି । ଏହି ପ୍ରାକୃତ ସଂସ୍କୃତ ଭାଷାର ପରବର୍ତ୍ତୀ ରୂପ ଯାହାକୁ ଦିବ୍ୟ ଭାଷାର ବିପରୀତ ମଧ୍ୟ କୁହାଯାଇପାରେ । ଅଷ୍ଟାଦଶ ଶତାବ୍ଦୀର କବି ଅଭିମନ୍ୟୁ ସଂସ୍କୃତ ବା ତତ୍ସମୂଳକ ଭାଷାକୁ 'ଦିବ୍ୟ ଭାଷା' ଓ ପ୍ରାକୃତ ବା କଥିତ ଲୋକଭାଷାକୁ 'ଅଦିବ୍ୟ ଭାଷା' ବୋଲି କହିଛନ୍ତି । ସେଥିପାଇଁ ତାଙ୍କ ସାହିତ୍ୟ ପଣ୍ଡିତ ଓ ସାଧାରଣ ଲୋକଙ୍କ ବୋଧଗମ୍ୟ ପାଇଁ ଦିବ୍ୟ ଓ ଅଦିବ୍ୟ ଭାଷାରେ ରଚିତ କରିଛନ୍ତି ବୋଲି ସ୍ୱୀକାର ସେ କରିଛନ୍ତି । ଏ ସମସ୍ତ ଆଲୋଚନାରୁ ଜଣାପଡ଼େ ଓଡ଼ିଆ ଭାଷା 'ଔଡ୍ରୀ ବିଭାଷା, ଔଡ୍ରୀ ଅପଭ୍ରଂଶ, ପୁଣି ପ୍ରାକୃତ, ଭାଷା, ଦିବ୍ୟ ଅଦିବ୍ୟ' ଭାଷା ପ୍ରଭୃତି ଭିନ୍ନ ଭିନ୍ନ ନାମରେ ବିଭିନ୍ନ ଗ୍ରନ୍ଥରେ ନାମିତ ହୋଇଛି । ଏହି ଭାଷାର ଅତୀତ ପରମ୍ପରା ଭାରତୀୟ ଅନ୍ୟାନ୍ୟ ଭାଷାପରି ଓ କେତେକ କ୍ଷେତ୍ରରେ ଅନ୍ୟାନ୍ୟ ଭାଷା ଅପେକ୍ଷା ବହୁ ପ୍ରାଚୀନ । ଏହାର ଐତିହାସିକତା ଖ୍ରୀ:ଅ: ଦ୍ୱିତୀୟ ଶତକରୁ ଆରମ୍ଭ ହୋଇ କାଳାନୁକ୍ରମରେ ଏହାର ଗତିଶୀଳତା ବିଭିନ୍ନ ସମୟରେ ଗ୍ରନ୍ଥରେ ଆତ୍ମପ୍ରକାଶ ହୋଇଥିଲେ ମଧ୍ୟ ମଧ୍ୟବର୍ତ୍ତୀ ସମୟରେ ବିଦେଶୀମାନଙ୍କର ଦ୍ୱାରା ଭାଷାର ଅବକ୍ଷୟ ହେଲା ।

୧୫୬୮ ମସିହା ପର୍ଯ୍ୟନ୍ତ ଓଡ଼ିଶାର ସ୍ୱାଧୀନତା ଅକ୍ଷୁଣ୍ଣ ଥିଲା ଏବଂ ସେତେବେଳେ ଓଡ଼ିଶାକୁ ଶାସନ କରୁଥିଲେ ରାଜା ମୁକୁନ୍ଦ ଦେବ । ମାତ୍ର ଗୋହିରା–ଟିକିରି ଯୁଦ୍ଧରେ ରାଜା ମୁକୁନ୍ଦ ଦେବ ଯେତେବେଳେ ପରାସ୍ତ ହେଲେ ଆଫ୍‌ଗାନ ସୈନ୍ୟବାହିନୀ ପାଖରେ, ତାହା ହିଁ ହେଲା ସ୍ୱାଧୀନ ଓଡ଼ିଶାର ଶେଷ ସୂର୍ଯ୍ୟାସ୍ତ ଏବଂ ଆଫ୍‌ଗାନ, ମୋଗଲ, ମରହଟ୍ଟାମାନଙ୍କ ଧ୍ୱଂସଲୀଳାର ସୂର୍ଯ୍ୟୋଦୟ । ସେମାନଙ୍କ ଲୁଣ୍ଠନ, ଦୁର୍ଦ୍ଧର୍ଷ ଶାସନ ଚାଲିଲା ୧୮୦୩ ମସିହା ପର୍ଯ୍ୟନ୍ତ । ମୋଗଲ ଶାସନର ଅବସାନ ପରେ ଯେ ଓଡ଼ିଶା ତା'ର ସ୍ୱାଧୀନତା ଫେରି ପାଇଲା, ତା'ନୁହେଁ, ଏହା ପରେ ଏହା ପାଲଟିଲା ବେପାରୀ ଇଂରେଜ ସଭ୍ୟତାର ଗୋଲାମ । ସେତେବେଳର ଓଡ଼ିଶା ମୁଖ୍ୟତଃ କଟକ–ପୁରୀ–ବାଲେଶ୍ୱରକୁ ନେଇ ଶାସିତ ହେଉଥିଲା । ଓଡ଼ିଆ ଭାଷା, ସଂସ୍କୃତି ସେତେବେଳକୁ ଭୂଲୁଣ୍ଠିତ ହୋଇ ସାରିଥିଲା । କାରଣ ମରହଟ୍ଟା ମୋଗଲମାନେ ପାର୍ସୀ ଭାଷାକୁ ଓଡ଼ିଶାର ରାଜଭାଷା ରୂପେ ମାନ୍ୟତା ଦେଇଥିଲେ । ଇଂରେଜମାନେ ତ ଓଡ଼ିଶାକୁ ବଙ୍ଗଳାର ଏକ ଅଂଶରୂପେ ଗ୍ରହଣ କରିଥିଲେ ଏବଂ କେବଳ ରାଜସ୍ୱ ଉପାର୍ଜନ ହିଁ ସେମାନଙ୍କର ମୂଳଲକ୍ଷ୍ୟ ଥିଲା । ସେଥିପାଇଁ ସେମାନେ ବଙ୍ଗାଳୀମାନଙ୍କୁ ରାଜକର୍ମଚାରୀ ରୂପେ ଆଣି ଓଡ଼ିଶାରେ ଅବସ୍ଥାପିତ କଲେ ଏବଂ ଏହି ବଙ୍ଗାଳୀମାନେ ହିଁ ଓଡ଼ିଶାରେ ବଙ୍ଗଳା ଭାଷାର ପ୍ରଚାରରେ ମଗ୍ନ ରହିଲେ । ଦୀର୍ଘ ଶହେ ବର୍ଷ ଧରି ଓଡ଼ିଆ ଭାଷା ଅବହେଳିତ ହୋଇସାରିଲା ପରେ ଓଡ଼ିଆମାନଙ୍କ ମନରେ ଭାଷା ପ୍ରୀତି ଜାଗ୍ରତ ହେଲା । ଅବଶ୍ୟ ଏଥିପାଇଁ ଅନେକ କାରଣ ପ୍ରଚ୍ଛଦପଟ୍ଟରେ ଥିଲା ।

ଊନବିଂଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧରେ ଭାଷାଗତ ସମସ୍ୟା ହିଁ ଓଡ଼ିଶାରେ ନବଜାଗରଣ ସୃଷ୍ଟି କରିଥିଲା । ୧୮୦୩ ମସିହାରେ ଇଂରେଜମାନେ ଓଡ଼ିଶା ଅଧିକାର କରିବା ପରଠାରୁ ଓଡ଼ିଶାରେ ଭାଷାଗତ ତଥା ସାଂସ୍କୃତିକ ସମସ୍ୟା ସୃଷ୍ଟି ହେଲା । ଓଡ଼ିଶାର କିଛି ଅଂଶ ତେଲୁଗୁ ଭାଷା ଅଧ୍ୟୁଷିତ ଅଞ୍ଚଳ, ବଙ୍ଗାଳୀ ଭାଷା ଅଧ୍ୟୁଷିତ ଅଞ୍ଚଳ ଏବଂ ହିନ୍ଦୀ ଭାଷା ଅଧ୍ୟୁଷିତ ଅଞ୍ଚଳରେ ରହିଥିଲା । ଅର୍ଥାତ୍ ଏହି ବିଚ୍ଛିନ୍ନାଞ୍ଚଳ ମାନ୍ଦ୍ରାଜ ପ୍ରେସିଡେନ୍‌ସି, ବଙ୍ଗ ପ୍ରେସିଡେନ୍‌ସି ଓ ମଧ୍ୟପ୍ରଦେଶରେ ରହିଥିଲା । ଓଡ଼ିଆ ଭାଷାର ପୁସ୍ତକର ଘୋର ଅଭାବ ଯୋଗୁଁ ଶିକ୍ଷା କ୍ଷେତ୍ରରେ ବହୁ ପ୍ରତିବନ୍ଧକ ସୃଷ୍ଟି କରିଥିଲା । ଏହାର ସୁଯୋଗ ନେଇ ବହୁ ବଙ୍ଗୀୟ ଶିକ୍ଷିତ ବ୍ୟକ୍ତି ଓଡ଼ିଆ ଭାଷାର ଅସ୍ତିତ୍ୱ ଲୋପ କରିବା ପାଇଁ ଚେଷ୍ଟା କରିଥିଲେ । ଏପରିକି ବାଲେଶ୍ୱର ଜିଲ୍ଲା ସ୍କୁଲର ଯେଉଁ ଜଣେ ବଙ୍ଗୀୟ ଶିକ୍ଷକ କାନ୍ତିଚନ୍ଦ୍ର ଭଟ୍ଟାଚାର୍ଯ୍ୟ 'ଓଡ଼ିଆ ଏକ ସ୍ୱତନ୍ତ୍ର ଭାଷା ନୟ' ବୋଲି ଦର୍ଶାଇଥିଲେ, ଏହାକୁ ସେ ସମୟର ବଙ୍ଗର ବିଶିଷ୍ଟ ଐତିହାସିକ ରାଜେନ୍ଦ୍ର ଲାଲ ମିତ୍ର ମଧ୍ୟ ସମର୍ଥନ କରିଥିଲେ । ମାତ୍ର ବିଖ୍ୟାତ ଭାଷାବିତ୍ ଜନ୍ ବିମ୍‌ସ୍, ଓଡ଼ିଶା ଗଭର୍ଣ୍ଣର ଗୋଲ୍ଡସ୍‌ବରୀ ଏବଂ ବଙ୍ଗର ଜଣେ ପ୍ରସିଦ୍ଧ ଲେଖକ ବାସୁଦେବ ମୁଖୋପାଧ୍ୟାୟ କାନ୍ତିଚନ୍ଦ୍ର ଏବଂ ରାଜେନ୍ଦ୍ର ଲାଲଙ୍କର ଏହି ମତକୁ ଗ୍ରହଣ କରିନଥିଲେ । ଏହି ବିବାଦ ବିଭିନ୍ନ ସଭାସମିତିରେ ଚର୍ଚ୍ଚାର ବିଷୟ ହୋଇଥିବାସ୍ଥଳେ, ବହୁ ପତ୍ର ପତ୍ରିକାରେ ମଧ୍ୟ ପ୍ରକାଶିତ ହୋଇଥିଲା । ବଙ୍ଗଳା ଭାଷା ପ୍ରତି ପ୍ରୀତି ରଖିଥିବା ବ୍ୟକ୍ତିମାନେ ସେମାନଙ୍କର ମତକୁ 'କଟକ ସୋସାଇଟି', 'ଡିବେଟିଙ୍ଗ୍ କ୍ଲବ୍' ତଥା ସାପ୍ତାହିକ ପତ୍ରିକା 'ଉତ୍କଳ ହିତୈଷିଣୀ' ମାଧ୍ୟମରେ ଉତ୍‌ଥାପନ କରିବାକୁ ଲାଗିଲେ । ଓଡ଼ିଆ ଭାଷାପ୍ରତି ଅନୁରକ୍ତ ଥିବା ବିଦ୍ୱାନମାନେ ଏହି ମତକୁ ଖଣ୍ଡନ କରିଥିଲେ 'ଉତ୍କଳ ସଭା' ନାମକ ଏକ ସଂଗଠନ ଏବଂ 'ଉତ୍କଳ ଦୀପିକା' ଓ 'ସମ୍ବାଦ ବାହିକା' ଆଦି ଖବର କାଗଜ ମାଧ୍ୟମରେ । ୧୮୬୬ ମସିହାରେ କଟକରେ ବିଚିତ୍ରାନନ୍ଦ ଦାସଙ୍କ ଦ୍ୱାରା ପ୍ରିଣ୍ଟିଂ ପ୍ରେସ୍‌ର ସ୍ଥାପନା ଫଳରେ ଓଡ଼ିଶାରେ ଓଡ଼ିଆ ଭାଷାରେ ପ୍ରସାର ପାଇଁ ସୁଯୋଗ ମିଳିଥିଲା, ଯାହାକି ଗୌରୀଶଙ୍କର ରାୟଙ୍କ ସମ୍ପାଦନାରେ 'ଉତ୍କଳ ଦୀପିକା'ର ପ୍ରକାଶ ପାଇଁ ସୁଯୋଗ ସୃଷ୍ଟି କରିଥିଲା । ସେହିପରି ଭାବରେ ବାଲେଶ୍ୱରରେ ଫକୀର ମୋହନ ସେନାପତି ଏବଂ ଶ୍ୟାମାନନ୍ଦ ଦେଙ୍କ ଦ୍ୱାରା ସ୍ଥାପିତ ଦୁଇଟି ଛାପାଖାନା 'ଉତ୍କଳ ଦର୍ପଣ' ଏବଂ 'ସମ୍ବାଦ ବାହିକା' ଦୁଇଟି ପାକ୍ଷିକ ଖବରକାଗଜର ପ୍ରକାଶ ନିମିତ୍ତ ସହାୟକ ହୋଇଥିଲା । ସମୟକ୍ରମେ 'ସମ୍ବଲପୁରର ହିତୈଷିଣୀ', 'ଗଞ୍ଜାମ ଓଡ଼ିଆ ହିତବାଦିନୀ', 'ଦି ଗଞ୍ଜାମ ନିଉଜ୍', 'ଦି କଟକ ଷ୍ଟାର' ଆଦି ଖବରକାଗଜ ଆତ୍ମପ୍ରକାଶ କରିବାକୁ ଲାଗିଲେ । ଏହା ଓଡ଼ିଆମାନଙ୍କ ମଧ୍ୟରେ ଏକତାକୁ ଦୃଢ଼ୀଭୂତ କରିବା ଦିଗରେ ମଧ୍ୟ ସହାୟକ ହୋଇଥିଲା ।

ଯେତେବେଳେ ଭାଷାଗତ ଏକତ୍ୱ ଓଡ଼ିଆମାନଙ୍କ ଶିରାପ୍ରଶିରାରେ ପ୍ରବାହିତ କରିବାର ପ୍ରଚେଷ୍ଟା ବଳବତ୍ତର ହେଉଥିଲା, ସେତେବେଳେ ମଧୁସୂଦନ ଦାସ ଏହାକୁ ପ୍ରେରଣା ଯୋଗାଇ ଥିଲେ । ସେ କଟକରେ ୧୮୮୨ ମସିହାରେ 'ଉତ୍କଳ ସଭା' ସ୍ଥାପନ କରିଥିଲେ ଏବଂ ଏହାର ପ୍ରଥମ ସମ୍ମିଳନୀ 'କଟକ ପ୍ରିଣ୍ଟିଂ କମ୍ପାନି' ପରିସରରେ ସେହି ବର୍ଷ ମେ ୨୧ ତାରିଖରେ ସଂଘଟିତ ହୋଇଥିଲା । ଏହି ସମ୍ମିଳନୀରେ ସଭାପତି ଥିଲେ ଚୌଧୁରୀ କାଶୀନାଥ ଦାସ ଏବଂ ସମ୍ପାଦକ ଥିଲେ ଗୌରୀଶଙ୍କର ରାୟ । ମଧୁବାବୁ ଏହି ସଭା ସହିତ ଆରମ୍ଭରୁ ଜଡ଼ିତ ଥିଲେ ବିଶେଷ ଭାବରେ । ମେ ୨୧ ତାରିଖରେ ୧୮୮୩ ମସିହାରେ ଇଲ୍‌ବର୍ଟ ବିଲ୍ ଏ ସମ୍ପର୍କରେ ଆଲୋଚନା କରିଥିଲେ ଏବଂ ସମସ୍ତ ସଭ୍ୟମାନେ ଏହାକୁ ପୂର୍ଣ୍ଣ ପ୍ରାଣରେ ସମର୍ଥନ କରିଥିଲେ । 'ଉତ୍କଳ ଦୀପିକା'ର ଲେଖା ଅନୁସାରେ ସେମାନେ ବଡ଼ଲାଟ ପାଖକୁ ଏହି ବିଲ୍ ଗ୍ରହଣ କରିବା ପାଇଁ ଅନୁରୋଧ କରି ଦାବିପତ୍ର ଲେଖିଥିଲେ । ପୁନର୍ବାର ୧୮୬୬ରେ ସେମାନେ ସରକାରଙ୍କୁ ପେଟିସନ୍ ଦେଇ ଲେଜିସ୍‌ଲେଟିଭ୍ କାଉନ୍‌ସିଲ୍‌ରେ ଭାରତୀୟମାନଙ୍କ

ସଂଖ୍ୟା ବଢ଼ାଇବାକୁ ନିବେଦନ କରିଥିଲେ । ସେହିବର୍ଷ ଭାରତୀୟ ଜାତୀୟ କଂଗ୍ରେସର ଦ୍ୱିତୀୟ ଅଧିବେଶନରେ ଯୋଗଦେବା ପାଇଁ 'ଉତ୍କଳ ସଭା' ତରଫରୁ ମଧୁସୂଦନ ଦାସ, ବୈକୁଣ୍ଠନାଥ ଦେ, ଭଗବାନ ଦାସ ଏବଂ ରମେଶ ଚନ୍ଦ୍ର ମଣ୍ଡଳ ଯାଇଥିଲେ । ବାସ୍ତବିକ ମଧୁବାବୁ ଓ ଗୌରୀଶଙ୍କର ରାୟ ପ୍ରଥମେ କଂଗ୍ରେସର ନରମପନ୍ଥୀ ବିଚାରଧାରା ଓଡ଼ିଶାକୁ ପ୍ରଦାନ କରିଥିଲେ ଏବଂ ଏହା ନିରବଚ୍ଛିନ୍ନ ଭାବରେ ୧୯୦୩ ମସିହା ପର୍ଯ୍ୟନ୍ତ ବଳବତ୍ତର ରହିଥିଲା ।

ଇତିହାସର ଏକ ନିର୍ଣ୍ଣାୟକ ମୋଡ଼ରେ ୧୯୦୦ ମସିହାରେ ଅକ୍ଟୋବର ତୃତୀୟ ସପ୍ତାହରେ ମଧୁସୂଦନ ଦାସ ସିମିଳା ଯାଇ ଭାରତର ବଡ଼ଲାଟ ଲର୍ଡ଼ କର୍ଜନଙ୍କ ସମକ୍ଷରେ ବିଖଣ୍ଡିତ ବିଭାଜିତ ନିଷ୍ପେଷିତ ତଥା ପରିଚୟହୀନ ଓଡ଼ିଆ ଜାତିର ଅନ୍ତର୍ଦାହକୁ ଅତ୍ୟନ୍ତ ମାର୍ମିକ ଭାବରେ ଉପସ୍ଥାପିତ କରିଥିଲେ । ମଧୁସୂଦନଙ୍କର ନିମନ୍ତ୍ରଣରେ ୧୬.୧୨.୧୯୦୦ରେ ଲର୍ଡ଼କର୍ଜନ ପୁରୀ ଓ ଭୁବନେଶ୍ୱର କଳା ଭାସ୍କର୍ଯ୍ୟ ବିମଣ୍ଡିତ କୀର୍ତ୍ତିରାଜି ପରିଦର୍ଶନ ପରେ ଓଡ଼ିଆ ଭାଷା ଅଞ୍ଚଳର ମିଶ୍ରଣ ଲାଗି ପ୍ରତିଶ୍ରୁତିବଦ୍ଧ ହେଲେ । ଏହି ସମୟରେ ବେରାର ହାଇଦ୍ରାବାଦରୁ ବିଚ୍ଛିନ୍ନ ହେବା, ୧୮୯୧ରୁ ସ୍ଥଗିତ ଥିବା ବଙ୍ଗର ବିଭାଜନ ପ୍ରସ୍ତାବ ସଂଗେ ବଙ୍ଗ ସହିତ ଓଡ଼ିଆ ଭାଷୀ ଅଞ୍ଚଳର ମିଶ୍ରଣ ଯୋଜନାକୁ ରୂପ ଦେଇ ଲର୍ଡ଼କର୍ଜନ ୨.୧୨.୧୯୦୩ରେ ରିସେଲ ସର୍କୁଲାର ଘୋଷଣାନାମା ପ୍ରଚାରିତ କରିଥିଲେ । ଏହାରି ଆଧାରରେ ୧୬.୧୦.୧୯୦୫ରେ ମଧ୍ୟପ୍ରଦେଶର ଛତିଶଗଡ଼ ଡିଭିଜନରୁ ସମ୍ବଲପୁର ଜିଲ୍ଲା କଳାହାଣ୍ଡି, ପାଟନା, ସୋନପୁର, ବାମଣ୍ଡା, ରେଢ଼ାଖୋଲ ଗଡ଼ଜାତ ଏବଂ ଛୋଟନାଗପୁର ଡିଭିଜନରୁ ଗାଙ୍ଗପୁର ଓ ବଣେଇ ଗଡ଼ଜାତ, ଓଡ଼ିଶା ଡିଭିଜନ ସହିତ ମିଶିଲା । ସେହିପରି ଛୋଟନାଗପୁର ଡିଭିଜନର ଅପେକ୍ଷାକୃତ ହିନ୍ଦୀଭାଷୀ ଗଡ଼ଜାତ, ଯଶପୁର, ସରଗୁଜା, ଉଦୟପୁର, ଆଉ ଚନ୍ଦଭରଙ୍କର ଆସି ଛତିଶଗଡ଼ ଡିଭିଜନ ସହିତ ମିଶିଲା ।

ଏହିପରି ଓଡ଼ିଶା ପ୍ରଦେଶ ଗଠନର ପ୍ରକ୍ରିୟା ସହିତ, ପରବର୍ତ୍ତୀ କାଳରେ ଛତିଶଗଡ଼ ପ୍ରଦେଶ ଗଠନ ଲାଗି ସମ୍ଭାବନା ସୃଷ୍ଟି କରାଗଲା । ମାତ୍ର ମାନ୍ଦ୍ରାଜ ସରକାର ଏବଂ ତାହାର ଗଭର୍ଣ୍ଣର ଲର୍ଡ଼ ଏମ୍ପଥିଲଙ୍କର ତୁରନ୍ତ ପ୍ରତିରୋଧ ଯୋଗୁଁ ମାନ୍ଦ୍ରାଜ ପ୍ରେସିଡେନ୍‌ସି ଅଧୀନରେ ଥିବା ଦକ୍ଷିଣ ଓଡ଼ିଶା ଓଡ଼ିଆଭାଷୀ ଅଞ୍ଚଳର ମିଶ୍ରଣ ସମ୍ଭବପର ହୋଇ ନଥିଲା । ଏହି ପରିପ୍ରେକ୍ଷୀରେ ପୂର୍ବରୁ ୦୫.୦୧.୧୯୦୪ରେ ଲର୍ଡ଼କର୍ଜନ, ମାନ୍ଦ୍ରାଜ ଲାଟଙ୍କୁ ଲେଖି ଜଣାଇଥିଲେ ଯେ, ଓଡ଼ିଶାର ଓଡ଼ିଆ ଭାଷା ଅଞ୍ଚଳର ମିଶ୍ରଣ ଏକ ଦୃଢ଼ ସିଦ୍ଧାନ୍ତ ଉପରେ ଆଧାରିତ । ଏହାର ପ୍ରତ୍ୟୁତ୍ତରରେ ୨୦.୬.୧୯୦୪ରେ ମାନ୍ଦ୍ରାଜର ଚିଫ୍ ସେକ୍ରେଟାରୀ ମିଃ. ଏମ୍.ହାମରିକ ଭାରତ ସରକାରଙ୍କୁ ଲେଖିଥିଲେ ଯେ ମାନ୍ଦ୍ରାଜ ପ୍ରେସିଡେନ୍‌ସିରେ ବିଭିନ୍ନ ଜାତିମାନଙ୍କର ଅବସ୍ଥାନ ଯୋଗୁଁ ଏକମାତ୍ର ଓଡ଼ିଆ ଭାଷୀ ଅଞ୍ଚଳର ମିଶ୍ରଣ, ଏହି ଭୌଗଳିକ ପରିସରରେ ବାସ କରୁଥିବା ବିଭିନ୍ନ ଭାଷାଭାଷୀ ଜନଗୋଷ୍ଠୀ ମଧ୍ୟରେ ଗଭୀର ସମସ୍ୟାମାନ ସୃଷ୍ଟି କରିବ । ଏହି ପ୍ରତ୍ୟୁତ୍ତର ପରୋକ୍ଷରେ ସୂଚାଉଥିଲା ଯେ ମାନ୍ଦ୍ରାଜ ପ୍ରେସିଡେନ୍‌ସିରେ ଓଡ଼ିଆମାନଙ୍କ ବ୍ୟତୀତ ତେଲୁଗୁ, ତାମିଲ, କନ୍ନଡ ଓ ମାଲାୟାଲାମ ଭାଷୀ ଜନସାଧାରଣ ବାସ କରୁଥିବାରୁ ଓଡ଼ିଆମାନଙ୍କର ମିଶ୍ରଣ, ଅନ୍ୟ ଭାଷାଭାଷୀଙ୍କ ମଧ୍ୟରେ ସେମାନଙ୍କର ସ୍ୱତନ୍ତ୍ର ପ୍ରଦେଶ ପ୍ରତିଷ୍ଠା ଲାଗି ଆକାଂକ୍ଷା ଜାଗରିତ କରିବ । ପରିଣାମରେ ମାଡ୍ରାସ୍ ପ୍ରେସିଡେନ୍‌ସି ବିଭାଜିତ ହେବ, ପରବର୍ତ୍ତୀ କାଳରେ ଏହା ବାସ୍ତବ ସ୍ଥିତିରେ ପରିଣତ ହୋଇଥିଲା । ମଧୁସୂଦନ ଦାସ ପୁନର୍ବାର ୧୯୦୭ରେ ଲଣ୍ଡନ ଯାତ୍ରା କରି ଭାରତ ସଚିବ ତଥା ତାଙ୍କର ବିଶାରଦଗଣଙ୍କ ସହିତ ଭେଟି ଓଡ଼ିଶା ପ୍ରଦେଶ ଗଠନର ପ୍ରକ୍ରିୟାକୁ ତ୍ୱରାନ୍ୱିତ କରିଥିଲେ । ଏହା ପରବର୍ତ୍ତୀ ସମୟରେ ଲାଭପ୍ରଦ ହୋଇଥିଲା । ମଧୁସୂଦନ ଦାସଙ୍କର ନେତୃତ୍ୱରେ ୧୧.୧୨.୧୯୧୭ରେ ଏକ ଓଡ଼ିଆ ପ୍ରତିନିଧି ଦଳ ମଣ୍ଟେଗୁ-ଚେମସ୍ଫୋର୍ଡ଼ ସଂସ୍କାର କମିଟିକୁ ଭେଟି ଥିଲେ, ଫଳରେ ଓଡ଼ିଶା ଏକ ଉପପ୍ରଦେଶର ମାନ୍ୟତା

ପାଇ ପାରିଥିଲା । ମାତ୍ର ତେଲୁଗୁମାନେ ଏହି ସଂସ୍କାର କମିଟିକୁ ଭେଟିଥିଲେ ମଧ କୌଣସି ସୁଫଳ ପ୍ରାପ୍ତି ହୋଇନଥିଲେ ।

୧୯୨୧ ମସିହାରୁ ଅସହଯୋଗ ଆନ୍ଦୋଳନର ଯୁଗ ଆରମ୍ଭ ହେଲା । ମାତ୍ର ଏହାର କର୍ଣ୍ଣଧାର ମହାତ୍ମା ଗାନ୍ଧୀ ଗୁଜୁରାଟୀ ଭାଷାଭାଷୀ ଅଞ୍ଚଳରୁ ଆସିଥିବାରୁ, ପରାଧୀନ ଭାରତରେ ମଧ ଓଡ଼ିଆ ଭାଷାଭାଷୀ ପ୍ରଦେଶ ଗଠନ ଲାଗି କେବଳ ଅକୁଣ୍ଠ ସମର୍ଥନ ଜଣାଇ ନଥିଲେ ସ୍ୱଦେଶୀ ଶିଳ୍ପର ଆଦ୍ୟ ପ୍ରବକ୍ତା ମଧୁସୂଦନ ଦାସଙ୍କୁ ନିଜର ଅନ୍ୟତମ ମାର୍ଗଦର୍ଶକ ରୂପେ ମାନ୍ୟତା ପ୍ରଦାନ କରିଥିଲେ । ମାତ୍ର ହିନ୍ଦୀ ଭାଷାଭାଷୀ ଅଞ୍ଚଳରୁ ଆସିଥିବା କଂଗ୍ରେସ ନେତୃବର୍ଗ ଓଡ଼ିଶା ପ୍ରଦେଶ ସ୍ଥାପନାର ତୀବ୍ର ବିରୋଧ କରିଥିଲେ । ଦକ୍ଷିଣ ଓଡ଼ିଶାରେ ୧୯୨୪ ଡିସେମ୍ବରରେ ଏଫ୍.ଏଫ୍. କମିଶନର ସାକ୍ଷ୍ୟ ଗ୍ରହଣ ଆନ୍ଧ୍ରମାନଙ୍କୁ ବିବ୍ରତ କରିଥିଲା । ଏହାପରେ ମଧୁସୂଦନ ଦାସ ୧୫.୦୪.୧୯୨୮ ବମ୍ବେଠାରେ ବଟଲାର କମିଟିକୁ ଭେଟି ଷଢେଇକଳା ଓ ଖରସୁଆଁର ମିଶ୍ରଣ ଲାଗି ଦାବି ଉପସ୍ଥାପନା ପରେ ଲୋଧରନ କମିଟିର ସୁପାରିସ୍‌କ୍ରମେ ଏହି ଦୁଇ ଗଡ଼ଜାତ ୧୯୩୫ରେ ଓଡ଼ିଶା ସହିତ ମିଶିଗଲା । ମଧୁସୂଦନ ଦାସଙ୍କର ପ୍ରେରିତ ଓଡ଼ିଆ ପ୍ରତିନିଧି ଦଳ ପାଟନାଠାରେ ସେହି ବର୍ଷ ଡିସେମ୍ବର ୧୨ ଓ ୧୪ ତାରିଖରେ ସାଇମନ କମିଶନ ସମ୍ମୁଖରେ ଦାବି ଉପସ୍ଥାପନା ପରେ ଅଟ୍ଲି କମିଟି ୧୯୨୯ରୁ ୧୯୩୦ ମେ ମାସରେ ପ୍ରକାଶିତ ସାଇମନ କମିଶନର ରିପୋର୍ଟରେ ଓଡ଼ିଶା ଓ ସିନ୍ଧୁ ପ୍ରଦେଶ ଗଠନର ନିଷ୍ପତ୍ତି ସ୍ଥାନ ପାଇପାରିଥିଲା । ଏହି ପ୍ରସ୍ତାବର କାର୍ଯ୍ୟକାରିତା ପାଇଁ ଲଣ୍ଡନରେ ବସିଥିବା ଗୋଲଟେବୁଲ ବୈଠକରେ ମଧୁବାବୁ ଓ କନିକା ରାଜାଙ୍କର ଯୋଗ ଓ ପ୍ରଚେଷ୍ଟାରେ ବିହାର ଓ ଓଡ଼ିଶା ଭୂ-ସ୍ୱଅଧିକାରୀ ସଂଘକୁ ପ୍ରତିନିଧିତ୍ୱ କରି ପାରଳା ମହାରାଜା କୃଷ୍ଣଚନ୍ଦ୍ର ଗଜପତି ୧୬.୧.୧୯୩୧ରେ ଓଡ଼ିଆମାନଙ୍କ ପକ୍ଷରୁ ଦାବି ଉପସ୍ଥାପନ କରିଥିଲେ । ପରିଣାମରେ ପ୍ରସ୍ତାବିତ ଓଡ଼ିଶା ପ୍ରଦେଶର ସୀମା ନିର୍ଦ୍ଧାରଣ ପାଇଁ ୧୩.୯.୧୯୩୧ରେ ଓଡେନେଲ କମିଟି ଗଠିତ ହୋଇ ସେହି ବର୍ଷ ନଭେମ୍ବର ଓ ଡିସେମ୍ବର ମାସରେ ସାକ୍ଷ୍ୟ ଗ୍ରହଣ ଦକ୍ଷିଣ ସୀମାନ୍ତ ଓ ବିଭିନ୍ନ ପ୍ରାନ୍ତରେ ହୋଇଥିଲା । ମାତ୍ର ୧୭.୦୩.୧୯୩୩ରେ ବ୍ରିଟିଶ ସରକାରଙ୍କର ଦ୍ୱାରା ପ୍ରକାଶିତ ଶ୍ୱେତପତ୍ରରେ ଓଡ଼ିଶା ପ୍ରଦେଶରୁ ଜୟପୁର ଓ ପାରଳାଖେମୁଣ୍ଡି ଜମିଦାରୀ ବାଦ୍ ପଡ଼ିବା ପରେ ମଧୁସୂଦନଙ୍କର ସବିଶେଷ ଆବେଦନକ୍ରମେ ୩.୭.୧୯୩୩ରେ ଲଣ୍ଡନଠାରେ ଜଏଣ୍ଟ ପାର୍ଲାମେଣ୍ଟାରୀ କମିଟି ସମ୍ମୁଖରେ ପାରଳା ମହାରାଜା, ଖଲିକୋଟ ରାଜା ଓ ଭଗବାନ ଦାସ ପ୍ରମୁଖ ଦାବି ଉପସ୍ଥାପିତ କରିଥିଲେ । ଏହି ଅବସରରେ ଓଡ଼ିଶା ପ୍ରଦେଶ ଗଠନର ସ୍ଥପତି, ମଧୁସୂଦନ ଦାସ ୪.୨.୧୯୩୪ରେ ପରଲୋକ ଗମନ କଲେ । ମାତ୍ର ତାଙ୍କର ଏକନିଷ୍ଠ ଦାୟାଦ ମହାରାଜା କୃଷ୍ଣଚନ୍ଦ୍ର ଗଜପତି ୧୯୩୪ ମସିହା ମେ ମାସରୁ ସୁଦୀର୍ଘ କାଳ ଲଣ୍ଡନରେ ଅବସ୍ଥାନ କରି, ଓଡ଼ିଶାରେ ସୀମା ନିର୍ଦ୍ଧାରଣ ସମ୍ପର୍କରେ ଭାରତ ତଥା ମାନ୍ଦ୍ରାଜ ସରକାରଙ୍କର ତୀବ୍ର ପ୍ରତିରୋଧ ସତ୍ତ୍ୱେ ସନ୍ତୋଷଜନକ ଭାବେ ସୀମା ସ୍ଥିରୀକୃତ କରି ଜୟପୁର ଜମିଦାରୀ ଓ ପାରଳାଖେମୁଣ୍ଡି ଜମିଦାରୀର ଏକ ଅଂଶ ଓଡ଼ିଶାର ସୀମାରେ ଅନ୍ତର୍ଭୁକ୍ତ କରିପାରିଥିଲା । ଏହା ପରେ ୩.୩.୧୯୩୬ରେ ବ୍ରିଟିଶ ପାର୍ଲାମେଣ୍ଟ ନିର୍ଦ୍ଦେଶନାମା ଅନୁସାରେ ଓଡ଼ିଶା ପ୍ରଦେଶ ୧.୪.୧୯୩୬ରେ ସ୍ଥାପିତ ହେଲା । ଫଳରେ ବହୁକାଳର ଆଶା ପରିପୂର୍ଣ୍ଣ ହେଲା । ଏହାର ପ୍ରଭାବ ସମଗ୍ର ଭାରତରେ ସୁଦୂର ପ୍ରସାରୀ ଥିଲା । ଓଡ଼ିଶା ସ୍ଥାପନାର ପରିପ୍ରେକ୍ଷୀରେ ୨୧.୪.୧୯୩୮ରେ ମାନ୍ଦ୍ରାଜ ବିଧାନସଭାରେ ଆନ୍ଧ୍ର, ତାମିଲ, କେରଳ ଓ କର୍ଣ୍ଣାଟକ ନାମରେ ଚାରିଗୋଟି ସ୍ୱୟଂ ସମ୍ପୂର୍ଣ୍ଣ ପ୍ରଦେଶ ଗଠନ ପାଇଁ ପ୍ରସ୍ତାବ ଗୃହୀତ ହୋଇଥିଲା । ମାତ୍ର ଏହି ପ୍ରସ୍ତାବକୁ ଧରାଶାୟୀ କରିବା ପାଇଁ ୨.୫.୧୯୩୮ରେ ବ୍ରିଟିଶ ପାର୍ଲାମେଣ୍ଟ (House of Commons)ରେ ଧାର୍ଯ୍ୟ

ଉଦ୍‌ଘୋଷଣା କରାଗଲା ଯେ ନୂତନ ପ୍ରଦେଶ ସୃଷ୍ଟି ହେବ ନାହିଁ, ଏଥିରୁ ଓଡ଼ିଆ ଜାତିର ସଂଗ୍ରାମର ଦୂରଦର୍ଶିତା ଅନୁମେୟ । ଏହାପରେ ଦ୍ୱିତୀୟ ବିଶ୍ୱଯୁଦ୍ଧ ଓ ଭାରତଛାଡ଼ ଆନ୍ଦୋଳନର ଘନଘଟା ମଧ୍ୟରେ ବ୍ରିଟିଶ ଶାସନ କାଳରେ ଆଉ କୌଣସି ଅଗ୍ରଗତି ହୋଇ ନଥିଲା । ମାତ୍ର ଭାରତର ସ୍ୱାଧୀନତାପ୍ରାପ୍ତି ବେଳକୁ ନିରାଶାଗ୍ରସ୍ତ ଆନ୍ଧ୍ର ସମେତ ଭାରତର ବହୁ ଅଞ୍ଚଳରେ ଭାଷାଭିତ୍ତିରେ ପ୍ରଦେଶ ଗଠନର ଆଲୋଡ଼ନ ଆଉ ଉଦ୍‌ବେଳନ ଚାପା ଉତ୍ତେଜନା ମଧ୍ୟରେ ବିସ୍ଫୋରକ ଅବସ୍ଥାକୁ ଚାଲି ଆସିଥିଲା । ଏହି ଅତୀବ ସ୍ପର୍ଶକାତର ପରିସ୍ଥିତିକୁ ଅନୁଧ୍ୟାନ କରି ତତ୍କାଳୀନ ପ୍ରଧାନମନ୍ତ୍ରୀ ପଣ୍ଡିତ ନେହେରୁ ୨୭.୦୧.୧୯୪୬ରେ ଭାଷାଭିତ୍ତିରେ ପ୍ରଦେଶ ଗଠନର ସିଦ୍ଧାନ୍ତର ଉଦ୍‌ଘୋଷଣା କରି ୧୬.୬.୧୯୪୬ରେ ଏହି ଉଦ୍ଦେଶ୍ୟରେ ଧର କମିଶନ ଗଠିତ କରିଥିଲେ । ମାତ୍ର ଏହି କମିଶନର ପ୍ରତିଶ୍ରୁତିର ନିରାଶାଜନକ ପ୍ରତିଫଳନ, ପରିସ୍ଥିତିକୁ ଅତ୍ୟନ୍ତ ବିଭ୍ରାନ୍ତ ଅବସ୍ଥାରେ ପହଞ୍ଚାଇ ଥିଲା । ପରିଣାମରେ ପୋଟ୍ଟି ଶ୍ରୀ ଅମଲୁଙ୍କର ଆତ୍ମୋତ୍ସର୍ଗ ପରେ ୧.୧୦.୧୯୫୩ରେ ଆନ୍ଧ୍ରପ୍ରଦେଶର ଗଠନ, ଆଉ ସେହି ବର୍ଷ ଅନ୍ତରାଳରେ ରାଜ୍ୟ ପୁନର୍ଗଠନ କମିଶନର ସ୍ଥାପନ ଓ ନିର୍ଦ୍ଧାରଣକ୍ରମେ ୧.୧୧.୧୯୫୭ରେ ଭାରତରେ ଭାଷାଭିତ୍ତିକ ପ୍ରଦେଶମାନ ସ୍ଥାପନ ହେଲା । ଏହା ଥିଲା ସୁଦୀର୍ଘ ୭୫ ବର୍ଷର ଅବିରାମ ତୁମୁଳ ସଂଗ୍ରାମର ଅନ୍ତିମ ଗୌରବୋଜ୍ଜ୍ୱଳ ପରିଣତି ।

ଇତିହାସ ବିଭାଗ
ଶ୍ରୀଜଗନ୍ନାଥ ମହାବିଦ୍ୟାଳୟ
କାଇପଦର, ଖୋର୍ଦ୍ଧା



# ଓଡ଼ିଆ ଭାଷାର ଶାସ୍ତ୍ରୀୟ ମାନ୍ୟତା : ଦାବି ନୁହେଁ ଅଧିକାର

ସୁବ୍ରତ କୁମାର ପୃଷ୍ଟି

କୌଣସି ଭାଷାକୁ ଶାସ୍ତ୍ରୀୟ ମାନ୍ୟତା ପ୍ରଦାନ କରିବାଦ୍ୱାରା ସେହି ଭାଷାର କେବଳ ଗୌରବ ବୃଦ୍ଧି ହୁଏ ନାହିଁ, ବରଂ ଭାଷାର ଅନାଲୋଚିତ ଦିଗ ଜନସମ୍ମୁଖକୁ ଆସି ବିଶ୍ୱସ୍ତରରେ ଅଧିକ ମର୍ଯ୍ୟାଦା ପାଇଥାଏ । ଯେପରି ପାଉଛନ୍ତି ତେଲୁଗୁ, ତାମିଲ, କନ୍ନଡ, ସଂସ୍କୃତ, ହିନ୍ଦୀ ଓ ମାଲାୟଲମ, ଆଉ ଏବେ ପାଇଛି ଆମ ଭାଷା ଓଡିଆ ।

ଏହି ପରିପ୍ରେକ୍ଷୀରେ ଓଡିଆ ଭାଷାର ମହନୀୟତା ବିଷୟରେ ଆଲୋଚନା କରାଯାଇପାରେ । ଓଡିଆ ଭାଷା ପ୍ରାଚୀନତାର ପ୍ରମାଣ ହେଉଛି ଏହାର ମାଟି । କେଉଁ ଆବହମାନ କାଳରୁ ଏହି ମାଟିର ମଣିଷ ଦୁଇ ପ୍ରକାର ଭାଷା କହି ଆସିଛି । ଏହି ମାଟି ଉପରେ ବାସ କରୁଥିବା ମଣିଷ ପ୍ରାୟ ୨୦ହଜାର ବର୍ଷ ତଳୁ ନିଜର ମନର ଭାଷାକୁ ରଙ୍ଗତୂଳୀରେ ଅଙ୍କନ କରିବା ଆରମ୍ଭ କରିଛି କଳାହାଣ୍ଡିର ଗୁଡହାଣ୍ଡିଠାରୁ ଯାହା ଖଣ୍ଡଗିରି- ଉଦୟଗିରିର ଗୁମ୍ଫାଚିତ୍ର ମଧଦେଇ ଶେଷ କରିଛି ତ୍ରୟୋଦଶ ଶତାବ୍ଦୀର କୋଣାର୍କ ଦେହରେ ଥିବା ନିର୍ଜିବ ପ୍ରତିମାଗୁଡିକର ଜୀବନ୍ତ କମନୀୟ ରୂପ ଗଢି । ପୁଣି ଏହି କାଳ ମଧରେ ଶିଳ୍ପୀ ନିଜ କଳାର ଭାଷାକୁ କାଳ ଓ ଭୂଖଣ୍ଡରେ ସୀମିତ ନ ରଖି ସୂଦୂର ବାଲି, ଜାଭା, ସୁମାତ୍ରା, ଥାଇଲାଣ୍ଡ, କାମ୍ବୋଡିଆ, ମାଳୟ, ଫିଲିଫାଇନ୍ସ ପର୍ଯ୍ୟନ୍ତ ବ୍ୟାପ୍ତ କରି ନେଇଛି । ବାଲିର ବୋରବୁଦ୍ଧର ଓ କାମ୍ବୋଡିଆର ଅଙ୍ଗକୋରାୱଟ ମନ୍ଦିର ଏକାର ଦୃଷ୍ଟାନ୍ତମାତ୍ର । ସେହିପରି ଆଉ ଏକ ଭାଷା, ଯାହା ତୂଳୀ ବା ନିହାଣ ମୁନରେ ନୁହେଁ, ଲେଖନୀ ମାଧମରେ ପ୍ରାଗଐତିହାସିକ କାଳରୁ ଆଜି ପର୍ଯ୍ୟନ୍ତ ଗତିଶୀଳ, ଚଳଚଞ୍ଚଳ । ତେବେ ସମୟର ଆହ୍ୱାନରେ ଏହାର ବାହ୍ୟ ରୂପ ପରିବର୍ତ୍ତନ ଘଟିଥିବାବେଳେ ଅନ୍ତର୍ନିହିତ ଭାବ ଅକ୍ଷୁଣ୍ଣ ରଖିଛି ।

ଓଡିଆ ଭାଷାର ଆଦ୍ୟ ରୂପ ଦେଖିବାକୁ ମିଳେ ନୂଆପଡା ଜିଲ୍ଲାର ଯୋଗୀମଠ ପାହାଡଗୁମ୍ଫାରେ ନାଲିରଙ୍ଗରେ ଅଙ୍କିତ ଲିପି ରୂପରେ । କେତୋଟି ପଶୁ ସହ ଜଣେ ମଣିଷର ଚିତ୍ର ଏବଂ ଏହାକୁ ଭିତ୍ତି କରି କେତୋଟି ଲିପି । ଲିପିର ଆକାର ଅଶୋକଙ୍କ ଧଉଳି ଲିପି 'ଗ', 'ଇ' 'ଠ' ଅନୁରୂପ । ଅର୍ଥାତ ଧଉଳି/ଜଉଗଡ ଅଭିଲେଖରେ ବ୍ୟବହୃତ 'ଗ' ଲିପି ହେଉଛି ଏହାର ସାମାନ୍ୟ ପରିବର୍ତ୍ତିତ ଲିପି । ତେବେ ଏହି ଚିତ୍ରରେ ଥିବା 'ଇ' ଲିପି ତିନୋଟି ସମାନ୍ତର ଗାରକୁ ବୁଝାଉଥିବା ବେଳେ ଅଶୋକକାଳୀନ ଲିପିରେ ଏହା ତିନୋଟି ବିନ୍ଦୁରେ ପରିଣତ ହୋଇଯାଇଛି । ଅଶୋକକାଳୀନ ଏହି ତିନୋଟି ବିନ୍ଦୁ ପ୍ରଥମ ଶତାବ୍ଦୀ ବେଳକୁ ଦୁଇଟି ବିନ୍ଦୁ ଓ ଗୋଟିଏ ସରଳରେଖା ରୂପରେ ପରିବର୍ତ୍ତନ ଲାଭ କରିଛି । ଓଡିଆ 'ଇ' ଲିପିର ରୂପ ପରିବର୍ତ୍ତନକୁ ଅନୁଧ୍ୟାନ କଲେ ଏହାର ଆଦ୍ୟରୂପ ତିନୋଟି ସରଳରେଖା ହୋଇଥିବା ସମ୍ଭବ । କେବଳ ଏହି ଲିପି ଯୋଗୁଁ ଯୋଗୀମଠ ଚିତ୍ରଲିପିକୁ ଆମେ ଅଶୋକକାଳୀନ ଲିପିର ପୂର୍ବ ରୂପ ବୋଲି କହି ପାରିବା । କାରଣ ଏହା ପରଠାରୁ 'ଇ' ଲିପି ସମାନ୍ତର ସରଳରେଖାଯୁକ୍ତ ଗାରଭାବରେ ଲିଖିତ ହେବାର ପ୍ରମାଣ ନାହିଁ । ବୋଧହୁଏ ଦୀର୍ଘ ଦିନର ଲିଖନ

ପ୍ରକ୍ରିୟା ଭିତରେ ଏହା ଖ୍ରୀ.ପୂ.୩ୟ ଶତାବ୍ଦୀ ବେଳକୁ ସରଳୀକୃତ ହୋଇ ତିନୋଟି ବିନ୍ଦୁରେ ପରିଣତ ହୋଇଛି ଯେପରି ତିନୋଟି ବିନ୍ଦୁ ବର୍ତ୍ତମାନର 'ଇ' ରୂପରେ ପରିଣତ ହୋଇଛି । ଯେପରି ଅଶୋକକାଳୀନ 'କ' ଲିପି ପରସ୍ପରକୁ ଛେଦ କରୁଥିବା ସରଳରେଖା କାଳକ୍ରମେ ଡାହାଣ ପଟକୁ ବକ୍ର ହୋଇ ବର୍ତ୍ତମାନର 'କ' ଲିପି ରୂପ ଧାରଣ କରିଛି । ତେବେ ଯୋଗୀମଠ ଚିତ୍ରଲିପିର ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ଲିପି ହେଉଛି 'ଠ', ଯାହା ଏବେ ବି ଅପରିବର୍ତ୍ତିତ ଭାବେ ଓଡ଼ିଆ ସମେତ ସମସ୍ତ ଭାରତୀୟ ଭାଷାରେ ବ୍ୟବହୃତ ହେଉଛି । ଲିପିର ଆରମ୍ଭ କାଳରେ ମାତ୍ରା ବା ଫଳା ବା ଯୁକ୍ତାକ୍ଷର ପ୍ରୟୋଗ ଦେଖାଯାଉ ନଥିବାରୁ ଏହାକୁ 'ଗଇଠ' ଭାବରେ ପଢ଼ିପାରିବା । ବର୍ତ୍ତମାନ ପରିପ୍ରେକ୍ଷୀରେ ଏହାର ଉଚ୍ଚାରିତ ଶବ୍ଦ ହେବ 'ଗୋଠ' । ପୁଣି ଲେଖା ସହିତ ଅଙ୍କିତ ଚିତ୍ର ମଧ୍ୟ ଏହି ପାଠକୁ ସମର୍ଥନ କରୁଛି । କାରଣ ଆଜି ବି ଓଡ଼ିଶାର ଗାଁଗହଳରେ ଛେଳି, ଗାଈ, ମେଣ୍ଢା, ମଇଁଷି ସମୂହକୁ ଗୋଠ ବୋଲି କହିଥାନ୍ତି । ବିଭିନ୍ନ ଐତିହାସିକଗଣ ଏହାର ପ୍ରାଚୀନତାକୁ ସ୍ୱୀକାର କରିଥିବା ବେଳେ କଳାହାଣ୍ଡି ଗେଜେଟିୟରରେ ଏହାର କାଳ ଖ୍ରୀ.ପୂ.୧୦,୦୦୦ବର୍ଷ ନିରୂପଣ କରାଯାଇଛି । ସେହିପରି ସୁନ୍ଦରଗଡ ଜିଲ୍ଲାର ବିକ୍ରମଖଲରୁ ଆବିଷ୍କୃତ ଲିପି ଏ ପର୍ଯ୍ୟନ୍ତ ପାଠ ହୋଇପାରି ନ ଥିବାବେଳେ ବିଶିଷ୍ଟ ଐତିହାସିକ କେ.ପି. ଜୟସ୍ୱାଲ ଏହାକୁ ଅଶୋକକାଳୀନ ଲିପି ତଥା ସିନ୍ଧୁ ସଭ୍ୟତା ଲିପିର ମଧ୍ୟବର୍ତ୍ତୀ ରୂପ ବୋଲି ତାଙ୍କ ପ୍ରବନ୍ଧରେ ସପ୍ରମାଣ ଯୁକ୍ତି ପ୍ରଦାନ କରିଛନ୍ତି । ପ୍ରାୟ ୫୭୭୫ରୁ ଉର୍ଦ୍ଧ୍ୱ ପ୍ରାଗ୍‌ଐତିହାସିକ ଚିତ୍ର ଏପର୍ଯ୍ୟନ୍ତ ଏହି ଭୂଖଣ୍ଡରୁ ମିଳିଛି । ଯେଉଁଥିରେ ଶତାଧିକ ଲିପି ରହିଛି, ଯାହା ସେସମୟର କଥିତ ଭାଷାର ଲିଖିତ ରୂପ । ଲିପିର ଲିଖନଗତ ଶୈଳୀକୁ ନେଇ ଏହାର କାଳ ନିରୂପଣ କରାଯାଇଛି । ଯଦି ଏଥିରେ କେହି ବିଦ୍ୱାନ ସନ୍ଦିହାନ ଅଟନ୍ତି, ତେବେ ଅତ୍ୟାଧୁନିକ ପଦ୍ଧତିରେ ଏହାର ସମୟ ନିର୍ଦ୍ଧାରଣ କରାଯାଇପାରେ । ମାତ୍ର ତାହା ନ କରି ଅନ୍ଧ ଭାବରେ ଏହାକୁ ଅସ୍ୱୀକାର ପୂର୍ବକ ମତାମତ ଦେବାଦ୍ୱାରା ଗୋଟିଏ ପ୍ରାଚୀନ ଜାତିର ଐତିହ୍ୟ ଉପରେ ପ୍ରଶ୍ନଚିହ୍ନ ଲାଗିଯାଉଛି । ଯାହାଫଳରେ ଏହିସବୁ କୃତୀ ଉପରେ ଗବେଷଣା କରିବାକୁ କେହି ଆଗେଇ ନଆସିବା ଦ୍ୱାରା ଓଡିଶାର ଗୌରବମୟ ପ୍ରାଚୀନ ଐତିହ୍ୟ ବିଶ୍ୱ ଅଗୋଚରରେ ରହିଯାଇଛି । ଏ ସମ୍ପର୍କରେ ଏକ ଛୋଟ ଦୃଷ୍ଟାନ୍ତ ରୂପରେ ଓଡିଶାର ଗୁଡହାଣ୍ଡି ଓ ତୁର୍କୀର କୋତଲୟାକରୁ ମିଳିଥିବା ଆୟତକାର ଚିତ୍ରକୁ ନିଆଯାଇପାରେ । ଗୁଡହାଣ୍ଡିର ଚିତ୍ର ଏପର୍ଯ୍ୟନ୍ତ ପ୍ରାକଐତିହାସିକ ଚିତ୍ର ଭାବରେ ପରିଚୟ ନେଇ ରହିଥିବା ବେଳେ କୋତଲୟାକ ଚିତ୍ର ମାଧ୍ୟମରେ ସେଠାରୁ ୭୦୦୦ବର୍ଷ ତଳର ଏକ ପ୍ରାଚୀନ ସଭ୍ୟତା ଆବିଷ୍କୃତ ହୋଇ ବିଶ୍ୱ ପର୍ଯ୍ୟଟନର ସ୍ଥାନ ପାଇବା ସହିତ ତୁର୍କୀର ପ୍ରାଚୀନ ସଭ୍ୟତାକୁ ପ୍ରମାଣିତ କରିବାରେ ସକ୍ଷମ ହୋଇପାରିଛି । ଅପରପକ୍ଷେ କଳାହାଣ୍ଡିରୁ ପ୍ରାଚୀନ ସଭ୍ୟତାର ବହୁ ନିଦର୍ଶନ ମିଳିଥିଲେ ମଧ୍ୟ ଗୁଡହାଣ୍ଡିର ଆୟତକାର ଚିତ୍ର ଚିତ୍ରପ୍ରତିମା ଭିତରେ ହଜି ଯାଇଥିବାରୁ ଓଡିଶାର ପ୍ରାଚୀନ ଇତିହାସ ସେହି ଅନ୍ଧାରରେ ରହିଯାଇଛି । ଏଥିପାଇଁ ଆମ ଐତିହାସିକଗଣ ସମ୍ପୂର୍ଣ୍ଣ ରୂପେ ଦାୟୀ । ନିଜର ଶ୍ରେଷ୍ଠତ୍ୱ ପ୍ରତିପାଦନ କରିବାକୁ ଯାଇ ଏମାନେ ଗବେଷଣା ଆଳରେ ଓଡିଶା ଇତିହାସ ସହ ଖେଳ ଖେଳିବା ଏକ ପରମ୍ପରାରେ ପରିଣତ କରିଦେଲେ । ପ୍ରକୃତ ସତ୍ୟ ଅନ୍ୱେଷଣ ଆଳରେ ନିଜକୁ ବିଖ୍ୟାତ କରିବାକୁ ଯାଇ ଏହି ହୀନ କାର୍ଯ୍ୟ ମାଧ୍ୟମରେ ଅନ୍ୟକୁ ବଦନାମ କରିବାର ପ୍ରଚେଷ୍ଟା ଶେଷରେ ଓଡିଶାର ଐତିହ୍ୟ ସହିତ ଏମାନେ ମଧ୍ୟ କୋଣଠେସା ହୋଇ ପଡି ରହିଲେ । ଏମାନଙ୍କ କୃପାରୁ ଓଡିଆ ଜାତି ଆଉ ଇତିହାସର ବିପୁଳ କ୍ଷତି ଘଟିଲା, ଏବେ ବି ଘଟି ଚାଲିଛି ।

ଓଡିଆ ଲିପିର କ୍ରମିକଧାରା ଆମକୁ ବ୍ୟବସ୍ଥିତ ରୂପରେ ପ୍ରଥମ କରି ଦେଖିବାକୁ ମିଳେ ଖ୍ରୀ.ପୂ. ତୃତୀୟ ଶତାବ୍ଦୀ ବେଳକୁ ଅଶୋକଙ୍କଦ୍ୱାରା ଧଉଳି ଓ ଜଉଗଡଠାରେ ଖୋଦିତ ଶିଳାଲେଖରେ । ଏହାର ଭାବ, ଭାଷା ଓ ବିଷୟବସ୍ତୁକୁ ଦୃଷ୍ଟିରେ ରଖି ଐତିହାସିକଗଣ ଏହାର ନାମକରଣ ସ୍ୱତନ୍ତ୍ର କଳିଙ୍ଗାନୁଶାସନ କରିଛନ୍ତି ।

ଠିକ ସେହିପରି କଳିଙ୍ଗ ଯୁଦ୍ଧର ପ୍ରତିଦ୍ୱନ୍ଦ୍ୱୀରେ ସମଗ୍ର ଭାରତବର୍ଷ ଅଧିକାର କରିବାପରେ କଳିଙ୍ଗରାଜ ଖାରବେଳ ନିଜର ଯେଉଁ ଗୌରବ ଗାଥା ଉଦୟଗିରିର ହାତୀଗୁମ୍ଫାଠାରେ ଖୋଦନ କରିଛନ୍ତି, ଭାଷା ଦୃଷ୍ଟିରୁ ଏହା ମୂଳ ପାଲି ଭାଷା ବୋଲି ଜର୍ମାନ ପଣ୍ଡିତ ହରମାନ ଓଲଡେନବର୍ଗ ପ୍ରମାଣିତ କରିଥିବା ବେଳେ ଏହାର କାବ୍ୟିକ ରଚନା ଶୈଳୀ ହିଁ କାବ୍ୟ ରଚନାର ଆଦ୍ୟ ପ୍ରଦର୍ଶକ ପାଲଟି ଯାଇଥିଲା । ଖାରବେଳଙ୍କ ଏହି ଲିଖନଶୈଳୀକୁ ଭାରତର ଆଦ୍ୟ ସାହିତ୍ୟିକ ରୂପ ଏବଂ ପାଲି ହିଁ ଓଡିଆ ଭାଷା, ତାହା ଏବେ ସ୍ୱୀକୃତି ଲାଭ କଲା । ସେହିପରି ଓଡିଶାରେ ଜନ୍ମିତ ସପ୍ତମ ଶତାବ୍ଦୀର ବୌଦ୍ଧ ଆଚାର୍ଯ୍ୟଙ୍କ ଲିଖିତ ଚର୍ଯ୍ୟାଗୀତିକା ଏହି ଲିପି ଓ ଭାଷା ଚମତ୍କାରିତାର ଅନ୍ୟ ଏକ ଅଂଶବିଶେଷ । ସାଧାରଣ ଭାଷାରେ ଦୁଇପ୍ରକାର ଅର୍ଥ ପ୍ରକାଶ କରୁଥିବା ସାହିତ୍ୟ ସର୍ଜନା ଏହିଠାରୁ ଆରମ୍ଭ ହୋଇଥିଲା, ଯାହା ଓଡିଆ ସାହିତ୍ୟରେ ଏବେ ମଧ୍ୟ ବହୁଳଭାବେ ପ୍ରଚଳିତ । ଏହି କଥାକୁ ଡଃ କରୁଣାକର କର ସୂକ୍ଷ୍ମାତିସୂକ୍ଷ୍ମ ବିଶ୍ଳେଷଣ କରି ଅତି ଚମତ୍କାର ଭାବରେ ଆଶ୍ଚର୍ଯ୍ୟ ଚର୍ଯ୍ୟାଚୟ ପୁସ୍ତକରେ ପ୍ରଚୁର ଦୃଷ୍ଟାନ୍ତ ସହିତ ସପ୍ରମାଣେ ବୁଝାଇଛନ୍ତି । ମାତ୍ର ଏଭଳି ସାହିତ୍ୟ ଓଡିଆଙ୍କ ଦ୍ୱାରା ସୃଷ୍ଟି ଅସମ୍ଭବ କହି ବହୁ ଅଧ୍ୟାପକ ସାରଳା ଦାସଙ୍କୁ ଆଦ୍ୟ ସାହିତ୍ୟିକ ଭାବରେ ଗ୍ରହଣ କରି ସେହି ଅନୁସାରେ ଶିକ୍ଷାଦାନ କରିବାଦ୍ୱାରା ଓଡିଆ ସାହିତ୍ୟ ପଞ୍ଚଦଶ ଶତାବ୍ଦୀଠାରୁ ଆରମ୍ଭ ବୋଲି ସାଧାରଣରେ ଦୃଢ ଧାରଣା ସୃଷ୍ଟି ହୋଇଯାଇଛି । ଏ ମାଟିର ସାହିତ୍ୟିକ ପ୍ରମାଣ ଯେ ଖାରବେଳଙ୍କଠାରୁ ଆରମ୍ଭ, ତାହା ଏହି କାରଣରୁ ଅନ୍ଧାରରେ ରହିଗଲା । ଅର୍ଥାତ ସାରଳାଦାସଙ୍କ ପୂର୍ବରୁ କୌଣସି ସାହିତ୍ୟ ନଥିଲା । ଝଙ୍କଡବାସିନୀ ମାଆ ଶାରଳାଙ୍କ କୃପା ପାଇ ସେ ସିଦ୍ଧିଲାଭ କଲେ ଓ ରାତାରାତି ବିଲଙ୍କା ରାମାୟଣ, ମହାଭାରତ, ଦେବୀ ଭାଗବତ, ଲକ୍ଷ୍ମୀନାରାୟଣୀ ବଚନିକା ଭଳି ବିପୁଳ ସାହିତ୍ୟ ରଚନା କରିଥିବା ଯୁକ୍ତି କବି ସାରଳାଙ୍କ ଶ୍ରେଷ୍ଠତ୍ୱ ହ୍ରାସ କରିବା ସହିତ ପୁରାଣ ରଚନା ମାଧ୍ୟମରେ ସାରଳା ଯେଉଁ ଓଡିଆ ଜାତୀୟତାବାଦର ମଞ୍ଜି ପୋତିଥିଲେ, ତାହା ଲୋପ ପାଇଗଲା ।

ଗୋଟିଏ ଭାଷାର ପ୍ରାଚୀନତା ତା'ର ସାହିତ୍ୟରେ ନ ଥାଏ, ଥାଏ ଜୀବନରେ । ଆଉ ସେ ଜୀବନ ହେଉଛି ଲୋକକଳା, ଲୋକଚଳଣୀ ଯାହା ହଜାରହଜାର ବର୍ଷ ଧରି ବର୍ତ୍ତମାନ ଚିହ୍ନିତ ଓଡିଶା ମାଟିରେ ଏ ପର୍ଯ୍ୟନ୍ତ ବଞ୍ଚି ରହିଛି । ସମୟାନୁସାରେ ଏ ମାଟିର ନାମ ପରିବର୍ତ୍ତନ ଘଟିଛି । ଉତ୍କଳରୁ ଆରମ୍ଭ ହୋଇ ଉଡ୍ର, କଳିଙ୍ଗ କୋଶଳ, ତୋଶଳ, କଙ୍ଗୋଦ ଆଦି ବିଭିନ୍ନ ନାମ ନେଇଥିବା ଏଇ ମାଟି ଏବେ ଦୀର୍ଘ ୧୦୦୦ବର୍ଷ ଧରି ଓଡିଶା ନାମରେ ଚିହ୍ନିତ ହେଉଥିଲେ ମଧ୍ୟ ଏ ମାଟିର ଆତ୍ମା ଅମର ଅଛି । ଆଜି ବି ଏ ମାଟିର ମଣିଷ ଛାତିରେ ୨୦ହଜାର ବର୍ଷ ତଳ ମଣିଷର ହୃଦୟ ଅଛି, ଯେଉଁ ହୃଦୟ ଗୋଟିଏ ପଶୁର ଯନ୍ତ୍ରଣାକୁ ଅନୁଭବ କରି ପଥରକାନ୍ଥରେ ଚିତ୍ରାୟିତ କରିଥିଲା । ବୋଧହୁଏ ସେଇଥିପାଇଁ ଏହି ମାଟିର ମଣିଷ ହୃଦୟର ଭାଷା ହିଁ ଚଣ୍ଡାଶୋକକୁ ଧର୍ମାଶୋକରେ ପରିଣତ କରିଦେଲା । ମାନବ ଧର୍ମକୁ ପ୍ରାଥମିକତା ଦେଉଥିବାରୁ ବଣିକ ଓଡିଆପୁଅ ହଜାରହଜାର ବର୍ଷଧରି ଅନ୍ୟ ଅଞ୍ଚଳର ଶାସକଭାବେ ନୀତି ନିର୍ଦ୍ଧାରକ ହୋଇପାରିଲା । ସମଗ୍ର ଭାରତବର୍ଷ ମୁସଲମାନ ଶାସନାଧୀନ ହୋଇ ସାରିଥିବା ବେଳେ ଦୀର୍ଘ ୫୦୦ବର୍ଷ ସେମାନଙ୍କ ଅତ୍ୟାଚାରରୁ କେବଳ ଓଡିଶା ମାଟି ହିଁ ମୁକ୍ତ ରହିପାରିଥିଲା । ନିଜର ସାମର୍ଥ୍ୟ ହ୍ରାସ ପାଇଥିଲେ ମଧ୍ୟ ସ୍ୱାଧୀନଚେତା ମାନସିକତା ହିଁ ୧୮୧୭ର ବିଦ୍ରୋହ ବୁଣି ଇଂରେଜ ବଣିକର ଭାରତ ସମ୍ରାଟ ସ୍ୱପ୍ନ ଭାଙ୍ଗି ଦେଲା । ଆଉ ଭାଷା ଭିତ୍ତିରେ ନିଜ ପାଇଁ ଭୂମି ଖଣ୍ଡେ ଯୋଗାଡ କରିବାକୁ ଯାଇ ୫୪୨ଖଣ୍ଡରେ ବିଭକ୍ତ ଭାରତକୁ ଏକାଠି କରିବା ସହିତ ସ୍ୱାଧୀନତା ପରବର୍ତ୍ତୀ ରାଜ୍ୟ ଗଠନର ଆଦର୍ଶ ପାଲଟି ଗଲା । ଏହିଭଳି ଯାହା ସବୁ ଘଟିଛି, ତାହା ସମ୍ଭବ ହୋଇଛି ଏହି ମାଟିର ଭାଷା ଯୋଗୁଁ । ଆଉ ଏ ମାଟିର ଭାଷା ହେଉଛି ନୀରବତାର ଭାଷା । ଯାହା କେବଳ ଭୟଙ୍କର ନୁହେଁ, ପରମାଣୁଠାରୁ ମଧ୍ୟ ଶକ୍ତିଶାଳୀ । ନିଜର ରୂପ

ଅତୀତରେ ଦେଖାଇ ସାରିଛି । ବର୍ତ୍ତମାନ ଦେଖାଇବା ପାଇଁ ସେ କେବଳ ସମୟକୁ ଅପେକ୍ଷା କରି ରହିଛି ।

ଇତିହାସ କହେ ଏହି ମାଟିର ଭାଷା ହେଉଛି ଔଡ୍ରୀ ଓ ରଚନାଶୈଳୀ ହେଉଛି ଔଡ୍ରୀ ମାଗଧୀ, ଯାହା ଭରତମୁନିଙ୍କ ନାଟ୍ୟଶାସ୍ତ୍ର ଗ୍ରନ୍ଥରେ ଉଲ୍ଲେଖ ରହିଛି । ଏ ମାଟିର ଲିପି ହେଉଛି ଉତ୍କଳୀ ଓ ଔଡ୍ରୀ, ଯାହା ଲଳିତ ବିସ୍ତାରରେ ବର୍ଣ୍ଣିତ । ଏ ମାଟିର ଗଦ୍ୟ ରଚନା ଶୈଳୀ ଉତ୍କଳିକା ଗେୟ ବା ଗାନଧର୍ମୀ, ଯାହା ସଙ୍ଗୀତ ରତ୍ନାକର ଗ୍ରନ୍ଥରେ ସୂଚୀତ । ଏହାର ସାହିତ୍ୟ ଅକ୍ଷରବୃତ୍ତରେ ରଚିତ, ଯାହା ଆର୍ଯ୍ୟ ନୁହେଁ, ଆଦିବାସୀ ସଂଗୀତର ଅଂଶବିଶେଷ । ସବୁଠାରୁ ବଡ କଥା ହେଲା ଏହାର ସ୍ୱତନ୍ତ୍ର ତଥା ପ୍ରାଚୀନ ନୃତ୍ୟଶୈଳୀ । ତେଣୁ ଏହିସବୁ ବୌଦ୍ଧିକ ପରିପାଟୀ ପ୍ରମାଣ କରିଥାଏ ଓଡିଆ ଭାଷାର ମୌଳିକତା ତଥା ପ୍ରାଚୀନତାକୁ ।

ଜଗତିକରଣର ମାୟାଜାଲରେ ଏହି ଭାଷା ଆଜି ନିରବ । ପ୍ରାଜ୍ଞ ପ୍ରୌଢ ଭଳି ସ୍ଥିର ଅଥଚ ଏହାର ଦୃଷ୍ଟି ରହିଛି ସମ୍ମୁଖ ଭାଗକୁ । ଅର୍ଥାତ ଏକ ଉଜ୍ଜ୍ୱଳମୟ ଭବିଷ୍ୟତ ପାଇଁ ସତେ ଯେପରି ଅପେକ୍ଷମାଣ । ଆଉ ଏହି ସୁଯୋଗ ଆଣି ଦେଇଛି ଭାରତ ସରକାରଙ୍କ ସଂସ୍କୃତି ବିଭାଗ । ଭାଷାକୁ ଶାସ୍ତ୍ରୀୟ ମାନ୍ୟତା ପ୍ରଦାନ ପରିପ୍ରେକ୍ଷୀରେ ଏହି ବିଭାଗ ଯେଉଁ ୪ଟି ସର୍ତ୍ତ ରଖିଛନ୍ତି, ତାହାକୁ ଓଡିଆ ଭାଷା ସଂପୂର୍ଣ୍ଣ ରୂପେ ପୂରଣ କରିଥିବାରୁ ୬କୋଟିରୁ ଊର୍ଦ୍ଧ୍ୱ ଓଡିଆଙ୍କ ଆଶା, ଆକାଂକ୍ଷା, ଆବେଗ ସହିତ ଜଡିତ ଏହି ଗୌରବମୟ ପ୍ରାଚୀନ ଭାଷା ଆଜି ଦେଶର ଷଷ୍ଠ ଶାସ୍ତ୍ରୀୟ ଭାଷା ମର୍ଯ୍ୟାଦା ପାଇଥିବା ବେଳେ ଏହା ଏବେ ବିଶ୍ୱଭାଷା ହେବାକୁ ଯାଇ ୧୦୦୦ବର୍ଷ ତଳର ଇତିହାସକୁ ପୁନରାବୃତ୍ତି କରିବା ପଥରେ ଅଗ୍ରସର ହେଉଛି ।

କିନ୍ତୁ ଏ ମର୍ଯ୍ୟାଦା ପାଇବା ପରେ ଆମେ ଏଥିପାଇଁ କେତେ ସଚେତନ ଓ ଏହାର ସୁଯୋଗ ନେବାରେ କେତେ ସମର୍ଥ, ସେ ବିଷୟରେ ଆତ୍ମସମୀକ୍ଷା କରିବାର ବେଳ ଆସି ପହଞ୍ଚିଛି । ୨୦୦୪ ମସିହାରେ ତାମିଲଭାଷା ଶାସ୍ତ୍ରୀୟ ମାନ୍ୟତା ପାଇଲା । ଆମର ବହୁ ସାହିତ୍ୟିକ, ଭାଷାବିତ ଅଛନ୍ତି, ଯେଉଁମାନେ ନିଜକୁ ପୃଥିବୀର ଶ୍ରେଷ୍ଠ ବିଦ୍ୱାନମାନଙ୍କ ମଧ୍ୟରୁ ଜଣେ ବୋଲି ଭାବନ୍ତି ସେମାନେ ଓଡିଆ ଭାଷା ବିଷୟରେ ସେତେବେଳେ ଚୁପ ରହିଲେ । କେବଳ ସମାଜ ସମ୍ପାଦକୀୟରେ ଗୋଟେ ଆଲେଖ୍ୟ ବାହାରିଲା । କିନ୍ତୁ ଓଡିଆ ଭାଷା ଯେ ଶାସ୍ତ୍ରୀୟ ମାନ୍ୟତା ପାଇବା ପାଇଁ ଯୋଗ୍ୟ, ସେ କଥା କେହି କହିଲେ ନାହିଁ ବା ସାଧାରଣ ଜନତାଙ୍କଠାରେ ଭାବପ୍ରବଣତା ସୃଷ୍ଟି କରିବା ଭଳି ଲେଖାଟିଏ ଖବରକାଗଜ ବା ପତ୍ରପତ୍ରିକାରେ ପ୍ରକାଶ ପାଇଲା ନାହିଁ । ତେଲୁଗୁ ଓ କନ୍ନଡ ଭାଷାକୁ ଶାସ୍ତ୍ରୀୟ ମାନ୍ୟତା ପାଇଁ ଦକ୍ଷିଣ ଦିଲ୍ଲୀର ଆର.କେ ପୁରମଠାରେ କନ୍ନଡ ବିଶ୍ୱବିଦ୍ୟାଳୟ, ଦ୍ରାବିଡ ବିଶ୍ୱବିଦ୍ୟାଳୟ, ତେଲୁଗୁ ବିଶ୍ୱବିଦ୍ୟାଳୟ, କନ୍ନଡ ବିକାଶ ପରିଷଦ ମିଳିତ ଭାବରେ ୧୯ ଜୁଲାଇ୨୦୦୮ରେ ଏକ ଜାତୀୟ ଆଲୋଚନାଚକ୍ର ଆୟୋଜନ କରିଥିଲେ । ପୋଟ୍ଟିଶ୍ରୀରାମୁଲୁ ତେଲୁଗୁ ବିଶ୍ୱବିଦ୍ୟାଳୟର କୁଳପତି ଡଃ ମଞ୍ଜୁଲତାଙ୍କ ଅଧ୍ୟକ୍ଷତାରେ ଅନୁଷ୍ଠିତ ଏହି ଆଲୋଚନାଚକ୍ରରେ ମୁଖ୍ୟମନ୍ତ୍ରୀ, ବିଭିନ୍ନ ବିଭାଗର ମନ୍ତ୍ରୀଙ୍କ ସମେତ ପୂର୍ବତନ ମୁଖ୍ୟମନ୍ତ୍ରୀ ଏମ. ବିରାପ୍ପା ମୋଇଲି, କନ୍ନଡ ବିକାଶ ପରିଷଦର ଅଧ୍ୟକ୍ଷ, ଆନ୍ଧ୍ରପ୍ରଦେଶ କାର୍ଯ୍ୟାଳୟଭାଷା କମିଶନର ତଥା ପ୍ରଫେସର କୃଷ୍ଣମୂର୍ତ୍ତୀ, ଡଃ ସୁବ୍ରମନ୍ୟମଙ୍କ ଭଳି ସୁନାମଧନ୍ୟ ଭାଷାବିତ ଏବଂ ଉଭୟ ଭାଷାର ବିଦ୍ୱାନ ଓ ରାଜନେତାଗଣ ଏହି ଆଲୋଚନାଚକ୍ରରେ ଭାଗ ନେଇ ଦୁଇ ଭାଷାର ପ୍ରାଚୀନତା ଓ ବୈଶିଷ୍ଟ୍ୟ ପ୍ରମାଣ ପୂର୍ବକ ଶାସ୍ତ୍ରୀୟ ମାନ୍ୟତା ପାଇଁ ଦାବି କରିଥିଲେ । ତେବେ ଏହି ସମୟରେ ଦିଲ୍ଲୀରୁ ପ୍ରକାଶିତ ହିନ୍ଦୁସ୍ତାନ ନାମକ ଜାତୀୟ ଖବରକାଗଜ ଏମାନଙ୍କ ଉଦ୍ୟମକୁ ତୀବ୍ର ସମାଲୋଚନା କରିବା ସହିତ ଓଡିଆ ଭାଷା ସପକ୍ଷରେ ମତ ପ୍ରଦାନ କରିଥିଲା । ମୋର ଗବେଷଣା କାର୍ଯ୍ୟ ଓ ଆଇ.ଏ.ଏସ. ପରୀକ୍ଷା ପାଇଁ ପ୍ରସ୍ତୁତି ଚାଲି ଥିବାରୁ ମୁଁ ସେହି ସମୟରେ ଦିଲ୍ଲୀରେ ଥିଲି ଓ ଏହି ଖବର ପାଠ କରିବା ପରେ ମୋର ପୂଜ୍ୟ ଗୁରୁ ଡଃ କୃଷ୍ଣଚରଣ ବେହେରା ଓ ଡଃ ନଟବର ଶତପଥୀଙ୍କଠାରୁ ଓଡିଶାରେ ଏହାର ପ୍ରତିକ୍ରିୟା ଜାଣିବାକୁ ଚାହିଁଥିଲି । ମାତ୍ର ସବୁକର୍ମ ଭଳି

ଓଡିଶାବାସୀ ଥିଲେ ନିରବ । ତେଣୁ ଏ ବିଷୟରେ କିଛି ସାଂସଦଙ୍କୁ ଭେଟି ଓଡିଆ ଭାଷା ପାଇଁ ଦାବି କରିବାକୁ ଅନୁରୋଧ କରିଥିଲି । କିନ୍ତୁ ଏମାନେ ଥିଲେ ଉଦାସୀନ । ଏହାପରେ ମୁଁ ନିଷ୍ପତ୍ତି ନେଲି ଏ ବିଷୟରେ ବିସ୍ତୃତ ତଥ୍ୟ ସଂଗ୍ରହ କରିବାକୁ । ସେତେବେଳେ ଦିଲ୍ଲୀ ବିଶ୍ୱବିଦ୍ୟାଳୟର କେନ୍ଦ୍ରୀୟ ପାଠାଗାରାକୁ ନିୟମିତ ଯାଉଥିବାରୁ ଖୁବ୍ ଅଳ୍ପଦିନରେ ଆବଶ୍ୟକୀୟ ତଥ୍ୟ ସହିତ କିଛି ବିରଳ ଫଟୋଚିତ୍ର ସଂଗ୍ରହ କଲି । ଅନ୍ୟାନ୍ୟ ଭାଷା ସହିତ ଓଡିଆ ଭାଷାର ସାମଞ୍ଜସ୍ୟ ବିଷୟରେ ଜାଣିବା ପାଇଁ ବିଭିନ୍ନ ଅଣଓଡିଆ ବନ୍ଧୁଙ୍କ ସହଯୋଗ ପାଇଥିଲି । ଏସବୁକୁ ନେଇ ଗୋଟିଏ ରିପୋର୍ଟ ପ୍ରସ୍ତୁତ କଲି । ଭୁବନେଶ୍ୱର ପ୍ରତ୍ୟାବର୍ତ୍ତନ ପରେ ଓଡିଆ ଜାତୀୟତା ଭାବକୁ ସଂଗଠିତ କରିବା ପାଇଁ ଜନସମ୍ମିଳନୀ ନାମକ ଏକ ଅନୁଷ୍ଠାନ ଡଃ ନଟବର ଶତପଥୀଙ୍କ ସଭାପତିତ୍ୱରେ ୨୦୦୯ରେ ଗଠନ କରାଗଲା । ଶହୀଦ ଲକ୍ଷ୍ମଣ ନାୟକଙ୍କ ଫାଶୀ ଦିବସରେ ଭୁବନେଶ୍ୱରର ବୁଦ୍ଧବିହାରଠାରେ ବିଶିଷ୍ଟ ବ୍ୟକ୍ତିଗଣ ସହିତ ବିଭିନ୍ନ ଜିଲ୍ଲାରୁ ଆଗ୍ରହୀ ପ୍ରାୟ ୩୦୦ପ୍ରତିନିଧି ଯୋଗ ଦେଇ ଜାତି ପାଇଁ କାମ କରିବାକୁ ଶପଥ ନେଇଥିଲେ । ଲୋହିଆ ଏକାଡେମୀ ଅନୁଷ୍ଠିତ ଜନସମ୍ମିଳନୀର ବିଭିନ୍ନ ବୈଠକରେ ଓଡିଆ ଭାଷାର ଶାସ୍ତ୍ରୀୟ ମାନ୍ୟତା ପାଇଁ କାର୍ଯ୍ୟକ୍ରମ ପ୍ରସ୍ତୁତି ସହିତ କେନ୍ଦ୍ର ସରକାର ନିକଟକୁ ଏକ ଦାବିପତ୍ର ପଠାଇବାକୁ ନିଷ୍ପତ୍ତି ନିଆଗଲା । ଏଥିପାଇଁ ବିଭିନ୍ନ ରାଜନୈତିକ ଦଳ ସହ ଆଲୋଚନା କରାଗଲା । ତେବେ ଏହି ସମୟରେ ଶ୍ରୀଯୁକ୍ତ ଅଜେୟ ରାଉତଙ୍କ ନେତୃତ୍ୱରେ ନୂଆଦିଲ୍ଲୀଠାରେ ବିକ୍ଷୋଭ ପ୍ରଦର୍ଶନ ପାଇଁ ଓଡିଶାରୁ ଯାଉଥିବା ପ୍ରାୟ ୨୦୦କର୍ମୀଙ୍କୁ ନେଇ ଜନ୍ତରମନ୍ତରଠାରେ ଶାସ୍ତ୍ରୀୟ ମାନ୍ୟତା ପାଇଁ ଧାରଣା ଦେବାକୁ ନିଷ୍ପତ୍ତି ନିଆଗଲା । ତେବେ କେତେକ ଆନୁଷଙ୍ଗିକ କାରଣରୁ ଆମେ ବାଧ୍ୟହୋଇ ଏହି କାର୍ଯ୍ୟରୁ ନିବୃତ୍ତ ରହିଲୁ ।

ଏହି ସମୟରେ 'ଏଷଣା'(ଏଷଣା–୫୯, ଡିସେମ୍ବର–୨୦୦୯)ରେ ତଥା ଧାରାବାହିକ ଭାବରେ 'ଆମେ ଓଡିଆ' ନାମକ ଇ ପତ୍ରିକାରେ ଏ ସମ୍ପର୍କିତ ଦୀର୍ଘ ପ୍ରବନ୍ଧ ପ୍ରକାଶ ପାଇବା ତଥା ଓଡିଆ ଗବେଷଣା ପରିଷଦ ପକ୍ଷରୁ ରାଉରକେଲାଠାରେ ଅନୁଷ୍ଠିତ ଓଡିଆ ଭାଷା ସମ୍ପର୍କିତ ଜାତୀୟ ଆଲୋଚନାଚକ୍ରରେ ବିଶିଷ୍ଟ ଭାଷାବିତ ଡଃ ଦେବୀପ୍ରସନ୍ନ ପଟ୍ଟନାୟକଙ୍କୁ ଭେଟି ଏ ବିଷୟରେ ବିସ୍ତୃତ ଆଲୋଚନା କରିବା ପରେ ଶାସ୍ତ୍ରୀୟ ମାନ୍ୟତା ଦାବି ଭିନ୍ନ ମୋଡ ନେଲା । ସେ ଏ ବିଷୟରେ ସମାଜରେ(୧୬/୧/୧୦) ଏକ ପ୍ରବନ୍ଧ ଲେଖିଲେ । ଡଃ ବସନ୍ତ କୁମାର ପଣ୍ଡାଙ୍କ ଦୁଇଟି ସମାନ ଲେଖା ସମାଜ ଓ ସମ୍ବାଦ ପୃଷ୍ଠାରେ ପ୍ରକାଶ ପାଇଲା । ସ୍ତମ୍ଭକାର ବରେନ୍ଦ୍ରକୃଷ୍ଣ ଧଳ ଏ ବିଷୟରେ ଲେଖାଲେଖି ପୂର୍ବରୁ ଆରମ୍ଭ କରି ଦେଇଥିଲେ । ମାନ୍ୟବର ବିଧାୟକ ଶ୍ରୀଯୁକ୍ତ ଅମର ଶତପଥୀ ବିଧାନସଭାରେ ଏ ବିଷୟରେ ପ୍ରଶ୍ନ ଉଠାଇବାରୁ ଓଡିଆ ଭାଷାର ଶାସ୍ତ୍ରୀୟ ମାନ୍ୟତା ପାଇଁ ସବୁସ୍ତରରେ ସଚେତନତାର ବାଟ ଫିଟିଥିଲା । ଡଃ ନଟବର ଶତପଥୀଙ୍କ ପରାମର୍ଶକ୍ରମେ 'ସମାଜ' ସମ୍ପାଦକ ଶ୍ରୀଯୁକ୍ତ ଚନ୍ଦ୍ରଭାନୁ ପଟ୍ଟନାୟକ ଶାସ୍ତ୍ରୀୟ ମାନ୍ୟତା କାର୍ଯ୍ୟକୁ ଗତିଶୀଳ କରାଇବା ପାଇଁ ବିଶିଷ୍ଟ ବ୍ୟକ୍ତିଗଣଙ୍କୁ ନେଇ ସମାଜ କାର୍ଯ୍ୟାଳୟରେ ଏକ ବୈଠକ ଡକାଇ ଥିଲେ । ଚନ୍ଦ୍ରଭାନୁବାବୁ ଗାଡି ବ୍ୟବସ୍ଥା କରି ନଥିବାରୁ ଭୁବନେଶ୍ୱରର ତଥାକଥିତ ବିଦ୍ୱାନଗଣ ଆସି ନ ଥିଲେ । ଏ ଦିଗରେ ବିଶେଷ ଆଗ୍ରହୀ ଥିବା ଡଃ ବସନ୍ତ କୁମାର ପଣ୍ଡାଙ୍କୁ ତାଙ୍କ ବାସଭବନରୁ ମୁଁ ଗାଡିରେ ବସାଇ ନେଇଥିଲି । ଉକ୍ତ ବୈଠକରେ ପୂର୍ବତନ ମନ୍ତ୍ରୀ ଶ୍ରୀଯୁକ୍ତ ପଞ୍ଚାନନ କାନୁନଗୋ, ବିଧାୟକ ଶ୍ରୀଯୁକ୍ତ ପ୍ରସାଦ ହରିଚନ୍ଦନ, ପୂର୍ବତନ ଆରକ୍ଷୀ ମହାନିର୍ଦ୍ଦେଶକ ଶ୍ରୀଯୁକ୍ତ ଅମୀୟ ଭୂଷଣ ତ୍ରିପାଠୀ, ପ୍ରଫେସର ବିଜୟ ଶତପଥୀ, ଡଃ ବିଜୟାନନ୍ଦ ସିଂହ ପ୍ରମୁଖ ଏ ଦିଗରେ ସମ୍ପୂର୍ଣ୍ଣ ସହଯୋଗ କରିବେ ବୋଲି ପ୍ରତିଶ୍ରୁତି ଦେଲେ । ସମାଜ ଆନୁକୂଲ୍ୟରେ ପ୍ରତ୍ୟେକ ଜିଲ୍ଲାରେ ଏଥିପାଇଁ ଜନସଚେତନତା ମୂଳକ କାର୍ଯ୍ୟକ୍ରମ କରାଯିବ ଓ ଜାତୀୟ ସ୍ତରର ଆଲୋଚନାଚକ୍ର ଅନୁଷ୍ଠିତ ହେବ ବୋଲି ନିଷ୍ପତ୍ତି ନିଆଗଲା । କିନ୍ତୁ ସମାଜ ସମ୍ପାଦକ ପଦରୁ ଚନ୍ଦ୍ରଭାନୁବାବୁଙ୍କୁ ଅବ୍ୟାହତି ଦିଆଯିବା ଦ୍ୱାରା ଏହି ନିଷ୍ପତ୍ତିରେ ଇତି ଘଟିଲା ।

ଏହି ସମୟରେ ଏଷଣା ପତ୍ରିକାରୁ ମୋର ପ୍ରବନ୍ଧ ପଢି ଭାରତ ବିଦେଶସେବା ଅଧିକାରୀ ସ୍ୱର୍ଗତ ଶୁଭକାନ୍ତ ବେହେରା ମୋ ସହ ସମ୍ପର୍କ ସ୍ଥାପନ କରିବାରୁ ପୂର୍ବସଂଗୃହୀତ ତଥ୍ୟ ତାଙ୍କ ନିକଟକୁ ପଠାଇଲି । ଜଣେ ଇତିହାସର ଛାତ୍ର, ଗବେଷକ ତଥା ସାହିତ୍ୟିକ ପରିବେଶ ମଧ୍ୟରେ ବଢି ଥିବାରୁ ଏ ଦିଗରେ ତାଙ୍କର ଥିବା ଅନୁଭୂତି ମୋତେ ବହୁତ ସାହାଯ୍ୟ କରିଥିଲା । ଓଡିଆ ସାହିତ୍ୟର ପ୍ରାଚୀନତାକୁ ଦର୍ଶାଇବାକୁ ଯାଇ ହାତୀଗୁମ୍ଫା ଅଭିଲେଖ ଲେଖାଶୈଳୀ ଅନୁସାରେ କେବଳ ଓଡିଶାର ନୁହେଁ, ବରଂ ଭାରତର ପ୍ରଥମ ସାହିତ୍ୟ ବୋଲି କରିଥିବା ଯୁକ୍ତିକୁ ସେ ପ୍ରଥମେ ଗ୍ରହଣ କରି ନ ଥିଲେ । ମାତ୍ର ଏ ବିଷୟରେ ଅନ୍ୟ କେହି ବିରୋଧ କରି ନ ଥିବାରୁ ଆମେ କାହିଁକି ଏହି ମହାନ କୃତିତ୍ୱକୁ ଆଡେଇଯିବା ? ବରଂ ଅନ୍ୟମାନଙ୍କ ବିରୋଧକୁ ପ୍ରତିହତ କରିବା ପାଇଁ ଆମେ ପ୍ରସ୍ତୁତ ରହିବା ଆବଶ୍ୟକ ବୋଲି ମୋର ଯୁକ୍ତିକୁ ସେ ଗ୍ରହଣ କଲେ । ଏହି ସମୟରେ ସେ ଦୁଇଟି ପରାମର୍ଶ ଦେଇଥିଲେ । ୧– ଏହିସବୁ ଲେଖାକୁ ପୁସ୍ତକ ରୂପ ଦେବା । ୨– ଶାସ୍ତ୍ରୀୟ ମାନ୍ୟତା ଦାବିକୁ ଆହୁରି କ୍ରିୟାଶୀଳ ଓ ବାସ୍ତବ କରିବା ପାଇଁ ତେଲୁଗୁ, ତାମିଲ ଭଳି ଭାଷାଭିତ୍ତିକ ବିଶ୍ୱବିଦ୍ୟାଳୟ ସ୍ଥାପନ କରିବା । ଦୁଇଟିଯାକ କାର୍ଯ୍ୟ ବ୍ୟୟସାପେକ୍ଷ ଓ ତଥାକଥିତ ଓଡିଆ ବିଦ୍ୱାନଙ୍କୁ ନେଇ କରିବା ଅସମ୍ଭବ ମଧ୍ୟ । ପ୍ରାୟ ୫୦୦ପୃଷ୍ଠାର ବହି ଛାପିବା ପାଇଁ ୧ଲକ୍ଷ ଟଙ୍କା ଆବଶ୍ୟକ ଥିବାବେଳେ ଡଃ ହରେକୃଷ୍ଣ ପାତ୍ରଙ୍କ ଉଦ୍ୟମକ୍ରମେ ରାଜ୍ୟ ସଂସ୍କୃତି ବିଭାଗ ୨୦୦୦ଟଙ୍କା ସହାୟତା ପ୍ରଦାନ କରିବେ ବୋଲି ଚିଠି ଦେଲେ । ବାକି ଟଙ୍କା ଯୋଗାଡ କରିବାରେ ଅକ୍ଷମ ଥିବାରୁ କେତୋଟି ପ୍ରମୁଖ ତଥ୍ୟ ଓଡିଆ ଭାଷା ସାହିତ୍ୟ ପରିଚୟ ପୁସ୍ତକରେ ଏବଂ ବାକି କିଛି ଗୁରୁତ୍ୱପୂର୍ଣ୍ଣ କଥାକୁ ନେଇ ଭାଷା ଓ ଜାତୀୟତା ନାମକ ୧୧୨ ପୃଷ୍ଠାର ଏକ ବହି ଛାପିବାକୁ ନିଷ୍ପତ୍ତି ନେଲି । ଏହାର ମୁଖବନ୍ଧ ଶୁଭକାନ୍ତଭାଇ ଲେଖିଥିଲେ ତଥା ଏହାର ପ୍ରଥମ ସଂସ୍କରଣ ପୂଜ୍ୟ କୃଷ୍ଣସାରଙ୍କ ଜନ୍ମ ଦିବସରେ ବିଶିଷ୍ଟ ସାହିତ୍ୟିକା ଡଃ ପ୍ରତିଭା ରାୟଙ୍କଦ୍ୱାରା ଉନ୍ମୋଚିତ ହେଲା । ଏହି ବହି ପଢି ବିଶିଷ୍ଟ ସ୍ତମ୍ଭକାର ସ୍ୱର୍ଗତ ବରେନ୍ଦ୍ରକୃଷ୍ଣ ଧଳ ଧରିତ୍ରୀ ପୃଷ୍ଠାରେ ମୋର ଉଦ୍ୟମକୁ ପ୍ରଶଂସା କରିବା ସହିତ ଓଡିଆ ଭାଷାକୁ ଶାସ୍ତ୍ରୀୟ ମାନ୍ୟତା ମିଳିବା ବିଳମ୍ବ ହେବନାହିଁ ବୋଲି ଆଶା ବ୍ୟକ୍ତ କରିଥିଲେ । ପ୍ରଥମ ସଂସ୍କରଣ ଖୁବ୍‌ଶୀଘ୍ର ସରିଯିବା ପରେ ଏହାର ଦ୍ୱିତୀୟ ସଂସ୍କରଣ ଭୁବନେଶ୍ୱର ପୁସ୍ତକମେଳାରେ ପଦ୍ମଶ୍ରୀ ଦେବୀପ୍ରସନ୍ନ ପଟ୍ଟନାୟକଙ୍କଦ୍ୱାରା ଉନ୍ମୋଚିତ ହେଲା । ଏହା ମଧ୍ୟ ଖୁବଶୀଘ୍ର ସରିଯିବା ପରେ ତୃତୀୟ ସଂସ୍କରଣ କରିବାକୁ ପଡିଲା ।

ଶୁଭକାନ୍ତ ଭାଇଙ୍କ ଓଡିଆ ବିଶ୍ୱବିଦ୍ୟାଳୟ ସ୍ଥାପନା ପରାମର୍ଶ ମୋ ପାଇଁ କେବଳ ବିସ୍ମୟ ନ ଥିଲା ବରଂ ମୋ କାର୍ଯ୍ୟ ଦକ୍ଷତା ପାଇଁ ଏକ ଆହ୍ୱାନ ସୃଷ୍ଟି କରିଥିଲା । ଏଥିପାଇଁ ପୁରୁଣା ସାଥୀଙ୍କ ସହିତ ନୂଆ ସାଥୀ ଭାବରେ ଟିଟିଲାଗଡର ଅଧିବକ୍ତା ଶ୍ରୀଯୁକ୍ତ ଗଜାନନ ମିଶ୍ର ଯୋଗ ଦେଲେ । ଓଡିଆ ବିଶ୍ୱବିଦ୍ୟାଳୟ ସ୍ଥାପନା କମିଟିର ଅଧ୍ୟକ୍ଷ ଭାବରେ ଡକ୍ଟର କୃଷ୍ଣଚରଣ ବେହେରାଙ୍କୁ ମନୋନୀତ କରାଗଲା । ତାଙ୍କରି ନେତୃତ୍ୱରେ ଓଡିଆ ବିଶ୍ୱବିଦ୍ୟାଳୟ ସ୍ଥାପନା ପାଇଁ ଜନସଚେତନତା କାର୍ଯ୍ୟ ଆରମ୍ଭ କରାଗଲା । ଏକ ବେସରକାରୀ ବିଲ୍ ଡଃ ଦେବୀପ୍ରସନ୍ନ ପଟ୍ଟନାୟକ, ଉତ୍କଳ ସଂସ୍କୃତି ବିଶ୍ୱବିଦ୍ୟାଳୟର କୁଳପତି ପ୍ରଫେସର ଅମିୟ ପଟ୍ଟନାୟକ, ପୂର୍ବତନ ଅର୍ଥମନ୍ତ୍ରୀ ଶ୍ରୀଯୁକ୍ତ ପଞ୍ଚାନନ କାନୁନଗୋ ଏବଂ ମୁଁ ଓଡିଆ ବିଶ୍ୱବିଦ୍ୟାଳୟ ବିଲ୍ ପ୍ରସ୍ତୁତ କରିବା ପରେ ମାନ୍ୟବର ବିଧାୟିକା ଡଃ ସିପ୍ରା ମଲ୍ଲିକଙ୍କଦ୍ୱାରା ଓଡିଶା ବିଧାନସଭାରେ ଉପସ୍ଥାପନ କରାଗଲା ।

ଏହି ସମୟ ଭିତରେ କେଦାରନାଥ ଗବେଷଣା ପରିଷଦ ସମେତ ବିଭିନ୍ନ ଅନୁଷ୍ଠାନ ଶାସ୍ତ୍ରୀୟ ମାନ୍ୟତା ପାଇଁ ଆଲୋଚନାଚକ୍ର କରାଇବାରେ ଲାଗିଲେ । ଧୀରେ ଧୀରେ ଏହା ଜନଆନ୍ଦୋଳନର ରୂପ ନେଉଥିଲା । ‘ଓଡିଆ ଭାଷା ପରିଷଦ’ଏହି କାର୍ଯ୍ୟ ହାତକୁ ନେଉ ବୋଲି ‘ଲେଖକ ସାମୁଖ୍ୟ’ ଦ୍ୱାରା ଏକ ପତ୍ର ତତ୍କାଳୀନ ମୁଖ୍ୟ ଶାସନ ସଚିବଙ୍କୁ ପ୍ରଦାନ କରାଗଲା । ‘ଓଡିଆ ଭାଷା ପ୍ରତିଷ୍ଠାନ’ ଏହି କାର୍ଯ୍ୟ କରିବା ପାଇଁ ଆଗେଇ ଆସିବାରୁ ଆଉ କୌଣସି ସଂସ୍ଥା

ଏହି ଗୁରୁଦାୟିତ୍ୱ ବହନ କରିବା ପାଇଁ ଆଗ୍ରହୀ ହେଲେନାହିଁ । ଗଣଶିକ୍ଷା ସଚିବ ୧୧.୧୦.୧୦ରିଖରେ ପତ୍ର ଏଥିପାଇଁ ଲେଖିବାରୁ ତତ୍କାଳୀନ ନିର୍ଦ୍ଦେଶକ ଡଃ ହରିହର କାନୁନଗୋ୨୨.୮.୧୧ରେ ଶାସ୍ତ୍ରୀୟ ମାନ୍ୟତା ବିଷୟରେ ଏକ ଅନୌପଚାରିକ ବୈଠକ ଡାକିଥିଲେ । ସଂସ୍କୃତି ବିଭାଗ ପତ୍ରସଂଖ୍ୟା–୭୯୩୩/ ୧୦.୦୯.୧୧ରିଖ ଅନୁସାରେ ଶାସ୍ତ୍ରୀୟ ମାନ୍ୟତା ପାଇଁ କାର୍ଯ୍ୟ କରିବାକୁ ଓଡିଆ ଭାଷା ପ୍ରତିଷ୍ଠାନକୁ ୨ଲକ୍ଷଟଙ୍କା ପ୍ରଦାନ ପରେ ୧୪.୧୦.୧୧ରେ ପ୍ରକୃତ ବୈଠକ ଡାକି କମିଟି ଗଠନ କରାଯାଇଥିଲେ ମଧ ଏହା ୨ଥର ବସିବା ପରେ ସମାପ୍ତି ଘଟିଲା । ଭାଷା ପ୍ରତିଷ୍ଠାନ ଡାକିଥିବା ପ୍ରତ୍ୟେକ ବୈଠକରେ ମୁଁ., ଡଃ ନଟବର ଶତପଥୀ, ଡଃ ଦେବୀପ୍ରସନ୍ନ ପଟ୍ଟନାୟକ, ଡଃ ବସନ୍ତ ପଣ୍ଡା, ପ୍ରଫେସର ଅମିୟ ପଟ୍ଟନାୟକ ସମେତ ଅନ୍ୟ ବିଦ୍ୱାନମାନେ ଥିଲେ । ମାତ୍ର ଭିତ୍ତିପତ୍ର ପ୍ରସ୍ତୁତି ପାଇଁ ସହମତି ହୋଇ ନ ଥିଲା କିମ୍ବା କୌଣସି ଆଲୋଚନାଚକ୍ର ଆୟୋଜନ କରି ନ ଥିଲା । ତେଣୁ ଉଦ୍ୟମ ବିଫଳ ହେବାରୁ ଓଡିଆ ଅଧ୍ୟୟନ ଓ ଗବେଷଣା ସଂସ୍ଥା ମାଧ୍ୟମରେ ଏହି କାର୍ଯ୍ୟକୁ ପୁଣି ଥରେ ଆଗେଇ ନେବା ପାଇଁ ଉଦ୍ୟମ କଲି । ଏହି ଅନୁଷ୍ଠାନ ଦ୍ୱାରା ଓଡିଆ ମାଧ୍ୟମରେ ଆଇ.ଏ.ଏସ. ପରୀକ୍ଷା ପ୍ରସ୍ତୁତି ପାଇଁ ପ୍ରଶିକ୍ଷଣ ଦିଆଯାଉଥିଲା । ପୁଣି ଅନୁଷ୍ଠାନ ପକ୍ଷରୁ ଓଡିଆ ବିଶ୍ୱବିଦ୍ୟାଳୟ ସ୍ଥାପନ ସହିତ ଶାସ୍ତ୍ରୀୟ ମାନ୍ୟତା ପାଇଁ ଭିତ୍ତିପତ୍ର ପ୍ରସ୍ତୁତ କରିବା ନିଷ୍ପତ୍ତି ଅଧ୍ୟୟନ, ଆନ୍ଦୋଳନ ସହିତ ଗବେଷଣା ଭଳି ଜଟିଳ ଓ ବ୍ୟୟସାପେକ୍ଷ କାର୍ଯ୍ୟ କରିବାର ଦାୟିତ୍ୱ ନେଲା । ଅର୍ଥାତ ପରୋକ୍ଷରେ ଏହି ତିନୋଟିର ସଂପୂର୍ଣ୍ଣ ଭାର ମୋ ଉପରେ ପଡିଲା । ଅତ୍ୟଧିକ ଚାପ ସତ୍ତ୍ୱେ ଏହି କାର୍ଯ୍ୟର ଶୀଘ୍ର ନିଷ୍ପାଦନ ପାଇଁ ପୂର୍ବରୁ ସଂଗୃହୀତ ତଥ୍ୟର ଇଂରାଜୀ ଅନୁବାଦ କରିବାରେ ଲାଗିଲି । କାମ ସରିବା ପରେ ଅନୁଷ୍ଠାନର କେତେକ ସଦସ୍ୟଙ୍କ ନିକଟକୁ ଏହାର ସଂଶୋଧନ ପାଇଁ ଇମେଲ ଯୋଗେ ପଠାଇଲି । ଏହି ସମୟରେ ସାଂସଦ ଶ୍ରୀଯୁକ୍ତ ରାମଚନ୍ଦ୍ର ଖୁଣ୍ଟିଆଙ୍କ ସଭାପତିତ୍ୱରେ ତଥା ଶ୍ରୀଯୁକ୍ତ ଶେଖ୍ ମତଲୁବ ଅଲ୍ଲୀଙ୍କ ଆବାହକତ୍ୱରେ ଶାସ୍ତ୍ରୀୟ ମାନ୍ୟତା ପାଇଁ ଏକ ଭିତ୍ତିପତ୍ର ପ୍ରସ୍ତୁତି କମିଟି ଗଠନ କରାଗଲା । ତଦନୁସାରେ ଓଡିଆ ସାହିତ୍ୟର ଇତିହାସ ଲେଖିବା ପାଇଁ ମୋତେ ଦାୟିତ୍ୱ ଦିଆଗଲା । କିନ୍ତୁ କମିଟିର କୌଣସି ସଦସ୍ୟ କିଛି ଲେଖି ନ ଦେବାରୁ ଶ୍ରୀଯୁକ୍ତ ଅଲ୍ଲୀଙ୍କ ବାରମ୍ବାର ଅନୁରୋଧକ୍ରମେ ମୋଦ୍ୱାରା ଇଂରାଜୀରେ ପ୍ରସ୍ତୁତ ଭିତ୍ତିପତ୍ର ପ୍ରଫେସର ଡଃ ନଟବର ଶତପଥୀ, ଡଃ ଶୁଭକାନ୍ତ ବେହେରାଙ୍କଦ୍ୱାରା ସଂଶୋଧିତ ହେବାପରେ ଦେଖିବାପାଇଁ ଦେଲି । ସେ ଏହାକୁ ଶ୍ରୀ ରାମଚନ୍ଦ୍ର ଖୁଣ୍ଟିଆଙ୍କୁ ପ୍ରଦାନ କରିବାରୁ ମୋ ବିନା ପରାମର୍ଶରେ ଶ୍ରୀ ଖୁଣ୍ଟିଆ ଫଟୋଚିତ୍ର ଓ ତଥ୍ୟ ସାରଣୀ ନ ଥିବା ୮୦ପୃଷ୍ଠାର ଭିତ୍ତିପତ୍ର କେନ୍ଦ୍ର ସାହିତ୍ୟ ଏକାଡେମୀକୁ ପ୍ରଦାନ କଲେ ଓ ଖୁବ୍‌ଶୀଘ୍ର ପୂର୍ଣ୍ଣାଙ୍ଗ ରିପୋର୍ଟ ପ୍ରଦାନ କରିବେ ବୋଲି ଉଲ୍ଲେଖ କଲେ । ତେବେ କେନ୍ଦ୍ର ଏହି ଭିତ୍ତିପତ୍ର ଏହା ଅପୂର୍ଣ୍ଣାଙ୍ଗ ଥିବାରୁ ୧୯.୧୨.୧୨ରେ ବସିଥିବା ଭାଷା ବିଶେଷଜ୍ଞ କମିଟି କୌଣସି ନିଷ୍ପତ୍ତି ନ ନେଇ ପୂର୍ଣ୍ଣାଙ୍ଗ ବିବରଣୀ ମିଳିବା ପର୍ଯ୍ୟନ୍ତ ଅପେକ୍ଷା କରିଥିଲା ଓ କମିଟିର ନିଷ୍ପତ୍ତିକୁ ଶ୍ରୀ ଖୁଣ୍ଟିଆ ଓ ରାଜ୍ୟ ସରକାରଙ୍କୁ ଜଣାଇ ଦିଆଗଲା । ପୂର୍ଣ୍ଣାଙ୍ଗ ଭିତ୍ତିପତ୍ର ପ୍ରସ୍ତୁତି ସରିବା ପରେ ମୁଦ୍ରଣ କରି ଶାସ୍ତ୍ରୀୟ ମାନ୍ୟତା କ୍ରିୟାନୁଷ୍ଠାନ କମିଟିକୁ ଦେବା ପୂର୍ବରୁ ମୁଁ ଏକ ଭୟଙ୍କର ଦୁର୍ଘଟଣାରେ ଆହତ ହେବାରୁ ୧ମାସ ବିଳମ୍ବ ହୋଇଗଲା । ମୁଁ ଭଲ ହେବା ବେଳକୁ ରାଜ୍ୟ ସଂସ୍କୃତି ବିଭାଗ ଆଉ ଭାଷା ପ୍ରତିଷ୍ଠାନ ଉପରେ ନିର୍ଭର ନ କରି ଗତ ୨୪.୧.୧୩ରେ ମନ୍ତ୍ରୀଙ୍କ କାର୍ଯ୍ୟାଳୟରେ ଅନୁଷ୍ଠିତ ବୈଠକରେ ସଂସ୍କୃତି ବିଶ୍ୱବିଦ୍ୟାଳୟର କୁଳପତିଙ୍କ ଅଧ୍ୟକ୍ଷତାରେ ଏକ ୮ଜଣିଆ କମିଟି ଗଠନ କରି ଏକମାସ ଭିତରେ ରିପୋର୍ଟ ପ୍ରଦାନ କରିବାକୁ ନିର୍ଦ୍ଦେଶ ଦେଲେ । ଭାଷା ପ୍ରତିଷ୍ଠାନ ନିକଟରେ ୧୬ଜଣ ବିଦ୍ୱାନଙ୍କ ପ୍ରବନ୍ଧ ନ ଥିଲା । ତେଣୁ ମାସକ ଭିତରେ ଭିତ୍ତିପତ୍ର ପ୍ରସ୍ତୁତି ଅସମ୍ଭବ ଥିବାରୁ କମିଟି ସଦସ୍ୟ ଡଃ ଦେବୀପ୍ରସନ୍ନ ପଟ୍ଟନାୟକଙ୍କ ପ୍ରସ୍ତାବକ୍ରମେ ସରକାର ଆମଦ୍ୱାରା ପ୍ରସ୍ତୁତ ରିପୋର୍ଟକୁ ଗ୍ରହଣ କଲେ ଓ ଏହାକୁ ପୂର୍ଣ୍ଣାଙ୍ଗ ରୂପ ଦେବା ପାଇଁ ମୋତେ ୧୬.୨.୧୩ ବୈଠକରେ ଏହି କମିଟିର ସହଯୋଗୀ ସଦସ୍ୟ

କରାଗଲା । କମିଟି ସଦସ୍ୟଙ୍କ ପରାମର୍ଶକ୍ରମେ ପୂର୍ବ ପ୍ରସ୍ତୁତ ଭିତ୍ତିପତ୍ର ସାମାନ୍ୟ ସଂଶୋଧନ ପରେ ମଇ ୩୧ ତାରିଖରେ କମିଟି ଅନୁମୋଦନ କରିବାରୁ ସଂସ୍କୃତିମନ୍ତ୍ରୀଙ୍କୁ ଜୁନ ୨ତାରିଖରେ ପ୍ରଦାନ କରାଗଲା । ରିପୋର୍ଟ ମୁଦ୍ରଣରେ କିଛି ତ୍ରୁଟି ଥିବାରୁ ଏହାକୁ ସଂଶୋଧନ କରି ଜୁନ୨୩ ତାରିଖରେ କେନ୍ଦ୍ର ସଂସ୍କୃତି ମନ୍ତ୍ରାଳୟକୁ ପ୍ରଦାନ କରାଗଲା । ଏହାର ବହୁ ପୂର୍ବରୁ ସାଂସଦ ଶ୍ରୀ ଖୁଣ୍ଟିଆ ଭିତ୍ତିପତ୍ର ପାଇଥିଲେ ମଧ୍ୟ ବିଭିନ୍ନ କାରଣରୁ ବ୍ୟସ୍ତ ଥିବାରୁ ମେ ୮ ତାରିଖରେ ସାହିତ୍ୟ ଏକାଡେମୀ ସଚିବଙ୍କୁ ବହି ପ୍ରଦାନ କରିଥିଲେ । ଏହି ବହି ଭାଷା କମିଟି ସଦସ୍ୟଗଣ ପାଠ କରି ଉଚ୍ଚ ପ୍ରଶଂସା କରିବା ସହିତ ୨୩ ଜୁଲାଇ୨୦୧୩ ତାରିଖରେ ଅନୁଷ୍ଠିତ ବୈଠକରେ ଓଡିଆ ଭାଷାକୁ ଶାସ୍ତ୍ରୀୟ ମାନ୍ୟତା ଦେବା ପାଇଁ କେନ୍ଦ୍ର ସଂସ୍କୃତି ମନ୍ତ୍ରଣାଳୟକୁ ପରାମର୍ଶ ଦେଲେ । ଏହି ପରାମର୍ଶ ଅନୁସାରେ ଗତ ୨୦ ଫେବୃଆରୀ ୨୦୧୪ରେ କେନ୍ଦ୍ର କ୍ୟାବିନେଟ ଓଡିଆ ଏକ ଶାସ୍ତ୍ରୀୟ ଭାଷା ବୋଲି ସ୍ୱୀକାର କରିବାରୁ ସଂସ୍କୃତ, ତାମିଲ, ତେଲୁଗୁ, କନ୍ନଡ, ମାଲାୟାଲାମ ସହିତ ଆମ ମାଟିର ଭାଷା ଓଡିଆ ଷଷ୍ଠ ଶାସ୍ତ୍ରୀୟ ଭାଷାର ମର୍ଯ୍ୟାଦା ପାଇଲା ।

ମନେପଡେ ବିଶିଷ୍ଟ ମାଲାୟାଲାମ ସାହିତ୍ୟିକ ଓଭାପାକ୍କାଲ ନୀଳକଣ୍ଠ ଭେଲୁ କୁରୁପ ଜ୍ଞାନପୀଠ ପୁରସ୍କାର ପାଇବା ପରେ ସାମ୍ବାଦିକଙ୍କୁ ଦେଇଥିବା ମନ୍ତବ୍ୟ– ଏଥର ମୋର ଏକମାତ୍ର କାମ ମାଲାୟାଲାମ ଭାଷାକୁ ଶାସ୍ତ୍ରୀୟ ମାନ୍ୟତା ପ୍ରଦାନ କରାଇବା । ଏତକ ହୋଇପାରିଲେ ମୋ ପାଇଁ ଏହା ଦ୍ୱିତୀୟ ଜ୍ଞାନପୀଠ ପୁରସ୍କାର ହେବ । ଏହି କାମ ମୁଁ ମୃତ୍ୟୁ ପର୍ଯ୍ୟନ୍ତ କରି ଚାଲିବି । ନିଜର କଥା ସେ ରଖିଥିଲେ । ପରବର୍ଷ ନିଜ ତରଫରୁ ଏକ ଭିତ୍ତିପତ୍ର ପ୍ରସ୍ତୁତ କରି ସରକାରଙ୍କୁ ପ୍ରଦାନ କରିଥିଲେ । ତାଙ୍କରି ଉଦ୍ୟମରେ ୧୬ଶ ଶତାବ୍ଦୀରେ ସୃଷ୍ଟି ମାଲାୟାଲାମ ଭାଷାକୁ କେନ୍ଦ୍ର ସଂସ୍କୃତି ବିଭାଗଦ୍ୱାରା ଗଠିତ ଭାଷା କମିଟି ଅନୁମୋଦନକ୍ରମେ କେନ୍ଦ୍ର ସରକାର ଶାସ୍ତ୍ରୀୟ ମାନ୍ୟତା ପ୍ରଦାନ କଲେ । ଅସମ୍ଭବକୁ ସମ୍ଭବ କରିଦେଲେ କେରଳବାସୀ । କାରଣ ଗତ ଜୁନ ୨୦୧୨ରେ ଅନୁଷ୍ଠିତ ଭାଷାକମିଟି ନିକଟରେ ଉପସ୍ଥିତ ଗବେଷକ ତାମିଲ ସାହିତ୍ୟ ତୋଲକ୍କାପିୟମରେ ଥିବା କେତୋଟି ଶବ୍ଦକୁ ନେଇ ମାଲାୟାଲାମ ଭାଷାର ୨୦୦୦ବର୍ଷ ଇତିହାସ ପ୍ରମାଣ କରୁଥିବା ବେଳେ କମିଟି ସଦସ୍ୟ ପ୍ରଫେସର ଭି.କୃଷ୍ଣମୂର୍ତ୍ତିଙ୍କ କେତୋଟି ଅତି ସାଧାରଣ ପ୍ରଶ୍ନର ଉତ୍ତର ଦେଇ ନପାରିବାରୁ ଏହି ଭାଷାକୁ ଶାସ୍ତ୍ରୀୟ ମାନ୍ୟତା ଦିଆଯାଇ ନଥିଲା । ତେବେ ଏଥିରେ ମାଲାୟାଲାମବାସୀ ନିରୁତ୍ସାହିତ ନ ହୋଇ ପ୍ରଫେସର କୃଷ୍ଣାମୂର୍ତ୍ତିଙ୍କ ଦେହାନ୍ତ ପରେ ପୁଣି ଲାଗିପଡିଲେ ଓ ସଫଳ ହେଲେ ।

ଏସବୁ ସତ୍ତ୍ୱେ ଓଡିଆ ଭାଷା ଶାସ୍ତ୍ରୀୟ ମାନ୍ୟତା ପାଇବା ପାଇଁ ଉଭୟ ସରକାରୀ ଓ ବେସରକାରୀ ଭାବରେ କେତେଜଣଙ୍କ ନିଷ୍ଠାପର ଉଦ୍ୟମ ସଫଳ ହୋଇଥିବାରୁ ୧୯୩୬ ପରେ ସର୍ବଭାରତୀୟ ସ୍ତରରେ ଓଡିଶା ପୁଣି ଥରେ ନିଜର ଗୌରବାବହ ଅସ୍ତିତ୍ୱ ପ୍ରମାଣ କରିବାରେ ସଫଳ ହୋଇପାରିଲା ।

ଶାସ୍ତ୍ରୀୟ ମାନ୍ୟତା ପାଇବା ପରେ ଏବେ ପ୍ରଶ୍ନ ଉଠୁଛି ଓଡିଆ ଭାଷା ପାଇଁ କି ପ୍ରକାର କାର୍ଯ୍ୟ ହାତକୁ ନେବାକୁ ପଡିବ । ଓଡିଆ ଭାଷା ବିକାଶ ପାଇଁ ଚିନ୍ତା କଲାବେଳେ ଏଥିପାଇଁ ନିର୍ଦ୍ଦିଷ୍ଟ ଯୋଜନା ପ୍ରସ୍ତୁତ କରିବାର ଆବଶ୍ୟକତା ଅଛି । ଏହି ଯୋଜନା ୩ଟି ଦିଗ ଉପରେ ପର୍ଯ୍ୟବସିତ – ପ୍ରତିଷ୍ଠା, ପ୍ରସ୍ତୁତି ଓ ପ୍ରକାର୍ଯ୍ୟ । ୧୮୬୬ର ନଅଙ୍କ ଦୁର୍ଭିକ୍ଷ ପରେ ଓଡିଆ ଜାତୀୟତାବୋଧର ଉନ୍ମେଷ ଯୋଗୁଁ ୧୯୩୬ରେ ଭାଷାଭିତ୍ତିକ ସ୍ୱତନ୍ତ୍ର ପ୍ରଦେଶ ଗଠନ,୧୯୫୦ରେ ଭାରତର ସାମ୍ବିଧାନିକ ଭାଷା ଭାବେ ଅନ୍ୟ ୧୩ଟି ଭାଷା ସହିତ ଓଡିଆ ସରକାରୀ ଭାଷା ମାନ୍ୟତା ପାଇବା ଓ ୨୦୧୪ରେ ପ୍ରାଚୀନ ଓ ସମୃଦ୍ଧ ଭାଷା ଭାବରେ ଓଡିଆକୁ ଶାସ୍ତ୍ରୀୟ ମାନ୍ୟତା ପ୍ରଦାନ ପ୍ରଥମ ଦିଗ ଅର୍ଥାତ ଓଡିଆ ଭାଷା ପ୍ରତିଷ୍ଠା ହୋଇସାରିଛି । ଏହାର ପରବର୍ତ୍ତି ଦିଗ ହେଉଛି ପ୍ରସ୍ତୁତି । ଏହା ଅନ୍ତର୍ଗତ ହେଉଛି ଲିପିସଂସ୍କାର, ବ୍ୟାକରଣ ସଂସ୍କାର, ବନାନ ମାନକୀକରଣ, ଶବ୍ଦକୋଷ ଓ ଭାଷାକୋଷ ପ୍ରସ୍ତୁତି, କାର୍ଯ୍ୟାଳୟ, ନ୍ୟାୟାଳୟ ଓ ଚିକିତ୍ସାର ପରିଭାଷା ପ୍ରସ୍ତୁତି । ଯଦିଓ ଏସବୁ କାର୍ଯ୍ୟ

ଆରମ୍ଭ ହୋଇ ସାରିଛି, ମାତ୍ର ଏଥିରେ ବିଶେଷ କିଛି ଅଗ୍ରଗତି ହୋଇପାରି ନାହିଁ । ଲିପି ସଂସ୍କାର ନୀଳକଣ୍ଠଙ୍କ ସମୟରୁ ଆରମ୍ଭ ହୋଇଥିବା ବେଳେ ଏହା ଆଗକୁ ଗତି କରିପାରି ନାହିଁ । ଓଡିଆ ବ୍ୟାକରଣ ରଚନା ସେହି ପଥର ପଥିକ । ଏବେ ସମସ୍ତେ ଅନୁଭବ କଲେଣି ଯେ, ଓଡିଆ ବ୍ୟାକରଣ ରଚନା ହୋଇନାହିଁ । ପ୍ରତ୍ୟେକ ଭାଷାର ବ୍ୟାକରଣ ରହିଛି ଓ ପ୍ରତ୍ୟେକ ମଣିଷ କଥା କହିଲା ବେଳେ ଅଚେତନ ଭାବେ ନିଜ ଭାଷାର ବ୍ୟାକରଣ ବ୍ୟବହାର କରିଥାଏ । ଏହା ସେମାନଙ୍କୁ କୌଣସି ବହି ନୁହେଁ, ବରଂ ପରିବେଶ ଶିଖାଇଥାଏ । ତେବେ ଅଧ୍ୟୟନ ବା ବିଦ୍ୟାଳୟ ଶିକ୍ଷା ବ୍ୟକ୍ତିର ଏହି ଅଚେତନକୁ ସଚେତନ କରାଇ କଥାବାର୍ତ୍ତାରେ ଶୁଦ୍ଧ ଓ ଶାଳୀନତା ଆଣି ବ୍ୟକ୍ତିତ୍ୱ ପରିବର୍ଦ୍ଧିତ କରେ । ଏହାବ୍ୟତୀତ ଗୋଟିଏ ରାଜନୈତିକ ସୀମା ଭିତରେ ଅନେକ ଭାଷାଭାଷୀ ବାସ କରୁଥିବାରୁ ପାରସ୍ପରିକ ସଂହତି ପାଇଁ ଗୋଟିଏ ସମୃଦ୍ଧ ଭାଷାକୁ କାର୍ଯ୍ୟାଳୟ ବା ମାନକଭାଷା ଭାବରେ ଗୃହୀତ ହେବାପରେ ସମସ୍ତଙ୍କ ଶିକ୍ଷା ଉଦ୍ଦେଶ୍ୟରେ ସେହି ଭାଷାର ବ୍ୟାକରଣ ପଢାଯାଏ । ତେଣୁ ଜାତୀୟ ସଂହତି ଓ ଭାଷାର ଗତିଶୀଳତା ପାଇଁ ବ୍ୟାକରଣ ରଚନା ଆବଶ୍ୟକ । ସେତକ ଓଡିଆରେ ନଥିବାରୁ ଓଡିଶା ଆଜି ଉତ୍ତର, ଦକ୍ଷିଣ, ପଶ୍ଚିମ ଓ ଉପକୂଳ ଭେଦରେ ବିଭକ୍ତ ।

ବନାନ ମାନକୀକରଣ ବ୍ୟାକରଣ ରଚନା ସହ ଜଡିତ । ଭାଷାରେ ପରିବର୍ତ୍ତନ ଏକ ସ୍ୱାଭାବିକ ପ୍ରକ୍ରିୟା । ଏହି ପରିବର୍ତ୍ତନର ଚିହ୍ନଟ ପାଇଁ ବ୍ୟାକରଣର ଆବଶ୍ୟକତା ଅଛି । ଉଚ୍ଚାରଣ ଓ ବନାନ ମଧ୍ୟରେ ସମନ୍ୱୟ ନରହିବା ଫଳରେ ବନାନ ଭୁଲ ରହେ । ପୁଣି ଆମ ପିଲାମାନଙ୍କର କେତେକ ଧ୍ୱନି ତଥା ଫଳା ଓ ମାତ୍ରା ପ୍ରୟୋଗରେ ବିଶେଷ ଜ୍ଞାନ ନଥିବାରୁ ଶବ୍ଦ ବନାନରେ ଅଶୁଦ୍ଧି ଦେଖାଦିଏ । କୌଣସି ଭାଷା ଲିଖିତ ରୂପ ନେବାପରେ ଶୁଦ୍ଧତା ଓ ସ୍ଥିରତା ଆସେ । ଲିଖିତ ରୂପର ଉଚ୍ଚାରଣ ସହଜ ତଥା ମଧୁର ଓ ସୁବୋଧ ହେବା ଆବଶ୍ୟକ । ତାହା ନ ହେଲେ ପାଠକ ବା ଶ୍ରୋତା ନିକଟରୁ ଏହା ଦୂରେଇ ଯିବ । ତେଣୁ ଭାଷା ଯୋଜନାରେ ବନାନ ମାନକୀକରଣର ଏକ ପ୍ରମୁଖ ଭୂମିକା ରହିଛି ।

ଶବ୍ଦ ବ୍ୟବହାରକୁ ନେଇ ବିବାଦ ଚାଲିଥିବା ବେଳେ ପୂର୍ଣ୍ଣାଙ୍ଗ ଶବ୍ଦ କୋଷ ନଥିବାରୁ ଆଜିର ଯୁଗରେ କୌଣସି ବିଷୟରେ ବ୍ୟାଖ୍ୟା କରିବା ପାଇଁ ଓଡ଼ିଆ ଶବ୍ଦଟିଏ ମିଳୁ ନାହିଁ । ପ୍ରଶାସନିକ ଶବ୍ଦ କୋଷ ବ୍ୟବହାର ଉପଯୋଗୀ ହୋଇ ନଥିବାରୁ ଓଡିଆ ଏପର୍ଯ୍ୟନ୍ତ କାର୍ଯ୍ୟାଳୟରେ ବ୍ୟବହାର ହେଉନାହିଁ । ତେଣୁ ଶବ୍ଦ ସଂଗ୍ରହ କରି ତାହାକୁ ବ୍ୟବସ୍ଥିତ ରୂପ ପ୍ରଦାନ ପୂର୍ବକ ଏକ ପୂର୍ଣ୍ଣାଙ୍ଗ ଶବ୍ଦ କୋଷ ପ୍ରସ୍ତୁତ କରିବା ଆବଶ୍ୟକ । ଜନସାଧାରଣଙ୍କ ଭାଷା ଆଉ ସାହିତ୍ୟରେ ଦେଖିବାକୁ ମିଳୁନାହିଁ । ଆମୋଦ ପ୍ରମୋଦରେ ଏହି ପ୍ରମାଦ ଦେଖିବାକୁ ମିଳେ । ସବୁଠାରୁ ଅସୁବିଧା ସୃଷ୍ଟି କରିଛି ଗଣମାଧ୍ୟମର ଭାଷା । ସମ୍ବାଦ, ମନୋରଞ୍ଜନ, ଆଲୋଚନା ଆଦିରେ ଅବୁଝା ହିନ୍ଦୀ ବା ଅଯଥା ଇଂରାଜୀର ବ୍ୟବହାର ଓଡ଼ିଆ ଭାଷା ହତ୍ୟାର ଏକ ମାଧ୍ୟମ ପାଲଟିଯାଇଛି । ଗଣମାଧ୍ୟମରୁ ଲୋକେ ବହୁ କଥା ଶିଖନ୍ତି, ସିଧାସଳଖ ପ୍ରଭାବିତ ହୁଅନ୍ତି । ଦିନଥିଲା ଓଡ଼ିଆ ଭାଷାର ଶୁଦ୍ଧ ପ୍ରୟୋଗ ସଂପର୍କରେ ଖବରକାଗଜକୁ ଦୃଷ୍ଟାନ୍ତ ରୂପେ ଗ୍ରହଣ କରାଯାଉଥିଲା । ମାତ୍ର ଏବେ ଆଉକିଛି ବାଛବିଚାର ନାହିଁ । ନିଜ ଅଜ୍ଞତାକୁ ଘୋଡ଼େଇ କେତେକ ଯୁକ୍ତି କରୁଛନ୍ତି ଯେ ନୂତନ ଶବ୍ଦର ବ୍ୟବହାର ଓଡ଼ିଆ ଶବ୍ଦ ଭଣ୍ଡାର ବୃଦ୍ଧି ହେବ । ତାହା ନକଲେ ଭାଷା ବଢ଼ିବ ନାହିଁ, ବରଂ ସଂକୁଚିତ ହେବ । ଏହା ସଂପୂର୍ଣ୍ଣ ଭୁଲ କଥା । ଓଡ଼ିଆଶବ୍ଦ ନଥିବା ସ୍ଥଳେ ନୂଆ ଶବ୍ଦ ବ୍ୟବହାର ହୋଇପାରେ, ମାତ୍ର ଓଡ଼ିଆ ଶବ୍ଦ ଥାଇ ଏହା ବଦଳରେ ଅନ୍ୟ ଭାଷାର ଶବ୍ଦକୁ ଟାଣିଓଟାରି ବ୍ୟବହାର କଲେ ଆମ ଭାଷା ବଢ଼ିବ ନାହିଁ ବରଂ ବୁଡ଼ିବ ।

ଭାଷା ବିକାଶ ଓ ସ୍ଥାୟିତ୍ୱ ପାଇଁ ସବୁଠାରୁ ବଡ ଭୂମିକା ନିର୍ବାହ କରୁଥିବା ଶିକ୍ଷା, ଗବେଷଣା ଏବଂ କାର୍ଯ୍ୟାଳୟର ଭାଷା ଓଡିଆ ହୋଇପାରି ନାହିଁ । ଅର୍ଥାତ ଓଡିଆ ରାଜଭାଷା ହୋଇସାରିଥିବା ବେଳେ ଏପର୍ଯ୍ୟନ୍ତ ଜ୍ଞାନ ଆହରଣର ମାଧ୍ୟମ ହୋଇପାରିନାହିଁ । ତେଣୁ ଓଡିଆକୁ ଜ୍ଞାନର ଭାଷା କରିବା ଆବଶ୍ୟକ । ଏହା ହେଉଛି ପ୍ରକାର୍ଯ୍ୟ ବା ଭାଷାକୁ କାର୍ଯ୍ୟରେ ପ୍ରତିଫଳିତ କରିବା, ଯାହା

ଭାଷା ବିକାଶ ପାଇଁ ତୃତୀୟ ତଥା ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ଯୋଜନା । ଏହା ଘର ତଥା ଶିକ୍ଷାନୁଷ୍ଠାନରେ ବ୍ୟବହୃତ ଭାଷା ସହ ଜଡିତ । ଶିଶୁଟିଏ ଜନ୍ମ ହେବାର ୨ବର୍ଷ ପରେ ଚିହ୍ନିବା ଶକ୍ତି ପାଇଥାଏ । ଏହି ଚିହ୍ନିବା ଶକ୍ତି ହିଁ ଭାଷା । ପ୍ରଥମେ ଭାଷା କଥିତ ରୂପରେ ଓ ପରେ ଲିଖିତ ରୂପରେ ଶିଶୁର ଜ୍ଞାନ ପରିବର୍ଦ୍ଧିତ କରେ । କଥିତ ରୂପରେ ଗଛ, ମାଛ, ଗାଈ, ନଈ, ମଣିଷ, ପଣସ ଆଦି ଚିହ୍ନି ସାରିବା ପରେ ତାହାକୁ ଲେଖିବାର ପ୍ରୟାସ ହେଉଛି ଚିହ୍ନିବା ଶକ୍ତିକୁ ଗତିଶୀଳ କରିବା । କୌଣସି କାରଣରୁ ମାତୃଭାଷାରେ ଚିହ୍ନଟ ପ୍ରକ୍ରିୟା ଠିକ୍ ଭାବରେ ହୋଇ ନପାରିଲେ ଲିଖନ ପ୍ରକ୍ରିୟା ଦ୍ୱାରା ଏହାକୁ ସଂଶୋଧିତ କରିହୁଏ । ତେଣୁ ଲିଖନ ପ୍ରକ୍ରିୟାରେ ଓଡିଆ ଭାଷାକୁ ସମୃଦ୍ଧ କରିବା ପାଇଁ ଯୁଦ୍ଧକାଳୀନ ଭିତ୍ତିରେ ଆବଶ୍ୟକୀୟ ପଦକ୍ଷେପ ନେବା ଜରୁରୀ ।

ଉପରୋକ୍ତ ପ୍ରସ୍ତୁତି ଓ ପ୍ରକାର୍ଯ୍ୟ ସମାପ୍ତି ପରେ ଭାଷା ବିକାଶ କାମ ଆରମ୍ଭ ହେବ । ଏହା ଅନ୍ତର୍ଗତ କାମ ଅର୍ଥାତ ପ୍ରାଚୀନ ତାଳପତ୍ର ଓ ଶିଳାଲେଖ ସଂଗ୍ରହ ଓ ସଂରକ୍ଷଣ କରିବା ସହିତ ଏଥିରୁ ପ୍ରାଚୀନ ଓଡିଆ ସାହିତ୍ୟ ଅନ୍ୱେଷଣ କରି ଏହାର ସମ୍ପାଦନା ଓ ପ୍ରକାଶନ, ପ୍ରାଚୀନ ଓଡିଆ ସାହିତ୍ୟକୁ ଅନ୍ୟ ଭାଷାରେ ଅନୁବାଦ, ଓଡିଆ ବ୍ୟାକରଣର ଐତିହାସିକ ଅଧ୍ୟୟନ, ପ୍ରାଚୀନ ଓଡିଆ ଭାଷା, ଲିପି, ସାହିତ୍ୟ, ଇତିହାସ ଉପରେ ଗବେଷଣା ଏବଂ ଅନ୍ୟ ସହିତ ତୁଳନାତ୍ମକ ଅଧ୍ୟୟନ, ଓଡିଆ ଭାଷା ଓ ସଂସ୍କୃତି ପରିପ୍ରେକ୍ଷୀରେ ସଂସ୍କୃତ, ପାଲି ଓ ପ୍ରାକୃତର ଅଧ୍ୟୟନ, ପୂର୍ବ ଓ ଦକ୍ଷିଣପୂର୍ବ ଏସିଆ, ଦକ୍ଷିଣ ଓ ଉତ୍ତରପୂର୍ବ ଭାରତ ସହ ଓଡିଶାର ସାଂସ୍କୃତିକ ଓ ଭାଷାଗତ ଅଧ୍ୟୟନ, ଓଡିଆ ଉପଭାଷା ଓ ଆଞ୍ଚଳିକ ଭାଷାର ଐତିହାସିକ ଅଧ୍ୟୟନ, ପ୍ରାଚୀନ ଓଡିଆ ଅଧ୍ୟୟନ ପାଇଁ ଡିଜିଟାଲ ପାଠାଗାର, ଅନଲାଇନ ମାଧ୍ୟମରେ କ୍ଲାସିକାଲ ଓଡିଆ ଶିକ୍ଷା ଇତ୍ୟାଦି । ଏଥିପାଇଁ କେନ୍ଦ୍ର ସରକାର ପ୍ରଚୁର ଅର୍ଥ ବ୍ୟବସ୍ଥା କରିଥିବାରୁ ଅର୍ଥ ଆଉ ବାଧକ ନୁହେଁ । ଏଠାରେ କେବଳ ବାଧକ ହେଉଛି ଇଚ୍ଛାଶକ୍ତି ଓ ବିଦ୍ୱାନଙ୍କ ଅଭାବ । ଏଥିପାଇଁ ରାଜ୍ୟ ସରକାରଙ୍କୁ ଭାଷା ବିଶେଷଜ୍ଞ ସମିତି ଗଠନ କରିବାକୁ ହେବ । ଏହି ସମିତି ଓଡିଆ ଭାଷା ଶିକ୍ଷା, ଗବେଷଣା ଓ ବ୍ୟବହାର ବିଷୟରେ ରାଜ୍ୟ ସରକାରଙ୍କୁ ପରାମର୍ଶ ଦେବ । ଏହା ଏକ ଗୁରୁତ୍ୱପୂର୍ଣ୍ଣ ତଥା ଜାତୀୟ ସ୍ୱାର୍ଥ ପାଇଁ ଉତ୍ସର୍ଗୀକୃତ ଥିବାରୁ ମୁହଁଦେଖା ଓ ପଦପଦବୀକୁ ଗୁରୁତ୍ୱ ନଦେଇ ଭାଷାସଂସ୍କୃତି ଓ ଇତିହାସ ବିଷୟରେ ଜ୍ଞାନ ଥିବା ତଥା ଓଡିଆ ଭାଷା ପାଇଁ ନିଷ୍ଠାପର ଭାବରେ କାମ କରୁଥିବା ବ୍ୟକ୍ତିମାନଙ୍କୁ ନେଇ କମିଟି ଗଠନ କରାଯାଉ । ଓଡିଆ ଭାଷାର ସୁରକ୍ଷା, ସମୃଦ୍ଧି, ଓ ଲୋକପ୍ରିୟତା ସୃଷ୍ଟି କରିବା ପାଇଁ ଏକ ସ୍ୱତନ୍ତ୍ର ଭାଷାଭିତ୍ତିକ ବିଶ୍ୱବିଦ୍ୟାଳୟ ଯୁଦ୍ଧକାଳୀନ ଭିତ୍ତିରେ ସ୍ଥାପନ କରାଯାଉ । ଏଠାରେ ମନେରଖିବାକୁ ହେବ ଭାଷାଭିତ୍ତିକ ବିଶ୍ୱବିଦ୍ୟାଳୟର ପ୍ରଧାନ ଉଦ୍ଦେଶ୍ୟ– 'ଭାଷା ମାଧ୍ୟମରେ ଓଡିଆ ଜାତି ଓ ସଂସ୍କୃତିକୁ ପୁଣି ଥରେ ବିଶ୍ୱରେ ପ୍ରତିଷ୍ଠା କରିପାରିବାର ଶକ୍ତି'କୁ ସମ୍ପ୍ରସାରିତ କରିବା । ଓଡିଆ ଭାଷାକୁ ସେହି ସ୍ତରରେ ପହଞ୍ଚାଇବାକୁ ହେଲେ ସରକାରଙ୍କ ଉପରେ ସବୁ ଦାୟିତ୍ୱ ନ ଦେଇ ଆମକୁ ମଧ୍ୟ କିଛି କରିବା ପାଇଁ ଆଗେଇ ଆସିବାକୁ ପଡିବ ।

ସଦସ୍ୟ ସଚିବ
ଓଡ଼ିଆ ଅଧ୍ୟୟନ ଓ ଗବେଷଣା ସଂସ୍ଥା
ଏନ୪/୧୭, ନୂଆପଲ୍ଲୀ, ଭୁବନେଶ୍ୱର



# ମୁକ୍ତିର ମହାକବି ଭୀମଭୋଇ

ଡକ୍ଟର ହୁସେନ ରବିଗାନ୍ଧୀ

ସ୍ୱାଧୀନତା ପୂର୍ବରୁ କିଛି ଅଧ୍ୟାପକ ଓ ଇଂରେଜ ଭକ୍ତ ଲେଖକ ରାଧାନାଥ ରାୟଙ୍କୁ ଆଧୁନିକ ଓଡ଼ିଆ କାବ୍ୟଧାରାର ଆଦ୍ୟ ପ୍ରବର୍ତ୍ତନ ଭାବେ ଗ୍ରହଣ କରି ଅନେକ ପୁସ୍ତକ ଓ ଅନେକ ଆଲେଖ୍ୟ ରଚନା କରି ପ୍ରକାଶିତ କରିଥିଲେ । ସ୍ୱାଧୀନତା ପରେ ମଧ୍ୟ ଆମ ସାହିତ୍ୟର ସଂଖ୍ୟାଧିକ ଆଲୋଚକ ଏହି ଧାରାଟିକୁ ସମର୍ଥନ କରି ଆସିଲେ ।

ଆଧୁନିକତାର ଅର୍ଥ ହେଉଛି, ସମାଜରେ ପ୍ରଚଳିତ କୁବିଶ୍ୱାସକୁ ମୂଲ୍ୟବୋଧ, ସାମାଜିକ ଭେଦାଭେଦ, ଅସାମ୍ୟ ବା ଅନୈକ୍ୟ ବିରୁଦ୍ଧରେ ସ୍ୱର ଉଠାଇ ନିଜ ଲେଖନୀରେ ତାକୁ ଚିତ୍ରଣ କରିବା, ତାକୁ ପ୍ରତିବାଦ ଓ ପ୍ରତିରୋଧ କରିବା, ଲୋକସାଧାରଣଙ୍କୁ ଅସାମ୍ୟ ଅନୈକ୍ୟ ବିରୁଦ୍ଧରେ ସଙ୍ଗଠିତ ହେବାକୁ ନିଜ ଲେଖନୀ ମାଧ୍ୟମରେ ଆହ୍ୱାନ ଜଣାଇବା । ଆମ କଥା ସାହିତ୍ୟର ଜନକ ଫକୀର ମୋହନ ହିଁ ଥିଲେ ଓଡ଼ିଶାର ସାମାଜିକ ଦୁର୍ବଳ ବର୍ଗର ଅନନ୍ୟ ପ୍ରତିନିଧି । ତାଙ୍କ ଉପନ୍ୟାସ ''ଛ'ମାଣ ଆଠଗୁଣ୍ଠ''ର ଦୁଇ ପ୍ରମୁଖ ଚରିତ୍ର-ସାରିଆ ଓ ଭଗିଆ, ଓଡ଼ିଶାର ଶ୍ରେଣୀ ବିଭକ୍ତ ତଥା ଜାତି ବିଭକ୍ତ ସମାଜରେ ଦରିଦ୍ର, ଶୁଦ୍ର ସଂପ୍ରଦାୟର ନିଛକ ପ୍ରତିନିଧିତ୍ୱ କରନ୍ତି । ''ଲଛମା'' ଉପନ୍ୟାସରେ ମରହଟ୍ଟା ବର୍ଗୀମାନଙ୍କର ମୁକାବିଲା କରିବାକୁ କୌଣସି ସଂଭ୍ରାନ୍ତ ରାଜା ବା ସାମନ୍ତ ଆସିନାହାନ୍ତି । ସାମାନ୍ୟ ଚାଷୀ (ଖଣ୍ଡାୟତ) ସଂପ୍ରଦାୟରୁ ଆସିଥିବା ଚରିତ୍ର ହିଁ ଏହି ସାହସ କରିଛି ଏବଂ ସଫଳ ହୋଇଛି । '' ରାଣ୍ଡିପୁଅ ଅନନ୍ତା'' ଗଳ୍ପର ନାୟକ ଉଦ୍ଦଣ୍ଡ ଗଉଡ ଟୋକା ଅନନ୍ତା ସାରା ଗାଁକୁ ବନ୍ୟାର କରାଳ କବଳରୁ ରକ୍ଷା କରିବା ପାଇଁ ନିଜ ଜୀବନକୁ ଉତ୍ସର୍ଗ କରି ଦେଇଛି । ଫକୀର ମୋହନ କେଉଁଠାରେ ବି ରାଜା, ରାଣୀ, ଜମିଦାର, ସଂଭ୍ରାନ୍ତ ଅଥବା ଉଚ୍ଚବର୍ଣ୍ଣଙ୍କର ମୁଖପାତ୍ର ସାଜି ନାହାନ୍ତି । ଅଥଚ ଏଇ କଥା ଆମେ ରାୟବାହାଦୁର ରାଧାନାଥ ରାୟଙ୍କ କାବ୍ୟ-କବିତାରେ ଦେଖିବାକୁ ପାଉନା । ''ଦରବାର'' କାବ୍ୟ ବ୍ୟତୀତ ଅନ୍ୟତ୍ର ତାଙ୍କ ସାହିତ୍ୟ ସଂଭ୍ରାନ୍ତ ଶ୍ରେଣୀର ହିଁ ସପକ୍ଷରେ ରଚିତ ହେବାପରି ଲାଗୁଛି । ''ମହାଯାତ୍ରା''(ଅସଂପୂର୍ଣ୍ଣ ଖଣ୍ଡକାବ୍ୟ)ରେ ସେ ଜାତୀୟତାର କିଛିଟା ଆଭାଷ ଦେବାକୁ ଚେଷ୍ଟା କରିଥିଲେ ବି ଉକ୍ତ ଜାତୀୟତା ଆଭିଜାତ୍ୟ ଶ୍ରେଣୀ ପାଇଁ ଉଦ୍ଦିଷ୍ଟ ଥିଲା । ଫକୀର ମୋହନଙ୍କ ପରି ସେ ନିଃସ୍ପେସିତ ଶ୍ରେଣୀ ପାଇଁ କିଛି ବି ଲେଖି ନାହାନ୍ତି । କବି ହରପ୍ରସାଦ ଦାସ ତେଣୁ ଯଥାର୍ଥରେ ରାୟବାହାଦୁର ରାଧାନାଥ ରାୟଙ୍କୁ ମଧ୍ୟଯୁଗୀୟ ରୀତିକାଳୀନ କାବ୍ୟଧାରାର ଶେଷ କାବ୍ୟକାର ବୋଲି ତାଙ୍କର 'ଓଡ଼ିଆ ଜାତିର ଇତିବୃତ୍ତି' ଧାରାବାହିକ ପ୍ରବନ୍ଧମାନଙ୍କରେ ଠାଏ ମତପ୍ରକାଶ କରିଛନ୍ତି । ମଧ୍ୟଯୁଗୀୟ ରୀତିକାଳ ହେଉଛି ସାମନ୍ତବାଦୀ ଓ ପ୍ରତିକ୍ରିୟାଶୀଳ ସ୍ଥିତାବସ୍ଥା, ବର୍ଣ୍ଣ ବ୍ୟବସ୍ଥାବାଦୀ ସାମାଜିକ ବ୍ୟବସ୍ଥାର ପ୍ରତିଛବି । ଏହି ଛବିରୁ ରାୟବାହାଦୁର ରାଧାନାଥ ଊର୍ଦ୍ଧ୍ୱକୁ ଯାଇପାରିନାହାନ୍ତି । ତେଣୁ ରାଧାନାଥ ଆଧୁନିକ କାବ୍ୟଧାରାର ପ୍ରବର୍ତ୍ତକ

ନୁହନ୍ତି ବୋଲି ସାଂପ୍ରତିକ ପ୍ରଗତିବାଦୀ କାବ୍ୟ ଚେତନା ସମ୍ପୂର୍ଣ୍ଣ ଆଲୋଚକମାନେ ଏକମତ । ଅବଶ୍ୟ ଏହାକୁ ଉଚ୍ଚବର୍ଣ୍ଣର ପ୍ରତିକ୍ରିୟାଶୀଳ ଆଲୋଚକମାନେ ଖଣ୍ଡନ କରିଥାନ୍ତି ଓ ବ୍ରିଟିଶ ସରକାରଙ୍କ ସପକ୍ଷବାଦୀ ରାଧାନାଥଙ୍କୁ ଆଧୁନିକ କାବ୍ୟକଳାର ଆଦ୍ୟ ପ୍ରବର୍ତ୍ତକ ବୋଲି ଏବେ ବି ମନେ କରନ୍ତି ।

ଏଠାରେ ବିଚାର କରିବାର କଥା ହେଉଛି ଯେ, ଆଧୁନିକତାର ଅର୍ଥ କ'ଣ ?

ଆଧୁନିକତାର ଅର୍ଥ କହିଲେ ପ୍ରଗତିଶୀଳ ଆଲୋଚକମାନେ ଯାହା କହନ୍ତି ସ୍ଥିତାବସ୍ଥାର ସମର୍ଥକମାନେ ସେଥିରେ ଏକମତ ହୁଅନ୍ତି ନାହିଁ । ହଜାର ହଜାର ବର୍ଷ ପୁରାତନ ଉଚ୍ଚ, ନୀଚ, ସଂଭ୍ରାନ୍ତ, ଦରିଦ୍ର, ସ୍ପୃଶ୍ୟ, ଅସ୍ପୃଶ୍ୟ ସମାଜ ବ୍ୟବସ୍ଥାକୁ ସବୁଦିନ ପାଇଁ କାଏମ୍ ରଖିବାକୁ ସମର୍ଥନ କରୁଥିବା ବୁଦ୍ଧିଜୀବୀଙ୍କ ସହିତ ଯେଉଁମାନେ ଏକମତ ହୋଇପାରନ୍ତି ନାହିଁ, ସେମାନେ ସମାଜ ବ୍ୟବସ୍ଥାର ଆମୂଳଚୂଳ ପରିବର୍ତ୍ତନ ପାଇଁ ଖାଲି ବିଚାର ଉପସ୍ଥାପିତ କରନ୍ତି ନାହିଁ, ବରଂ ସେଥିପାଇଁ ସକ୍ରିୟ ଭାବେ କାର୍ଯ୍ୟ ମଧ୍ୟ କରିଥାନ୍ତି ।

ଆଧୁନିକତା ହେଉଛି, ଶୋଷଣ ବିହୀନ, ଜାତିବିହୀନ, ସାମନ୍ତବାଦୀ-ପୁଞ୍ଜିବାଦୀ ଅର୍ଥ ବ୍ୟବସ୍ଥା ଭିତରେ ନିଷ୍ପେସିତ ଅବସ୍ଥାରେ ଥିବା ଶୋଷିତ, ଦଳିତ, ଅବହେଳିତ ମଣିଷ ପାଇଁ ମୁଖପାତ୍ର ରୂପେ କାର୍ଯ୍ୟ କରୁଥିବା ସମୟ ଏବଂ ଏହି ସମୟରୁ ସୃଷ୍ଟି ସାହିତ୍ୟ, କଳା, ରାଜନୀତି ଓ ସାମାଜିକ ବ୍ୟବସ୍ଥା । ଆଧୁନିକ ବିଚାରର ପରିପ୍ରକାଶ ହେଉଛି ଗତାନୁଗତିକତାକୁ ପରିହାର କରି ପରିବର୍ତ୍ତନ ସପକ୍ଷରେ ଏକ କ୍ରାନ୍ତିକାରୀ ଭୂମିକା ନିର୍ବାହ କରିବା ।

ଓଡ଼ିଆ ସାହିତ୍ୟର ଘୋର ସାମନ୍ତବାଦୀ, ଜାତିଆଣବାଦୀ ପର୍ଯ୍ୟାୟ ଭିତରେ ଜଗନ୍ନାଥ ଦାସ, ବଳରାମ ଦାସ ଓ ଅଚ୍ୟୁତାନନ୍ଦ ଥିଲେ ଅନେକ ପରିମାଣରେ ସଂସ୍କାରଧର୍ମୀ ଏବଂ ଗତାନୁଗତିକଠାରୁ ଯଥେଷ୍ଟ ଉର୍ଦ୍ଧ୍ୱରେ । ସେମାନେ ବର୍ଣ୍ଣବ୍ୟବସ୍ଥା ବିରୁଦ୍ଧରେ କାର୍ଯ୍ୟ କରିଥିଲେ ନିଜର ସାରସ୍ୱତ ସୃଷ୍ଟି ମାଧ୍ୟମରେ । ଏପରିକି ମଧ୍ୟଯୁଗୀୟ ପୁରୋହିତବାଦ ଓ ସାମନ୍ତବାଦ ସହ ସେମାନଙ୍କ ସାହିତ୍ୟ ସାଲିସ୍ କରିନାହିଁ ।

ତା'ପରେ ମଧ୍ୟଯୁଗୀୟ ରୀତିକାଳରେ ଏହି ନୀରବ ପ୍ରତିରୋଧର ସ୍ୱର ପ୍ରତିବାଦରେ ପରିଣତ ହୋଇଥିଲା ଏବଂ କବି ଦୀନକୃଷ୍ଣ ସାମନ୍ତବାଦ ବିରୁଦ୍ଧରେ କ୍ରାନ୍ତିକାରୀ, ଐତିହାସିକ ପରିଭାଷା ସୃଷ୍ଟି କରିବାରେ ସକ୍ଷମ ହୋଇଥିଲେ । ଦୀନକୃଷ୍ଣ ଦାସଙ୍କର ସେହି କ୍ରାନ୍ତିକାରୀ ଉଚ୍ଚାରଣ: ''କବି ଯା'କରେ ମୂର୍ଖକୁ ସ୍ତୁତି/ଏଥିକୁ ପ୍ରତି ନାହିଁ ବିପତ୍ତି/ଏଥିକି ପ୍ରତିକୁ ଛାତିରେ କାତି ମାରିବା ଭଲ ଯେ...'' । ଆମ ଭାଷା ସାହିତ୍ୟରେ ସାମନ୍ତବାଦ/ ଉଚ୍ଚବର୍ଣ୍ଣବାଦ ବିରୁଦ୍ଧରେ ପ୍ରଥମ ବୈପ୍ଲବିକ ଆଲେଖ୍ୟ ।

କବି ଦୀନକୃଷ୍ଣଙ୍କ ଠାରୁ ରାଧାନାଥ ରାୟଙ୍କ କାଳ ଭିତରେ ପ୍ରାୟ ୨୫୦ରୁ ଅଧିକ ବର୍ଷର ସମୟ ବିତି ଯାଇଛି । ସାମନ୍ତବାଦକୁ କବଳିତ କରିଛି ସାମ୍ରାଜ୍ୟବାଦ । ସାମ୍ରାଜ୍ୟବାଦ ଆସିଛି ଆର୍ଥିକ ଶୋଷଣ ଓ ରାଜନୈତିକ ପରାଧୀନତା ସହିତ ସମସ୍ତ ଅବକ୍ଷୟ ତଥା ସ୍ଖଳନକୁ ନିଜ ଭିତରେ ଦୃଢ ଭାବେ ଜାବୁଡି ଧରି ଶୋଷଣ ଓ ଉତ୍ପୀଡନ ପାଇଁ ସ୍ଥାନୀୟ ରାଜା, ଜମିଦାର, ସାମନ୍ତ, ସାହୁକାର ତଥା ସଂଭ୍ରାନ୍ତମାନଙ୍କର ଏକ ପାପ-ଚକ୍ର ସୃଷ୍ଟି କରାଇ, ସଂଖ୍ୟାଧିକ ମେହନତୀ ପ୍ରଜାଙ୍କ ସର୍ବସ୍ୱ ଅପହରଣ କରି ନିଜର ନିହିତ ସ୍ୱାର୍ଥ ଓ ଆର୍ଥିକ ମୁନାଫାକୁ କାଏମ୍ ରଖିବା ପାଇଁ ଏହି ସାମ୍ରାଜ୍ୟବାଦୀ ଶକ୍ତି ସବୁବେଳେ ଉଦ୍ୟମ କରିଛି । ଏହି ପାପ-ଚକ୍ରର କୁପରିଣାମ ସଦୃଶ ଉଚ୍ଚଶ୍ରେଣୀର ଲୋକଙ୍କ ଭିତରେ ନୈତିକତାର ସ୍ଖଳନ, ମାନବବାଦୀ ସଂସ୍କୃତିର ଅବକ୍ଷୟ ଓ ସମାଜରେ ସମାନତାର ବିଲୋପ ଘଟିଛି । ଏହି ସାମାଜିକ ବ୍ୟବସ୍ଥା ଭିତରେ ସବୁଠାରୁ ଅଧିକ ଦୟନୀୟ ପରିସ୍ଥିତିର ସମ୍ମୁଖୀନ ହୋଇଛି ଆମ ସମାଜର ଦଳିତ (ଅସ୍ପୃଶ୍ୟ) ଏବଂ ବଣ-ପର୍ବତ କୋଳରେ ପ୍ରତିପାଳିତ ପ୍ରକୃତିର ସନ୍ତାନ ଆଦିବାସୀ ସଂପ୍ରଦାୟ ।

ଉନଂବିଂଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧରେ ଯେତେବେଳେ ରାୟବାହାଦୁର ରାଧାନାଥ ଇଂରେଜମାନଙ୍କ ସାମ୍ରାଜ୍ୟବାଦୀ ସରକାର ଅଧୀନରେ ଏକ ଉଚ୍ଚପଦବୀରେ ଆସୀନ ଥିଲେ, ସେତେବେଳେ ଉପକୂଳବର୍ତ୍ତୀ ଓଡ଼ିଶା ଠାରୁ ବହୁଦୂରରେ ପ୍ରାକୃତିକ ଓଡ଼ିଶାର ଆଭ୍ୟନ୍ତରୀଣ ଅଞ୍ଚଳରେ ଘୋର ବଣ-ଜଙ୍ଗଲ ପରିପୂର୍ଣ୍ଣ ଇଲାକାର ଏକ ସୈରାଚାରୀ ଓ ଅତ୍ୟାଚାରୀ ରାଜତନ୍ତ୍ର ଦ୍ୱାରା ଶାସିତ ଛୋଟ ଗୋଟିଏ ଅନଗ୍ରସର, ଅନ୍ଧକାରମୟ ଗଡଜାତ ରାଜ୍ୟ ରେଢାଖୋଲ ଅଞ୍ଚଳରେ ଗୋଟିଏ କନ୍ଧଯୁବକ ଗାଈ, ମଇଁଷି ଚରାଉ ଚରାଉ ବନବାସୀ ଓ ଦଳିତଙ୍କର ପ୍ରାଣକର୍ତ୍ତାରେ ରୂପାନ୍ତରିତ ହୋଇଯାଇଥିଲେ । ସେ କନ୍ଧ ଯୁବକ ମହାନ ବିପ୍ଳବୀ କବି ଭୀମ ଭୋଇ ହିଁ ଥିଲେ ।

ଭୀମ ଭୋଇ ୧୮୪୨ ସାଲରେ ରେଢାଖୋଲ ରାଜ୍ୟରେ ଆବିର୍ଭାବ ହୋଇଥିଲେ ଏବଂ ସୋନପୁର ଗଡଜାତ (ବର୍ତ୍ତମାନର ସୁବର୍ଣ୍ଣପୁର ଜିଲ୍ଲା) ଅନ୍ତର୍ଗତ ଖଲିଆପାଲୀ ଗ୍ରାମରେ ୧୮୯୫ ସାଲରେ ଶେଷ ନିଃଶ୍ୱାସ ତ୍ୟାଗ କରିଥିଲେ । କେବଳ ରେଢାଖୋଲର ବନବାସୀ ବା ଦଳିତମାନଙ୍କ ପାଇଁ ସେ ମୁକ୍ତିର ଖଞ୍ଜଣି ବଜାଇ ନଥିଲେ, ସେ ସମଗ୍ର ମାନବଜାତି ମଧ୍ୟରେ ଥିବା ସମସ୍ତ ଦଳିତ, ନିଷ୍ପେସିତ, ଅତ୍ୟାଚାରିତ, ଆର୍ତ୍ତ ପ୍ରାଣୀଙ୍କ ଅପ୍ରମିତ ଦୁଃଖ, କଷ୍ଟ ଲାଘବ କରିବା ପାଇଁ ନୂଆ ଚିନ୍ତନ, ନୂଆ ଦର୍ଶନର ବ୍ୟାଖ୍ୟାକାର ଭାବେ ଆତ୍ମପ୍ରକାଶ କରିଥିଲେ । ମହାମନୀଷୀ ମହିମା ଗୋସେଇଁଙ୍କ ଦ୍ୱାରା ଉଦ୍‌ବୁଦ୍ଧ ହୋଇ କିଶୋର ଭୀମ ଦଳିତ ବନବାସୀ ଓ ସକଳ ଆର୍ତ୍ତଜନଙ୍କର ତ୍ରାପରେ ରୂପାନ୍ତରିତ ହେଲେ । ସେ ତତ୍କାଳୀନ ସମାଜର ଉଚ୍ଚ,ନୀଚ, ଧନୀ, ଦରିଦ୍ର ଏବଂ ସର୍ବୋପରି ରାଜତନ୍ତ୍ରକୁ ପ୍ରତ୍ୟାଖ୍ୟାନ କରିବାକୁ ଜନସାଧାରଣଙ୍କୁ ଆହ୍ୱାନ ଦେଲେ । ପୁରୋହିତବାଦ, ମୂର୍ତ୍ତିପୂଜା, ପ୍ରଚଳିତ ଧର୍ମଧାରଣା ଇତ୍ୟାଦିକୁ ଅସ୍ୱୀକାର କଲେ । ମାନବଜାତିର ଐକ୍ୟକୁ ପ୍ରତିଷ୍ଠା କରିବା ପାଇଁ ମାନବିକ ସାମ୍ୟଭାବର ଉଦ୍‌ଘୋଷଣା କଲେ ଏବଂ ଏହି କ୍ରାନ୍ତିକାରୀ କାର୍ଯ୍ୟ ପାଇଁ ସେ କାବ୍ୟ-କବିତାକୁ ମାଧ୍ୟମ କରି ଆମ ଭାଷା-ସାହିତ୍ୟରେ ଆଧୁନିକତାର ଆଦ୍ୟ ପ୍ରବର୍ତ୍ତକ-ଅର୍ଥାତ୍ ସାଧାରଣ ମଣିଷର ଭାଷ୍ୟକାର ଭାବରେ ପୂଜନୀୟ ତଥା ଅବିସ୍ମରଣୀୟ ସାରସ୍ୱତ ସ୍ରଷ୍ଟା ହୋଇଗଲେ । ସେ ବ୍ରାହ୍ମଣବାଦ ଓ ରାଜତନ୍ତ୍ରକୁ ଅସ୍ୱୀକାର ଏହି ବୃତ୍ତିସହ ସମ୍ପୃକ୍ତ ବ୍ୟକ୍ତିମାନଙ୍କ ଘରେ ଭୋଜନ ନକରିବା ପାଇଁ ଲୋକମାନଙ୍କୁ କହି ଗଲେ ।

ଏହି ସମୟଠାରୁ ଶହ ଶହ ବର୍ଷ ପୂର୍ବରୁ ସେ ଜନ୍ମଗ୍ରହଣ କରିଥିଲେ । ସେଇଥିପାଇଁ ତ ସେ ଉଦାତ୍ତ କଣ୍ଠରେ ଘୋଷଣା କଲେ– ''ରାଜାର ପରଜା ନୋହୁଁ ସିନା ଆମ୍ଭେ/ନୋହୁଁ ସାହୁର ଖାତକ/ଯହିଁ ଗୁରୁନେବେ, ତହୁଁ ଯାଉ ଆମ୍ଭେ/କେ ଅବା କରୁ ଅଟକ'' (ସ୍ତୁତି ଚିନ୍ତାମଣି, ଚଉଷଠି ବୋଲି) ।

ଆମ ସମୟର ଜଣେ ସଂଭ୍ରାନ୍ତ ଶ୍ରେଣୀର ଖୋଲା ସମର୍ଥକ ଓ ଅନୁଦାରବାଦୀ ଆଲୋଚକ/ସ୍ରଷ୍ଟା କବି ଡକ୍ଟର ମାୟାଧର ମାନସିଂହ ଭୀମଭୋଇଙ୍କୁ ଆଦିବାସୀଙ୍କ କବି ବୋଲି ନିଜର ଓଡ଼ିଆ ଭାଷାର ଇତିହାସରେ ଲେଖିଲେ: ହେଲେ କିଛି ଯାଏ ଆସେନା, କାରଣ ଭୀମ ଭୋଇ ଯଦି ଆଦିବାସୀ କବି, ତେବେ ମାନସିଂହ ରକ୍ଷଣଶୀଳ, ଶୋଷକ, ସାମନ୍ତବାଦୀ ଶ୍ରେଣୀର କବି ନିଶ୍ଚୟ ? ହେଲେ ଏହି କନ୍ଧ ଆଦିବାସୀ ଭୀମ ଭୋଇ ସକଳ ମାନବଜାତି ମଧ୍ୟରେ ଥିବା ସବୁ ଦଳିତ ଓ ନିଷ୍ପେଷିତଙ୍କ ମୁକ୍ତି ବାର୍ତ୍ତା ଘୋଷଣା କରି ନିଜେ ନର୍କକୁ (ଅର୍ଥାତ୍ ଯନ୍ତ୍ରଣାର ଚରମ ସ୍ଥିତିକୁ) ଯିବା ପାଇଁ ପ୍ରସ୍ତୁତ ହୋଇଗଲେ । କାହିଁ କୌଣସି ରାୟବାହାଦୂରଙ୍କ କଲମରୁ ମାନବ ଜାତିର ପରିତ୍ରାଣ ପାଇଁ ଏପରି ଆଲେଖ୍ୟ କେଉଁଠାରେ ତ ଆମର ଦୃଷ୍ଟି ଗୋଚର ହେଲା ନାହିଁ ?

କ୍ରାନ୍ତି ଦ୍ରଷ୍ଟା, ମହାନ୍ ସ୍ରଷ୍ଟା ଭୀମ ଭୋଇ ସେଇଥିପାଇଁ ନିଜ ସମୟଠାରୁ ଯଥେଷ୍ଟ ପୂର୍ବରୁ ଜନ୍ମ ଗ୍ରହଣ କରିଥିଲେ । ତେଣୁ ତାଙ୍କୁ ରେଢାଖୋଲ ରାଜାଙ୍କ ଉଆସ ସାମ୍ନାରେ ବ୍ରାହ୍ମଣମାନଙ୍କ ପ୍ରରୋଚନାକ୍ରମେ ରାଜାଙ୍କ ଆଦେଶରେ ପ୍ରଚଣ୍ଡ ଗ୍ରୀଷ୍ମର ମଧ୍ୟାହ୍ନରେ

ହରିକାଠାରେ ବନ୍ଧା ଯାଇ ବେତ୍ରାଘାତ କରାଯାଇଥିଲା ମୂର୍ତ୍ତିପୂଜାକୁ ନିନ୍ଦା କରୁଥିବା ମାନବଜାତିର ସମାନତା ସପକ୍ଷରେ ପ୍ରଚାର କରୁଥିବା, ବର୍ଣ୍ଣବ୍ୟବସ୍ଥା ବିରୁଦ୍ଧରେ ଜନଜାଗରଣ କରାଉଥିବା ଅପରାଧରେ । ତଥାପି ଭୀମଭୋଇ ବଜ୍ରକଣ୍ଠରେ ଘୋଷଣା କରିଥିଲେ– ‘‘ଘଟରେ ବ୍ରହ୍ମକୁ ନଚିହ୍ନି/ବାହାରେ ଭ୍ରମୁଥାନ୍ତି ପ୍ରାଣୀ/ ଚିତ୍ରପଟକୁ ନେତ୍ରେ ଦେଖି/ ମନ ଆନନ୍ଦେ ଭୋଇ ସୁଖୀ/ ଏଘଟେ ଜଗନ୍ନାଥ ଅଛି/ ପ୍ରତିମା ମିଛରେ ପୂଜୁଛି ।’’

ନିଜେ ଦୀନ, ଦୁଃସ୍ଥ, ଦଳିତ, ସର୍ବହରା ହୋଇଥିଲେ ବି କ୍ରାନ୍ତିକାରୀ ପୁରୁଷ ସିଂହ ଭୀମ ଭୋଇ ନିଷ୍ପେସିତ ମଣିଷମାନଙ୍କ ପାଇଁ ଊନବିଂଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧରେ ପରାଧୀନ ଓଡ଼ିଶାର ପଶ୍ଚିମାଞ୍ଚଳରେ/ଚିନ୍ତା ଚେତନାର ସ୍ୱାଧୀନତା ପାଇଁ ପ୍ରଥମ ଆଲୋକ ବର୍ତ୍ତିକା ପ୍ରଜ୍ୱଳିତ କରିଥିଲେ ଏହି ମହାନ୍ ପଂକ୍ତିମାନଙ୍କ ମଧ୍ୟରେ –‘‘ଗୁରୁଙ୍କ ଅର୍ଜିଲା ମେଦିନୀରେ ଅଛୁଁ, ନାହିଁ କଲା ଅଧିକାର/ଆତ୍ମ ମନ ହେଲେ ଆମ୍ଭେ ସୁଖେ ଯିବୁ/ଦିଶିବ ଯେଉଁ ବିଚାର ।’’ ପୃଥିବୀ ପୃଷ୍ଠର କେହି ସତ୍ତ୍ୱାଧିକାରୀ ନାହିଁ ଏବଂ ସମସ୍ତେ ସ୍ୱବିଚାରଧାରା ଧାରଣ କରିବାକୁ ସ୍ୱାଧୀନ–ଅନ୍ଧକାରମୟ ଯୁଗର ଜ୍ଞାନ ଦିହୁଡିଧାରୀ କ୍ରାନ୍ତିଦ୍ରଷ୍ଟା କବି ଓ ଦାର୍ଶନିକ ଭୀମ ଭୋଇଙ୍କ ପୂର୍ବରୁ ଓଡ଼ିଆ ସାହିତ୍ୟରେ କେହି ଏପରି ଚିନ୍ତାଧାରା ବ୍ୟକ୍ତ କରିଛନ୍ତି କି ?

ତତ୍କାଳୀନ ସମାଜରେ ସବର୍ଣ୍ଣ ଅସବର୍ଣ୍ଣ ଭେଦଭାବ ପରି ପୁରୁଷ ଓ ନାରୀ ଜାତି ମଧ୍ୟରେ ବି ଥିଲା ବାଛବିଚାର ନାରୀର ସମାଜର କୌଣସି ବିଭବରେ ନଥିଲା ଅଧିକାର । ମନୁସ୍ମୃତି ଅନୁସାରେ ନାରୀ ବିବାହ ପୂର୍ବରୁ ପିତାର ଅଧିନା, ବିବାହ ପରେ ପତିର ଅଧିନା ଏବଂ ବିଧବା ହେବାପରେ ପୁତ୍ରର ଅଧିନା । ସମ୍ପତ୍ତି କଥା ଛାଡନ୍ତୁ, କୌଣସି ବିଷୟରେ ତା’ର ନଥିଲା ଅଧିକାର । ସେତେବେଳେ ନାରୀମୁକ୍ତି କଥା ଅକଳ୍ପନୀୟ ଥିଲା । ପାଶ୍ଚାତ୍ୟ ଦେଶମାନଙ୍କରେ ମଧ୍ୟ ନାରୀ ସମ୍ପୂର୍ଣ୍ଣ ସ୍ୱାଧୀନ ନଥିଲା । ନାରୀ ସେବେ ଦଳିତ ଥିଲା ଓ ଏବେବି ଅନେକାଂଶରେ ଦଳିତ ହୋଇ ରହିଅଛି । ସେହି ନାରୀ ଜାତିର ମୁକ୍ତିର କଥା ଘୋଷଣା କରି ମହାକବି ଭୀମଭୋଇ ଗାଇ ଉଠିଛନ୍ତି– ‘‘ ନିନ୍ଦାଗର୍ବମାନ ନରହିବ ଟାଣ/ କରୁଥିବ ସମଭାବ/ପୁରୁଷକୁ ନାରୀ ଜ୍ଞାନ ଶିଖାଇଲେ/ ସତ୍ୟଯୁଗ ଲେଉଟିବ ।’’

ଦଳିତର ପ୍ରାଣକର୍ତ୍ତା ଭୀମଭୋଇ ଘୋଷଣା କରିଛନ୍ତି– ‘‘ ମାୟାରେ ନପଡ ବେଦରେ ନଭୁଡ/ ବୁଝ ବୁଝ ଭଲକରି/ଆପଣା ହେତୁରେ ଚେତାଇ ପାରିଲେ/ କଳିରୁ ଯିବ ଉଦ୍ଧରି ।’’ (ସ୍ତୁତି ଚିନ୍ତାମଣି, ଶତତମ ବୋଲେ) ଦଳିତର ତ୍ରାଣକର୍ତ୍ତା, ମହାନ୍ ମାନବବାଦୀ କ୍ରାନ୍ତିଦ୍ରଷ୍ଟା, ବିପ୍ଳବୀ ମହାକବି ଭୀମଭୋଇ ମାନବବାଦର ଜୟଗାନ କରି ପ୍ରଚଳିତ ଧର୍ମଧାରଣାକୁ ପ୍ରତ୍ୟାଖ୍ୟାନ କରିଛନ୍ତି । ପୃଥିବୀର ସକଳମାନବ ଜାତିର ସମାନତାକୁ ଦୃଢ ଭାବେ ଉଦ୍‌ଘୋଷିତ କରି କହିଛନ୍ତି– ‘‘ ଧର୍ମ ପଛେ ନିନ୍ଦା ହେଉ/ଧରଣୀ ମଣ୍ଡଳ ରହୁ/ଶୂନ୍ୟ ଧରତୀ ଆକାଶ/ ଆକାଶ ଭାସି ନଯାଉ ।’’

ହେଲେ ଆସନ୍ତାକାଲିର ସମାଜ ଭୀମଭୋଇଙ୍କୁ ଯୁଗଯୁଗ ପାଇଁ ମାନବ ଜାତିର ପରମ ଉଦ୍ଧାରକ, ଦାର୍ଶନିକ କବି ଭାବେ ନିଶ୍ଚୟ ସ୍ୱୀକାର କରିବ, ଏଥିରେ ସନ୍ଦେହ ନାହିଁ ଏବଂ ଏହା ମଧ୍ୟ ସନ୍ଦେହରୁ ଊର୍ଦ୍ଧ୍ୱରେ ଯେ, ଭୀମ ଭୋଇ ହିଁ ହେଉଛନ୍ତି ଆଧୁନିକ ଓଡ଼ିଆ କାବ୍ୟଧାରାର ପ୍ରଥମ ପ୍ରବର୍ତ୍ତକ ।

ଅମିନ୍ ହାଉସ୍
ଆଜମ୍‌ଖାନ ବଜାର, କଟକ–୧





# ଓଡ଼ିଆ ଭାଷା : ଅତୀତ, ବର୍ତ୍ତମାନ ଓ ଭବିଷ୍ୟତ

ପ୍ରଫେସର ବୈଷ୍ଣବ ଚରଣ ସାମଲ

ଭାଷା ଭାବର ବାହକ । ହୃଦୟ ସହିତ ହୃଦୟର ସେତୁ ବନ୍ଧନ କରିଦିଏ ଭାଷା । ଭାଷାକୁ ଛାଡ଼ିଦେଲେ ଗୋଟିଏ ଜାତିର ଅସ୍ତିତ୍ୱ ରହେ ନାହିଁ । ଭାଷା ହିଁ ଜାତିର ପରିଚୟ । ସେହି ପରିଚୟକୁ ନେଇ ଫୁଟିଉଠେ ଜାତିର ସ୍ୱାଭିମାନ । ଯେତେ ଜାତି ସେତେ ଭାଷା । ସେହି ଭାଷାକୁ ନେଇ ଗୋଟିଏ ଜାତି ଭିତରେ ସୃଷ୍ଟି ହୁଏ ସଂହତି । ଏହି ଭାଷା, ଠିକ୍ ମାତୃ ଦୁଗ୍‌ଧ ପରି । ଶିଶୁର ଯେପରି ବଳକାରକ ହୁଏ ମାତୃ ଦୁଗ୍‌ଧ, ବାହାରର ଗୁଣ୍ଡ ଦୁଗ୍‌ଧନୁହେଁ, ସେହିପରି ମାତୃଭାଷା ହୁଏ ଗୋଟିଏ ଜାତିର ଶକ୍ତି ଓ ସାମର୍ଥ୍ୟର ହେତୁ, ଅନ୍ୟ କୌଣସି ବିଦେଶୀ ଭାଷା ବା ବାହାରର ଭାଷା ନୁହେଁ । ଯେଉଁ ଜାତି ତାର ମାତୃଭାଷାକୁ ଭଲପାଏ ସେହି ଜାତି ହୁଏ ଯଥାର୍ଥ ଜ୍ଞାନୀ, ମାନୀ ଓ ଗୁଣୀ । ବାହାରର ଭାଷାରେ ହୁଏତ ଜଣେ ନିଜକୁ ବଡ଼ ମନେ କରିପାରେ ମାତ୍ର ସିଏ ଜାତି ଅନ୍ତର୍ଗତ ମଣିଷମାନଙ୍କ ହୃଦୟର କଥାକୁ ବୁଝିପାରେ ନାହିଁ । ତା'ସହିତ ଜାତିର ହୋଇଯାଏ ଯୋଜନ ଯୋଜନ ଦୂରତ୍ୱ । ତେଣୁ ମାତୃଭାଷା କାଳେ କାଳେ ଆଦର ଲାଭ କରେ । ସେହି ଭାଷା ଗଢ଼ି ଉଠେ ତା'ର ଇତିହାସ, ସଂସ୍କୃତି, ଚାହାଣି, ଚଳଣି ଓ ଚମକ । ନିର୍ମିତ ହୋଇଯାଏ କେତେ କେତେ ଗ୍ରନ୍ଥ, କେତେ ପୁରାଣ କାବ୍ୟ କବିତା, କେତେ ଲୋକମୁଖର ସାହିତ୍ୟ, କେତେ ନାଟକ, ଗଳ୍ପ ଓ ଉପନ୍ୟାସ । ମାତୃଭାଷା ହିଁ ଗୋଟିଏ ଜାତିକୁ କରିଦଏ ମହିମାମୟ । ସେହି ଭାଷାକୁ ନେଇ ଗୋଟିଏ ଜାତିର ଅତୀତ, ବର୍ତ୍ତମାନ ଓ ଭବିଷ୍ୟତକୁ ବିଚାରି ହୁଏ ଓ ବିପର୍ଯ୍ୟୟ ଭିତରୁ ଜାତିର ମୁକ୍ତି ପାଇଁ ପ୍ରେରଣା ଆହରଣ କରିହୁଏ । ଅସଲ କଥା ହେଲା ମାତୃଭାଷା ପ୍ରୀତି । ଯେତେ ଯିଏ ଅନ୍ୟ ଭାଷା ଶିଖୁ, କ୍ଷତି ନାହିଁ । ବରଂ ନାନା ଭାଷାରେ ଦକ୍ଷତା ଅର୍ଜନ ଦ୍ୱାରା ନାନା ଜାତିର ଭାବ, ଭାବନା, ଦୃଷ୍ଟି ଓ ଦର୍ଶନ ତୁଳାନତ୍ମକ ଭାବରେ ବିଚାର କରିବା ପାଇଁ ସାମର୍ଥ୍ୟ ପ୍ରକାଶ ପାଏ । କିନ୍ତୁ ଯେଉଁଠି ବିଦେଶୀ ଭାଷାକୁ ଆପଣେଇ ନେଇ ମାତୃଭାଷାକୁ ଏଡ଼େଇ ଦିଆଯାଏ, ମାତୃଭାଷା ପ୍ରତି ନାଶିକା କୁଞ୍ଚନ କରାଯାଏ, ଅନ୍ୟ ବର୍ଗରେ ମାତୃଭାଷାକୁ ଅନ୍ଧକାର ମଧ୍ୟକୁ ଠେଲି ଦିଆଯାଏ, ସେଇଠି ଜାତିର ହୋଇଯାଏ ଅପମୃତ୍ୟୁ । ଜାତିର ଆଉ ନିଜସ୍ୱ ପରିଚୟ ବା ଆଇଡେ଼ଣ୍ଟି ରହେ ନାହିଁ । ପରିଚୟ ଚାଲିଗଲେ ତା'ର ସ୍ୱାଭିମାନ ମଧ୍ୟ ଚାଲିଯାଏ । ଓଡ଼ିଆ ଜାତି କିନ୍ତୁ ବଞ୍ଚିଛି, ବଞ୍ଚିବ ମଧ୍ୟ ଭବିଷ୍ୟତରେ । କାରଣ ତା'ର ଗୋଟାଏ ଭାଷା ଅଛି– ସେଇ ଭାଷା ଜୀଅନ୍ତା ଭାଷା । ସେଇ ଭାଷା ତା'ର ସମ୍ପତ୍ତି । ସେଇ ସମ୍ପତ୍ତିକୁ ନେଇ ସେ ଧନୀ, ସିଏ ମର୍ଯ୍ୟାଦାବନ୍ତ, ସ୍ୱାଭିମାନରେ ସିଏ ଉଦୀପ୍ତ । ଆଜି ହୁଏତ ଏଇ ଭାଷା କେତେ କେତେ ଆହ୍ୱାନର ସମ୍ମୁଖୀନ ହେଉଛି ତଥାପି ସିଏ ତା'ର ଶକ୍ତିରେ ସେହି ଆହ୍ୱାନର ଯଥାର୍ଥ ଉତ୍ତର ଦେଉଛି । ସିଏ ଜାଗ୍ରତ ହେଉଛି, ପ୍ରତିଷ୍ଠା ପାଉଛି, ନୂତନ ନୂତନ ଅନ୍ୱେଷା ପଥରେ ଆଗେଇ ଚାଲୁଛି । ଏଇ ହେଉଛି ଓଡ଼ିଆ ଭାଷାର ବୈଶିଷ୍ଟ୍ୟ ।

## ଓଡ଼ିଆ ଭାଷାର ଅତୀତ : ଉନ୍ମେଷ ଓ କ୍ରମ ଉତ୍ତରଣ

ଯାହାର ଅତୀତ ଥାଏ, ତାହାର ବର୍ତ୍ତମାନ ଥାଏ, ଥାଏ ମଧ ଭବିଷ୍ୟତ । ଅତୀତ ଯାହାର ମହିମାମୟ, ଐତିହ୍ୟ ମଣ୍ଡିତ, ଇତିହାସ ନିର୍ଜିତ ତାହାର କେବେ ବିଲୟ ହୁଏ ନାହିଁ । ଯେତେ ବିପର୍ଯ୍ୟୟ ଆସିଲେ ତାହା ସକଳ ବାଧାବିଘ୍ନକୁ ଅତିକ୍ରମ କରି ଚକ୍‌ଚକ୍ ହୋଇଉଠେ । ଓଡ଼ିଆ ଜାତିର ଥିଲା ଅତୀତ ଇତିହାସ, ଐତିହ୍ୟ ଓ ପରମ୍ପରା । ଅନେକ ବିପର୍ଯ୍ୟୟ ଆସିଛି । ଖ୍ରୀ.ପୂ ୨୬୧ରେ ଚଣ୍ଡାଶୋକ କଳିଙ୍ଗ ଯୁଦ୍ଧକରି ରକ୍ତ ନଦୀ ବୁହାଇ ଦେଇଛି, ଲକ୍ଷେ ଲୋକଙ୍କୁ ବନ୍ଦୀ କରିଛି । ଏହା ତାଙ୍କର ଧଉଳି ଅନୁଶାସନରୁ ଜଣାଯାଏ । ଏତେ ବିପର୍ଯ୍ୟୟ ସତ୍ତ୍ୱେ ମାତ୍ର ପଞ୍ଚସ୍ତରୀ ବର୍ଷ ପରେ ଏ ଜାତି ପୁଣି ସଂଗଠିତ ହେଲା । କଳିଙ୍ଗ ସମ୍ରାଟ୍ ଖାରବେଳଙ୍କ ନେତୃତ୍ୱରେ ଅପମାନର ପ୍ରତିଶୋଧ ନେଲା । କଳିଙ୍ଗ ହେଲା ସ୍ୱାଧୀନ । କଳିଙ୍ଗର ହେଲା ନବନିର୍ମାଣ । ଗଢ଼ି ଉଠିଲା ଏହାର ଭାଷା, ସଂସ୍କୃତି, ଧର୍ମଧାରଣା, ସାହିତ୍ୟ ଓ ସର୍ବୋପରି ଉଦାର ମାନବିକତାବୋଧ । ପୁଣି କଳିଙ୍ଗରେ ଶକ ହୁନ୍ ଶାସନ କଲେ । କଳିଙ୍ଗରୁ ସୃଷ୍ଟି ହେଲା କଂଗୋଦ, ଉତ୍କଳ, କୋଶଳ, ଓଡ୍ର ଓ ପୁଣି ଏସବୁ ମିଶିହେଲା ସୋମବଂଶ ସମୟରୁ ସକଳ ଉତ୍କଳ ଓ ପଞ୍ଚଦଶ ଶତାବ୍ଦୀ ବେଳକୁ ଗଜପତି କପିଳେନ୍ଦ୍ର ଦେବଙ୍କ ସମୟରେ ହେଲା କେବଳ ଓଡ଼ରାଷ୍ଟ୍ରମଣ୍ଡଳ– ଓଡ଼ିଶା । ଏହିପରି କେତେ କେତେ ବିପର୍ଯ୍ୟୟ ଭିତରେ ଓଡ଼ିଶା ଗତି କରିଆସିଲା ଓ ପଞ୍ଚଦଶ ଶତାବ୍ଦୀ ବେଳକୁ ହେଲା ଓଡ଼ିଆ ଭାଷାର ସଦର୍ପ ଅଭିଯାନ । ସଂସ୍କୃତ ବନ୍ଧନରୁ ମୁକ୍ତ ହୋଇ ଏହି ଭାଷା ମାଟି ଆଉ ମଣିଷର ବାସ୍ନାରେ ହେଲା ବାସ୍ନାୟିତ । ଓଡ଼ିଆ ସାହିତ୍ୟ ସକଳ ବିରୋଧ ଓ ପ୍ରତିକୂଳତାକୁ ଅତିକ୍ରମ କରି ବିସ୍ତାରିତ ହେଲା ମାତ୍ର ଓଡ଼ିଶାର ସ୍ୱାଧୀନତା ବିଲୋପ (ଖ୍ରୀ.ଅ.୧୫୬୮) ପରେ ପରେ ଓଡ଼ିଆ ଭାଷା ନାନା ସମସ୍ୟାର ସମ୍ମୁଖୀନ ହେଲା । ବିଶେଷତଃ ୧୮୦୩ ମସିହା ପରେ ଓଡ଼ିଆ ଇଂରାଜୀ ଶାସନାଧୀନ ହେବା ପରେ ପରେ ଓଡ଼ିଆ ଭାଷା ପ୍ରତି ବିପଦ ଘନେଇ ଆସିଲା । ଇଂରାଜୀ ଶିକ୍ଷା ଓ ସଭ୍ୟତା ଯୋଗୁଁ ଯେଉଁ ନୂତନ 'ବାବୁ' ଶ୍ରେଣୀର ଉଦ୍ଭବ ହେଲା । ସେମାନେ ନିଜ ନିଜକୁ ସାହେବ ମନେକଲେ ଓ ସାହେବଙ୍କୁ ନକଲ କରି ସେହି ଭାଷା କହିଲେ । ଇଂରେଜ ହାକିମଙ୍କ ପଦଲେହନ କଲେ, ମେରୁଦଣ୍ଡହୀନ ହୋଇଗଲେ । ଏମାନଙ୍କ ଆଗରେ ଦେଶ ବଡ଼ ନୁହେଁ, ଭାଷା ବଡ଼ ନୁହେଁ, ବଡ଼ ହୋଇଗଲା ଆପଣା ଆପଣାର ସିଂହାସନ ଓ ଉପଭୋଗ । ତେଣୁ ଓଡ଼ିଆ ଭାଷାର ହେଲା ବିପର୍ଯ୍ୟୟ । ଓଡ଼ିଆ ଭାଷାକୁ ଉଠାଇ ଅନ୍ୟ ଭାଷା ଚଳାଇବାର ମସୁଧା ହେଲା । ମାତ୍ର ସେତେବେଳକୁ କିଛି ଜାତିପ୍ରେମୀ ଓ ଭାଷାପ୍ରେମୀ ବ୍ୟକ୍ତିଙ୍କର ଆବିର୍ଭାବ ଘଟିଲା । ସେମାନଙ୍କର ସଂଘର୍ଷ ବଳରେ ଭାଷା ବଞ୍ଚିଲା ଓ ସେହି ଭାଷାରେ ରଚିତ ହେଲା ଆଧୁନିକ ସାହିତ୍ୟ । ବହୁ ସଂଗ୍ରାମ ଓ ସଂଘର୍ଷ ପରେ ଓଡ଼ିଶା ହେଲା ସ୍ୱତନ୍ତ୍ର ପ୍ରଦେଶ (୧୯୩୬) ଓ ୧୯୪୮ରେ ୨୬ଟି ଗଡ଼ଜାତ ଏବଂ ୧୯୪୯ରେ ମୟୂରଭଞ୍ଜ ମିଶି ବୃହତ୍ତର ଉତ୍କଳ ପ୍ରଦେଶ ବା ଓଡ଼ିଶା ପ୍ରଦେଶ ଗଠିତ ହେଲା । ଦେଖାଗଲା ସ୍ୱାଧୀନତା ପରେ ଓଡ଼ିଆ ଭାଷା ଅବହେଳିତ ହୋଇ ରହିଗଲା କିଛି ତୁଙ୍ଗନେତା ଓ ପ୍ରଶାସନିକ ଅଧିକାରୀ ତଥା ଶିକ୍ଷାବିତ୍‌ଙ୍କ ଆତ୍ମଚାରିତାକୁ ନେଇ । ତଥାପି ଓଡ଼ିଆ ଭାଷାକୁ ସରକାରୀ ଭାଷା କରିବା ପାଇଁ ସ୍ୱର୍ଗତ ନବକୃଷ୍ଣ ଚୌଧୁରୀ ଯେଉଁ ଆଦେଶନାମା ଜାରି କରିଥିଲେ ତାହା କାର୍ଯ୍ୟକାରୀ ହେଲା ନାହିଁ । ହେଲା ନାହିଁ ମଧ ଶ୍ରୀଯୁକ୍ତ ଜାନକୀ ବଲ୍ଲଭ ପଟ୍ଟନାୟକଙ୍କ ମୁଖ୍ୟମନ୍ତ୍ରିତ୍ୱ କାଳର ଆଦେଶନାମା । ଏବେ ଓଡ଼ିଆ ଭାଷାକୁ ଶାସ୍ତ୍ରୀୟ ମାନ୍ୟତା ଦେବା ପାଇଁ ଶ୍ରୀଯୁକ୍ତ ନବୀନ ପଟ୍ଟନାୟକଙ୍କ ଆଦେଶକ୍ରମେ ଯେଉଁ ବିଶେଷଜ୍ଞ କମିଟି ବସିଲା, ସେହି କମିଟି ଏକ ଦୀର୍ଘ ଐତିହାସିକ ଦଲିଲ ପ୍ରସ୍ତୁତ କଲେ ଓ ଭାରତ ସରକାର ତାହାକୁ ଗ୍ରହଣ କଲେ ଏବଂ ଶେଷରେ ଓଡ଼ିଆ ଭାଷା ଶାସ୍ତ୍ରୀୟ ମାନ୍ୟତା ଲାଭ କଲା । ଶାସ୍ତ୍ରୀୟ ମାନ୍ୟତା

ପାଇବାରେ ଓଡ଼ିଆ ଭାଷା ହେଲା ଷଷ୍ଠ ଭାଷା । ଏଥିରେ ଆମେ ନିଶ୍ଚୟ ଆନନ୍ଦିତ ଓ ଗୌରବାନ୍ୱିତ । ତେବେ ଏହି ଶାସ୍ତ୍ରୀୟତା କ'ଣ ? କାହିଁକି ଏ ଭାଷା ଶାସ୍ତ୍ରୀୟ ମାନ୍ୟତା ପାଇଲା ? ଏହାର ଭବିଷ୍ୟତ କ'ଣ ?

### ଓଡ଼ିଆ ଭାଷାର ଅତୀତ : ଏକ ସିଂହାବଲୋକନ

ଓଡ଼ିଆ ଜାତିର ଯେମିତି ଅଛି ସୁଦୂର ଅତୀତ, ସେହିପରି ତା'ର ଭାଷାର ଅଛି ସୁଦୂର ଅତୀତ । ହୁଏତ ଦକ୍ଷିଣ ଭାରତର ଦ୍ରାବିଡ଼ ଗୋଷ୍ଠୀର କିଛିଟା ଅତୀତ ଥିଲା ମାତ୍ର ଇଣ୍ଡୋ-ୟୁରୋପୀୟ ଭାଷାଗୋଷ୍ଠୀରୁ ସୃଷ୍ଟ ପ୍ରାଚୀନ ଭାରତୀୟ ଭାଷାର କ'ଣ ଅତୀତ ଥିଲା ? ଏହି ଭାଷାରୁ ବୈଦିକ ସଂସ୍କୃତ ଭାଷାର ଉଦ୍ଭବ ହୋଇ ସେଥିରୁ ମାର୍ଜିତ ସଂସ୍କୃତ ଭାଷାର ହେଲା ସୃଷ୍ଟି । ସେଇ ଭାଷାରେ ରଚିତ ହେଲା କାବ୍ୟ, ନାଟକ, ଦର୍ଶନ, ଯୋଗ ଓ ନାନା ତାତ୍ତ୍ୱିକ ରଚନା । ତାହା କେବେ ଲୋକଙ୍କ ଭାଷା ନଥିଲା । ଲୋକେ ଗୋଟିଏ ଭାଷା କହୁଥିଲେ ନିଶ୍ଚୟ, ତେବେ ସେ ଭାଷା କ'ଣ ? ତାହା କ'ଣ ପାଳି ବା ପ୍ରାକୃତ ନା ଅପଭ୍ରଂଶ ? ନା ଏସବୁ କିଛି ନୁହେଁ, ଆଉ ଗୋଟିଏ ଭାଷା, ଯାହା ଲୋକଙ୍କ ଭିତରେ ଥିଲା ଓ ଲୋକେ ସେହି ଭାଷାରେ କହୁଥିଲେ ? ଆମ ମତରେ ସେଇ କ'ଣ ଗୋଟିଏ ଭାଷା ଥିଲା, ଯାହା ସାହିତ୍ୟ ଭିତରକୁ ଯାଇପାରି ନଥିଲା, ଅଥଚ ଲୋକଙ୍କ ଭିତରେ ସମ୍ପର୍କର ସେତୁବନ୍ଧନ କରିଥିଲା । ଏହା ସତ୍ୟ ଯେ, ତାହା ଥିଲା ଭରତ ମୁନିଙ୍କ ନାଟ୍ୟଶାସ୍ତ୍ରରେ ଉଲ୍ଲିଖିତ 'ଉଡ୍ର ବି ଭାଷା' । ଖ୍ରୀଷ୍ଟାବ୍ଦ ଦ୍ୱିତୀୟ ଶତାବ୍ଦୀ ବେଳକୁ, ଅର୍ଥାତ୍ ଭରତ ମୁନିଙ୍କ ସମୟକୁ ଏହି ଭାଷାଟି ହୁଏତ ଓଡ଼ିଶାର ଜନପଦରେ ପ୍ରଚଳିତ ଥିଲା । ଖ୍ରୀଷ୍ଟପୂର୍ବ ୫୦୦ ବର୍ଷ ବେଳକୁ ବୁଦ୍ଧଦେବ ଯେଉଁ ୬୪ ପ୍ରକାର ଲିପିର କଥା ଉଲ୍ଲେଖ କରିଛନ୍ତି, ସେଥିରେ ଉଡ୍ରଲିପି କଥା ସୂଚିତ । ଅତଏବ ଏଥିରୁ ସ୍ପଷ୍ଟ ହୋଇଯାଉଛି ଯେ ଗଙ୍ଗାଠାରୁ ଗୋଦାବରୀ ପର୍ଯ୍ୟନ୍ତ ପରିବ୍ୟାପ୍ତ ଅଞ୍ଚଳ, ଯାହା କଳିଙ୍ଗ ନାମରେ ପରିଚିତ ଥିଲା, ତାହାର ଜାନପଦିକ ଭାଷା ଉଡ୍ର ଭାଷା । କେହି କେହି ମଧ୍ୟ ଏହାକୁ କାଳିଙ୍ଗୀ ଭାଷା କହିଥାଆନ୍ତି । ସେ ଯାହା ହେଉନା କାହିଁକି ଏ ଭାଷା ଯେ ପ୍ରାଚୀନତମ ଓ ଏହା ଖ୍ରୀ.ପୂ ୫୦୦/୬୦୦ ବର୍ଷ ତଳୁ କ୍ରମ ପ୍ରବାହିତ ହୋଇ ଆସିଥିଲା, ଏଥିରେ ସନ୍ଦେହ ନାହିଁ ।

ଖାରବେଳଙ୍କ ହାତୀଗୁମ୍ଫା ଶିଳାଲେଖର ଭାଷାକୁ ଅର୍ଦ୍ଧମାଗଧୀ ପ୍ରାକୃତ କୁହାଯାଏ । ଏହାର ଲିପି ଉଡ୍ର ଲିପି ନୁହେଁ, ବ୍ରାହ୍ମୀଲିପି ମଧ୍ୟ ନୁହେଁ । ଏହାର ଲିପି ବ୍ରାହ୍ମୀପରି ଅନ୍ୟ ଏକ ଲିପି । ଏଥିରେ ଯେଉଁସବୁ ଶବ୍ଦ ଅଛି, ବିଭକ୍ତି, ସର୍ବନାମ, କ୍ରିୟା ଇତ୍ୟାଦି ଅଛି, ତାହାର ପରିଚୟ ଆମେ ଆଧୁନିକ ଯୁଗରେ ମଧ୍ୟ ପାଉ । ଅନେକ ଶବ୍ଦ ଏବେ ମଧ୍ୟ ଯଥା ରୂପ ପ୍ରଚଳିତ । କେବଳ ଖାରବେଳଙ୍କ ସମୟ ନୁହେଁ । ପରବର୍ତ୍ତୀ କାଳରେ ଶୈଳୋଦ୍ଭବ ବଂଶ, ଭୌମକର ବଂଶ, ସୋମବଂଶ ସମୟରେ ମଧ୍ୟ ଓଡ଼ିଆ ଭାଷାର ପ୍ରୟୋଗ ଦେଖିବାକୁ ମିଳେ । ୧୦୫୧ ଖ୍ରୀଷ୍ଟାବ୍ଦରେ ଖୋଦିତ ଉର୍‌ଜାମ୍ ଶିଳାଲେଖରୁ ହିଁ ପ୍ରଥମ ଓଡ଼ିଆ ଲିପିର ପରିଚୟ ମିଳିଲା । ଏହା ପରଠାରୁ ଓଡ଼ିଆ ବର୍ତ୍ତୁଳ ଲିପିର ବିକାଶ ଘଟିଛି ଓ ଖୋଦିତ ହୋଇଛି ଗଙ୍ଗବଂଶ, ସୂର୍ଯ୍ୟବଂଶ ରାଜତ୍ୱ କାଳରେ ନାନା ଶିଳାଲେଖ ଓ ତାମ୍ରଲେଖ । ପଞ୍ଚଦଶ ଶତାବ୍ଦୀରେ ତାଳପତ୍ରରେ ସାରଳା ଦାସ ଏହି ଲିପିରେ ଲେଖିଛନ୍ତି ମହାଭାରତ, ଚଣ୍ଡୀପୁରାଣ ଆଦି ନାନାଗ୍ରନ୍ଥ ଓ ସେହିଠାରୁ ଓଡ଼ିଆ ଭାଷାର ହୋଇଛି ସ୍ୱର୍ଦ୍ଧିତ ଜୟଯାତ୍ରା । ତେବେ ଏହା ମନେ ରଖିବାକୁ ହେବ ଯେ ଗୋଟିଏ ଭାଷା ପ୍ରାୟ ତିନିଶହ/ଚାରିଶହ ବର୍ଷ ଧରି ଲୋକମୁଖରେ କଥିତ ହେଲେ ହେଁ ତା'ର ଲିପିର ଉଦ୍‌ଭାବନ ହୁଏ ଓ ଲିପି ଆସିଗଲା ପରେ ଲିଖିତ ଗ୍ରନ୍ଥ ଓ ସାହିତ୍ୟର ହୁଏ ଉନ୍ମେଷ ଓ ବିକାଶ ।

ଓଡ଼ିଆ ଭାଷାର ପ୍ରାଚୀନତା ଅନସ୍ୱୀକାର୍ଯ୍ୟ । ଖ୍ରୀଷ୍ଟପୂର୍ବ କାଳରୁ ଓଡ଼ିଶାର ସାଧବମାନେ ସମୁଦ୍ରପଥରେ ବୋଇତରେ ନାନା ଦେଶକୁ ଓ ଦ୍ୱୀପକୁ ବାଣିଜ୍ୟ କରିବାକୁ

ଯାଉଥିଲେ । ଜାଭା, ସୁମାତ୍ରା, ବୋର୍ଣ୍ଣିଓ, ସିଂହଳ ଆଦି ନାନା ସ୍ଥାନ ସହିତ ବ୍ରହ୍ମଦେଶ, ଚୀନ୍, ଜାପାନ ଆଦି ସ୍ଥାନକୁ ଯାଉଥିଲେ । ପଶ୍ଚିମ ପଟରେ କିଟ୍ ଦ୍ୱୀପ ସହିତ ମରିସସ୍, ଏପରିକି ଆମେରିକା ପର୍ଯ୍ୟନ୍ତ ଯାଉଥିଲେ । ସେମାନେ କେବଳ ବାଣିଜ୍ୟ କରୁନଥିଲେ । ନିଜର ସଂସ୍କୃତି, ଧର୍ମଧାରଣା, ଆଚାର ବିଚାର ଓ ଭାଷାକୁ ମଧ୍ୟ ସେସବୁ ସ୍ଥାନରେ ପ୍ରଚାର କରିଦେଉଥିଲେ । ସିଂହଳରୁ ଏହାର ଅନେକ ପ୍ରମାଣ ମିଳିଥାଏ । ସେହିପରି ଜାଭା ବା ଇଣ୍ଡୋନେସିଆରେ ଥିବା 'କ୍ଳିଙ୍ଗ' ଜାତି , ବ୍ରହ୍ମଦେଶରେ ଥିବା 'କଳିଙ୍ଗରାଟ' ଓ 'ଉତ୍କଳରାଟ' ଏହାର ପ୍ରମାଣ ଦେଇଥାଏ । ଏଥିରୁ ମଧ୍ୟ ଜଣାଯାଏ ଯେ ସେ କାଳର ଓଡ଼ିଆ ଭାଷା, ଯାହାକୁ ଓଡ୍ର ଭାଷା କୁହାଯାଉଥିଲା । ତାହା ମଧ୍ୟ ବାହାର ଦ୍ୱୀପପୁଞ୍ଜରେ ପ୍ରଭାବ ପକାଇଥିଲା । ବୋଇତ ଯାତ୍ରା ଓ ଅନ୍ୟାନ୍ୟ ଅନେକ ଘଟଣାକୁ ନେଇ ନାନା ଓଷା, ବ୍ରତ ପ୍ରଚଳିତ ହୋଇଥିଲା ଓ ପ୍ରତ୍ୟେକ ଓଷା ଓ ବ୍ରତକୁ ନେଇ କାହାଣୀ ସୃଷ୍ଟି ହୋଇଥିଲା । ସେହି କାହାଣୀକୁ ଲୋକେ ନିଜ ଭାଷାରେ କହୁଥିବେ । ସେହିପରି ଲୋକଙ୍କ ଭିତରେ ନାନା କାହାଣୀ, କବିତା, ଢ଼ଗଢ଼ମାଳି, ପ୍ରବାଦ, ପ୍ରବଚନ ସୃଷ୍ଟି ହୋଇଥିବ । ଏସବୁ ସେହି ଲୋକଙ୍କ ଭାଷାରେ କୁହାଯାଇଥିବ ଓ ଯାହାର ବିବର୍ତ୍ତିତ ରୂପ ଆମେ ପରବର୍ତ୍ତୀ କାଳରେ ଦେଖିବାକୁ ପାଉ । ମାଟିର ମହାକବି ସାରଳା ଦାସ ପ୍ରଥମ କବି, ଯିଏ ଲୋକମୁଖର କାହାଣୀକୁ ଚୟନ କରି ନେଇ ତାଙ୍କ ଗ୍ରନ୍ଥମାନଙ୍କରେ ରୂପ ଦେଇଦେଲେ, ଯାହାକୁ ଆମେ କହୁ ଲୋକ ଉପାଦାନ । ସାରଳା ଦାସଙ୍କ ପରେ ପରେ ଷୋଡ଼ଶ ଶତାବ୍ଦୀରେ ପଞ୍ଚସଖାଏଁ ଓଡ଼ିଆ ଭାଷାକୁ ଆହୁରି ଟିକିଏ ମାର୍ଜିତ କରିଦେଲେ । ଜଗନ୍ନାଥ ଦାସଙ୍କ ଭାଗବତର ଭାଷାକୁ ତେଣୁ ଆମେ ମାନକ ଓଡ଼ିଶା ଭାଷା ବୋଲି ସ୍ୱୀକାର କରିନେଲୁ । ଗାଁ ଗାଁରେ ଭାଗବତ ଟୁଙ୍ଗି ପ୍ରତିଷ୍ଠା କରି ସେଠାରେ ଭାଗବତ ବୋଲାଯିବା ଓ ଶୁଣିବାର ଯେଉଁ ପରମ୍ପରାଟିଏ ସୃଷ୍ଟି ହୋଇଗଲା, ତାହା ଓଡ଼ିଆ ଭାଷାର ମର୍ଯ୍ୟାଦା ବୃଦ୍ଧି ଦିଗରେ ପ୍ରଧାନ ଭୂମିକା ଗ୍ରହଣ କଲା ।

ଭାଷା ପରିବର୍ତ୍ତନଶୀଳ । ଏହା ସ୍ଥିର ନୁହେଁ । ପରିବର୍ତ୍ତନ ଅର୍ଥ ନିଜର ମୌଳିକ ସତ୍ତାକୁ ହରାଇ ଦେବା ନୁହେଁ । ପରିବର୍ତ୍ତନ ସମୟରେ ତାହା ଅନ୍ୟାନ୍ୟ ଅନେକ ଭାଷାକୁ ଗ୍ରହଣ କରିନିଏ ଓ କେତେ ମଧ୍ୟ ଅନ୍ୟକୁ ଦାନ କରିଦିଏ । ଓଡ଼ିଆ ଭାଷା ଯେହେତୁ ଏକ ଜୀଅନ୍ତା ଭାଷା ତେଣୁ ତାହା ପରିବର୍ତ୍ତନକୁ ସ୍ୱାଗତ କରିଛି । ଅନ୍ୟ ଭାଷାରୁ କେତେ କେତେ ଶବ୍ଦ ଆହରଣ କରିଆଣିଛି ଓ ତାହାକୁ ନିଜ ଭିତରେ ମିଶାଇ ଦେଇଛି । ସଂସ୍କୃତ ଭାଷା ସହିତ ଏହାର ଅଛି ନିବିଡ଼ ସମ୍ପର୍କ । ତେବେ ଏହା ସଂସ୍କୃତ ପରି ନୁହେଁ । ନିଜର ମୌଳିକ ଦୀପ୍ତିରେ ଦୀପ୍ତିମାନ । ଓଡ଼ିଆ ଭାଷାରେ ପଞ୍ଚଦଶ ଶତାବ୍ଦୀରେ ସାରଳା ଦାସ ଯେଉଁ ମହାଭାରତ ରଚନା କଲେ, ତାହା ଯଥାର୍ଥରେ ଏକ ବିସ୍ମୟ । ଭାରତୀୟ ଭାଷାମାନଙ୍କରେ ରଚିତ ମହାଭାରତ ପୂର୍ଣ୍ଣାଙ୍ଗ ନୁହେଁ । ମାତ୍ର ଓଡ଼ିଆ ଭାଷାରେ ଏହା ୧୮ଟି ପର୍ବ ବିଶିଷ୍ଟ ପୂର୍ଣ୍ଣାଙ୍ଗ ମହାଭାରତ । ଓଡ଼ିଆ ଭାଷାକୁ ଏ ଦୃଷ୍ଟିରୁ ପ୍ରାଚୀନତମ ଭାଷା କହିବାରେ ଯେ ଯଥାର୍ଥତା ଅଛି, ଏଥିରେ ସନ୍ଦେହ ନାହିଁ ।

ଓଡ଼ିଆ ଭାଷା ଏକ ଶାସ୍ତ୍ରୀୟ ଭାଷା । ଶାସ୍ତ୍ରୀୟ ଅର୍ଥ କୌଣସି ଶାସ୍ତ୍ର ଆଧାରିତ ନୁହେଁ । ଏକ ନିୟମ ଓ ଶୃଙ୍ଖଳାବଦ୍ଧ ଭାଷା । ଓଡ଼ିଆ ଭାଷାର ଅଛି ଏକ ଶୃଙ୍ଖଳା, ଏକ ପ୍ରବାହ । ତେଣୁ ଏହାର ପ୍ରାଚୀନତା ସହିତ ଶୃଙ୍ଖଳାକୁ ସମନ୍ୱିତ କରି ଏହାକୁ ଶାସ୍ତ୍ରୀୟ ଭାଷା କୁହାଯିବାରେ ଆଦୌ ବାଧା ନାହିଁ । ଆମେ ଜାଣୁ ଯେ ଭାରତବର୍ଷର କେତେକ ପ୍ରାଦେଶିକ ଭାଷାଠାରୁ ଓଡ଼ିଆ ଭାଷା ପ୍ରାଚୀନତର । ଏହାର ଭାଷା କେବଳ ସମୃଦ୍ଧ ନୁହେଁ । ଶବ୍ଦ ଭଣ୍ଡାର ବିପୁଳ ନୁହେଁ, ଏହାର ସାହିତ୍ୟ ମଧ୍ୟ ବିପୁଳ ।

### ଓଡ଼ିଆ ଭାଷାର ବର୍ତ୍ତମାନ ସ୍ଥିତି

ଓଡ଼ିଆ ଭାଷା ପ୍ରାଚୀନ । ପ୍ରାୟ ଅଢ଼େଇ ହଜାର ବର୍ଷ ଧରି ଏହି ଭାଷା ଗତି କରିଆସିଛି । ୧୮୭୦ ମସିହା ବେଳକୁ ଏ ଭାଷା ମରଣ-ସଂକଟରେ ପଡ଼ିଥିଲା ମାତ୍ର ଏହା ବଞ୍ଚିଗଲା ଏହାର ପ୍ରାଚୀନତା ପାଇଁ ଏବଂ

ସାହିତ୍ୟ ପାଇଁ । ଜନ୍ ବୀମ୍ସ ଏ ଭାଷାକୁ ସେଦିନ ସ୍ୱୀକାର କେବଳ କଲେ ନାହିଁ, ପ୍ରମାଣ କରିଦେଲେ ଏ ଭାଷାର ପ୍ରାଚୀନତାକୁ, ଏ ସାହିତ୍ୟର ମର୍ଯ୍ୟାଦାକୁ । ଗୋଟାଏ ବିପୁଳ ଉତ୍ସାହ ସୃଷ୍ଟି ହେଲା ଓଡ଼ିଆ ଭାଷାକୁ ନେଇ । ସେସମୟର ଦେଶପ୍ରାଣ, ଭାଷାପ୍ରାଣ ବ୍ୟକ୍ତିମାନେ ଯଥା : ଗୌରୀଶଙ୍କର ରାୟ, ଫକୀର ମୋହନ ସେନାପତି, କୁଳବୃଦ୍ଧ ମଧୁସୂଦନ ଦାସ, ଗଙ୍ଗାଧର ମେହେର, ନନ୍ଦକିଶୋର ବଳ, ପଣ୍ଡିତ ଗୋପବନ୍ଧୁ ଦାସ ପ୍ରମୁଖ ଯେପରି ଭାବରେ ସ୍ୱଜାତି ପ୍ରୀତି ଓ ମାତୃଭାଷା ପ୍ରୀତିକୁ ପ୍ରତିଷ୍ଠା ଦେବା ପାଇଁ ଆହ୍ୱାନ ଦେଲେ ତାହା ସମଗ୍ର ଜାତିକୁ ଉଦ୍‌ବୁଦ୍ଧ କଲା । ଏହି ଭାଷା ପ୍ରୀତି ସ୍ୱାଧୀନତା ପର୍ଯ୍ୟନ୍ତ ରହିଲା ମାତ୍ର ସ୍ୱାଧୀନତା ପରେ ତାହା କ୍ରମଶଃ ହ୍ରାସ ପାଇବାକୁ ଲାଗିଲା । ଆମେ ହୁଏତ ରାଜନୀତିକ ସ୍ୱାଧୀନତା ଲାଭ କରିଥିଲୁ ମାତ୍ର ସାଂସ୍କୃତିକ ପରାଧୀନତା ଆମକୁ ଅଧିକ ପରିମାଣରେ ଗ୍ରାସ କରି ରଖିଲା । ଅତୀତର ଔପନିବେଶିକ ମାନସିକତା ସେହିପରି ଆଚ୍ଛନ୍ନ କରି ରଖିଲା । ଏଥିରୁ ମୁକ୍ତ ନ ହେଲେ ଗୋଟିଏ ଜାତିର ଓ ତା' ଭାଷାର ମର୍ଯ୍ୟାଦା ପ୍ରତିଷ୍ଠା ହୋଇପାରିବ କି ? ଏହା ହିଁ ବିଚାର କରିବାର କଥା ।

### ଓଡ଼ିଆ ଭାଷାର ଭବିଷ୍ୟତ

ଆମେ ସାଧାରଣତଃ ବର୍ତ୍ତମାନକୁ ନେଇ ଗର୍ବ କରୁ, ଅନେକ ସ୍ୱପ୍ନ ଦେଖୁ । ମନେ ରଖିବାକୁ ହେବ ଯେ ଆମେ ଯଦି କେବଳ ବର୍ତ୍ତମାନ ସର୍ବସ୍ୱ ହୋଇଯିବା ତେବେ ଆଦୌ ଭବିଷ୍ୟତକୁ ଆଗେଇ ପାରିବା ନାହିଁ । ଭବିଷ୍ୟତ ଆମର ଲକ୍ଷ୍ୟ, ବର୍ତ୍ତମାନ ଆମର କର୍ମଭୂମି, ଅତୀତ ଆମର ସାକ୍ଷୀ । ତେଣୁ ଆମେ ଆମ ମାତୃଭାଷାକୁ ଗୁରୁତ୍ୱ ଦେବା ଉଚିତ । ଯେଉଁ ସବୁ ବିଚ୍ଛିନ୍ନ ଅଞ୍ଚଳରୁ ଆମ ଭାଷା ଲୋପ ପାଇବାକୁ ବସିଲାଣି, ତାହା ପୁନଃ ପ୍ରତିଷ୍ଠା କରିବାକୁ ହେବ । ରାଜ୍ୟ ଭିତରେ ଓଡ଼ିଆ ଭାଷା ପ୍ରତି ଶ୍ରଦ୍ଧା ଉପୁଜାଇବାକୁ ହେବ । ଆମେ ହିଁ ଆମର ନିଜ ବେକରେ କୁରାଢ଼ି ପକାଉଛେ । ଇଂରାଜୀ ମାଧ୍ୟମ ସ୍କୁଲମାନ ଗାଁରୁ ନଗର ପର୍ଯ୍ୟନ୍ତ ବ୍ୟାପିବାରେ ଲାଗିଛି । କିଏ କରୁଛି ? କେତେଜଣ ନ୍ୟସ୍ତସ୍ୱାର୍ଥ ବ୍ୟକ୍ତି ଏହା କରୁନାହାନ୍ତି କି ? ଏହାଦ୍ୱାରା ଅର୍ଥ ଲାଳସା ସୃଷ୍ଟି ହେଉନାହିଁ କି ? ଇଂରାଜୀ ମାଧ୍ୟମ ସ୍କୁଲରେ ପିଲାମାନଙ୍କୁ ପାଠ ପଢ଼େଇବାକୁ ଲୋକେ ଉବୁଡ଼ା ପଡ଼ୁ ନାହାନ୍ତି କି ? ଏ ଅବସ୍ଥାକୁ କିଏ ପ୍ରତିରୋଧ କରିବ ? ଆମ ଭାଷା ପ୍ରତି ଶ୍ରଦ୍ଧାଶୀଳ ହେଲେ ହିଁ ଆମେ ବିଦେଶୀ ଭାଷାକୁ ପ୍ରତିରୋଧ କରିପାରିବା ଓ ଆମ ନିଜ ଭାଷାର ଉନ୍ନତି କରିପାରିବା । ମାତ୍ର ଏହା ହେଉନାହିଁ । ଯାହା ହେଉଛି ତାହା ପରସ୍ପର ମଧ୍ୟରେ ପ୍ରତିଦ୍ୱନ୍ଦ୍ୱିତା । ଇଏ କହୁଛି ସିଏ ଓଡ଼ିଆ ଭାଷାକୁ ଶାସ୍ତ୍ରୀୟ ମାନ୍ୟତା ଦେଇଦେଲା, ସିଏ କହୁଛି ସିଏ କରିଦେଲା । ଇଏ ହେଉଛି ଅହଂକାର ସହିତ ଅହଂକାରର ସଂଘର୍ଷ । ଗୀତାରେ, 'ଅହଙ୍କାର ବମୂଢ଼ାତ୍ମା କର୍ତ୍ତାହମିତିମନ୍ୟତେ' । ଅତୀତରେ ଓଡ଼ିଆ ଭାଷା ପ୍ରତିଷ୍ଠାନ ହୋଇଥିଲା, ଏବେ ମଧ୍ୟ ତାହା କାର୍ଯ୍ୟ କରୁଛି ।

ଓଡ଼ିଆ ଭାଷା ଶାସ୍ତ୍ରୀୟ ମାନ୍ୟତା ଲାଭ କଲା । ଗୋଟାଏ ଇତିହାସ ପ୍ରସିଦ୍ଧ ଜାତି ପାଇଁ ନିଶ୍ଚୟ ଗୌରବର କଥା । ଏହି ଗୌରବ ଆଉ ବ୍ୟକ୍ତିବିଶେଷଙ୍କର ନୁହେଁ, ସମଗ୍ର ଜାତିର । ଭାଷାର ଶୃଙ୍ଖଳା ପ୍ରତିଷ୍ଠା ଲାଭ କରୁ, କେତେଜଣଙ୍କ ମର୍ଜିକୁ ନେଇ ତାକୁ ସ୍ୱେଚ୍ଛାଚାରିତା ଆଡ଼କୁ ଠେଲି ଦିଆନଯାଉ । ତେବେ ସେ ଯାହା ହେଉ ବର୍ତ୍ତମାନ ସ୍ୱତନ୍ତ୍ର ଓଡ଼ିଆ ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠା ପାଇଁ ସରକାର ପଦକ୍ଷେପ ଗ୍ରହଣ କରିଛନ୍ତି । ଓଡ଼ିଶାରେ ଥିବା ସମସ୍ତ ଆଞ୍ଚଳିକ ଭେଦକୁ ଦୂରକରି ସମସ୍ତଙ୍କୁ ଏକ କରିବାକୁ ହେବ । ଆଞ୍ଚଳିକ ଭାଷାର ବିକାଶ କରାଇ ମୁଖ୍ୟ ଭାଷା ସହିତ ମିଶାଇବାକୁ ହେବ । କେହି ଆଦୌ ଗର୍ବ କରିବା ଉଚିତ ନୁହେଁ ଯେ ସିଏ କରିଦେଲା । ଯେତେ ଯିଏ ଯାହା କଲେ ବା କହିଲେ ମଧ୍ୟ ଗୋଟିଏ ସରକାରର ଇଚ୍ଛାଶକ୍ତି ଉପରେ ସବୁ ନିର୍ଭର କରେ । ଓଡ଼ିଶା ସରକାରଙ୍କର ଇଚ୍ଛାଶକ୍ତି ସକାରାତ୍ମକ ଥିଲା ବୋଲି କମିଟି ହେଲା, ଦାବି ଉପସ୍ଥାପିତ ହେଲା ଓ କେନ୍ଦ୍ର ସରକାର ତାହାକୁ ଗ୍ରହଣ କଲେ । ଏଥର ଆସନ୍ତୁ, ଅହଂକାର

ତ୍ୟାଗ କରି ସମସ୍ତଙ୍କ ଭିତରେ ସଂଯୋଗ ସ୍ଥାପନ କରି ଆମ ମାତୃଭାଷାର ବିକାଶ କରିବା ଓ ଏହାକୁ ଏକ ମହିମାମୟ ଭାଷାରେ ପରିଣତ କରି ଆମ ସାହିତ୍ୟ ଓ ସଂସ୍କୃତର ମୂଲ୍ୟବୋଧକୁ ଦର୍ଶାଇଦେବା । ତେବେ ଯାଇ ଓଡ଼ିଆ ଭାଷାର ଶାସ୍ତ୍ରୀୟ ମାନ୍ୟତାକୁ ଲୋକେ ଉପଲବ୍ଧି କରିପାରିବେ । ଓଡ଼ିଆ ଭାଷାକୁ ଗୁରୁତ୍ୱ ଦେବା ସଙ୍ଗେ ସଙ୍ଗେ ଓଡ଼ିଶାରେ ଯେତେ ଯେତେ ଆଞ୍ଚଳିକ ଭାଷା ଅଛି ଓ ଯେତେ ଯେତେ ଆଦିବାସୀ ଭାଷା ଅଛି ସେ ସବୁର ନିଜ ନିଜ ପରିସରରେ ବିକାଶ ହେବା ସଂଗେ ସଂଗେ ମୁଖ୍ୟ ଭାଷା ସହିତ ସେସବୁ ଭାଷାର ଶବ୍ଦମାନଙ୍କୁ ମିଶାଇ ଦେଇ ବୃହତ୍ତର ଓଡ଼ିଆ ଭାଷାର ସମୃଦ୍ଧି ଯେ କେତେ ଆବଶ୍ୟକ, ତାହା ବେଶି ବୁଝାଇ କହିବାର ନାହିଁ ।

ଅପର୍ଣ୍ଣା ନଗର, ଚାଉଳିଆଗଞ୍ଜ
କଟକ–୭୫୩୦୦୪



# ଓଡ଼ିଆ ଭାଷା ସମସ୍ୟା ଓ ତା'ର ସମାଧାନ

ଶ୍ରୀକାନ୍ତ କୁମାର ବାରିକ

ଭାଷା ହେଉଛି ଗୋଟିଏ ଜାତିର ମେରୁଦଣ୍ଡ । ଭାଷା କେବଳ ଗୋଟିଏ ବ୍ୟକ୍ତି ପାଇଁ ନୁହେଁ, ଜାତି ପାଇଁ ଉଦ୍ଦିଷ୍ଟ । ଭାଷା ଜାତି ବା ସମାଜର ବ୍ୟକ୍ତିବର୍ଗଙ୍କ ଦ୍ୱାରା ସୃଷ୍ଟି ହୋଇଥାଏ ଏବଂ ତାହା ସେହି ଜାତି ବା ସମାଜର ଭାଷା ଭାବରେ ବିବେଚିତ ହୋଇଥାଏ । ସମାଜର ପ୍ରବାହ ଧାରା ଭାଷାକୁ ବଞ୍ଚାଇ ରଖେ ଓ ବିକଶିତ କରିଥାଏ । ଆମ ଓଡ଼ିଆ ଭାଷା ଓଡ଼ିଆ ଜାତି (ପ୍ରାଚୀନ ଉଡ୍ର) କେଉଁ ଆବହମାନ କାଳରୁ ସୃଷ୍ଟି ହୋଇଛି ଓ ଓଡ଼ିଆ ଜାତିର ବିକାଶ ଧାରାରେ ଉତ୍ତରୋତ୍ତର ବିକାଶଲାଭ କରିଛି । ଏହି ଦୃଷ୍ଟିକୋଣରୁ ଓଡ଼ିଆ ଭାଷା ହେଉଛି ଓଡ଼ିଆ ଜାତିର ପରିଚୟ । ଓଡ଼ିଶାର ପ୍ରାଦେଶିକ ସ୍ୱୀକୃତିପ୍ରାପ୍ତ ଭାଷା । କିନ୍ତୁ ବର୍ତ୍ତମାନ ଏ ଜାତି ପାଇଁ ସବୁଠାରୁ ଦୁଃଖର କଥା ହେଲା ଏହିଭଳି ଏକ ସମୃଦ୍ଧ ଭାଷା ଏକ ଭୟଙ୍କର ମୃତ୍ୟୁ ସଂକଟର ଆଶଙ୍କା ଦେଇ ଗତି କରୁଛି । ଏ ସଂପର୍କରେ ଅନେକ ଆଲୋଚନା ପ୍ରତିଆଲୋଚନା, ବାଦବିସମ୍ବାଦ, ତର୍କ ବିତର୍କ ଆରମ୍ଭ ହୋଇଗଲାଣି । ଭାଷା ବିଜ୍ଞାନୀଙ୍କ ମତରେ, ଓଡ଼ିଆ ଭାଷା ବର୍ତ୍ତମାନ ପରିସ୍ଥିତିରେ ବିପନ୍ନ । ଏମିତି କେତେ କଥା । କିନ୍ତୁ ଆମର ବହୁ ଲେଖକ ଓ ସାହିତ୍ୟିକଙ୍କ ମତରେ 'ଓଡ଼ିଅ ଭାଷା' କେବେ ହେଁ ଲୋପ ପାଇବ ନାହିଁ । ଯଦି ଏହି ଭାଷାରେ ବିଶାଳ ସାହିତ୍ୟ ଭଣ୍ଡାର ଥିବାରୁ ଭାଷାଟି ଲୋପ ପାଇ ପାରିବ ନାହିଁ । ଆମେ ଖାଲି ଏମିତି କହି ନାହିଁରେ ତେଲ ଦେଇ ନିଶ୍ଚିନ୍ତ ହୋଇଯିବା, ତାହାହେଲେ ନିକଟ ଭବିଷ୍ୟତରେ ଆମ ଓଡ଼ିଆ ଭାଷା ନିଶ୍ଚିତ ଭାବେ ଗୁରୁତର ସଂକଟର ସମ୍ମୁଖୀନ ହୋଇଯିବ ।

ଯଦିଓ ଷଷ୍ଠରୁ ଦ୍ୱାଦଶ ଶତାବ୍ଦୀ ମଧ୍ୟରେ ଲିଖିତ ଚର୍ଯ୍ୟାଗୀତିକାଗୁଡ଼ିକରେ ଓଡ଼ିଆ ଭାଷାର କିଛି ପ୍ରମାଣ ମିଳେ । କିନ୍ତୁ ସାରଳା ଦାସଙ୍କର ମହାଭାରତ ହିଁ ଓଡ଼ିଆ ଭାଷାସ୍ଥିତିର ପ୍ରଥମ ପ୍ରାମାଣିକ ତଥ୍ୟ । ଗ୍ରନ୍ଥଟି ରଚନା ହେବା ବେଳକୁ ଓଡ଼ିଆ ନିଶ୍ଚୟ ଏକ କଥିତ ଭାଷା ଥିଲା ଏବଂ ମହାକବି ସାରଳାଦାସ ଏହି କଥିତ ଭାଷାରେ ମହାଭାରତ ଭଳି ମହାନ ଗ୍ରନ୍ଥ ରଚନା କରି ଏ ଜାତିର ମୂଳଭିତ୍ତି ପକାଇ ଗଲେ । ଏହି ଗ୍ରନ୍ଥଟି ପଞ୍ଚଦଶ ଶତାବ୍ଦୀର ପ୍ରଥମାର୍ଦ୍ଧରେ (୧୪୩୦-୪୦) ରଚିତ ହେଲା । ଏହା ପରଠାରୁ ଓଡ଼ିଆ ଭାଷାର କ୍ରମ ବୃଦ୍ଧି ଘଟିଛି, ଘଟୁଛି । ସାରଳା ଦାସଙ୍କ ପରେ ପରେ ଆସିଲେ ପଞ୍ଚସଖା ଜଗନ୍ନାଥ ଦାସ, ବଳରାମ ଦାସ, ଅଚ୍ୟୁତାନନ୍ଦ ଦାସ, ଶିଶୁ ଅନନ୍ତ ଓ ଯେଶୋବନ୍ତ ଦାସ । ଓଡ଼ିଆ ସାହିତ୍ୟର କଳେବର ବୃଦ୍ଧି କରିବା ସହିତ ଏହାକୁ ରୁଦ୍ଧିମନ୍ତ ମଧ କଲେ । ସୂର୍ଯ୍ୟବଂଶୀ ଗଜପତି ରାଜାମାନେ ଶାସନ କାର୍ଯ୍ୟରେ ଓଡ଼ିଆ ଭାଷାକୁ ବ୍ୟବହାର କରୁଥିବା ପ୍ରମାଣ ମିଳିଥାଏ । ଗଙ୍ଗାଠାରୁ କୃଷ୍ଣା ପର୍ଯ୍ୟନ୍ତ ପରିବ୍ୟାପ୍ତ ଏ ସାମ୍ରାଜ୍ୟରେ ତତ୍କାଳୀନ ସମୟରେ ସେମାନେ ତେଲୁଗୁ ଭାଷାର ବ୍ୟବହାର କରିଥିବା ସମ୍ଭବ, କାରଣ ସେସମୟରେ ସୂର୍ଯ୍ୟବଂଶୀ ସାମ୍ରାଜ୍ୟରେ ବହୁ ସଂଖ୍ୟାରେ ତେଲୁଗୁ ଥିଲେ । ସେ ଯାହାହେଉ, ଏହି ସମୟରେ ଓଡ଼ିଆ ଭାଷାର କ୍ରମବିକାଶ ଘଟିଥିଲା । କିନ୍ତୁ ୧୫୬୮ ମସିହା ପରଠାରୁ ସ୍ୱାଧୀନତା ପରବର୍ତ୍ତୀ ପର୍ଯ୍ୟନ୍ତ ଓଡ଼ିଆ ଭାଷା ଓଡ଼ିଶାର ପ୍ରଶାସନିକ ଭାଷାର ମର୍ଯ୍ୟାଦା

ହରାଇ ବସିଲା । ଏହି ସମୟରେ କୌଣସି ଭାଷା ପ୍ରତିଷ୍ଠାନ ନଥିଲା, ଭାଷାର ପ୍ରଗତି ଚିନ୍ତା କରିବା ପାଇଁ । ଆଫ୍‌ଗାନ୍, ମୋଗଲ, ମରହଟ୍ଟା ଓ ଇଂରେଜ ଆଦି ଶାସକମାନେ କ୍ରମାନ୍ୱୟରେ ଓଡ଼ିଶାକୁ ଦଖଲ କଲେ । ସେମାନେ ନିଜ ଭାଷାରେ ଦଲିଲ ପତ୍ର ଲେଖିଥିଲେ । ଏହିକାଳ ମଧ୍ୟରେ ଉପେନ୍ଦ୍ର ଭଞ୍ଜ, କବି ସୂର୍ଯ୍ୟ ବଳଦେବ, ଦୀନକୃଷ୍ଣ, ଅଭିମନ୍ୟୁ ସାମନ୍ତ ସିଂହାର, ଯଦୁମଣି ଏବଂ ପରବର୍ତ୍ତୀ କାଳରେ ଫକୀର ମୋହନ, ରାଧାନାଥ, ମଧୁସୂଦନ ଓ ଗଙ୍ଗାଧରଙ୍କ ପରି ପ୍ରଥିତଯଶା ସାହିତ୍ୟିକ ଜନ୍ମ ନେଇଥିଲେ । କିନ୍ତୁ ଏଠାରେ ପ୍ରଶ୍ନ ଉଠେ ଏହିଭଳି ଏକ ଦୁର୍ଦ୍ଦିନ ସମୟରେ ବିନା ସରକାରୀ ପ୍ରୋତ୍ସାହନରେ ଏହି ଓଡ଼ିଆ ଭାଷା କେମିତି ବଞ୍ଚିଲା ଓ ସମୃଦ୍ଧି ଲାଭ କଲା ? ସତ୍ ଲେଖକ ଓ ସାହିତ୍ୟିକ ବନ୍ଧୁମାନେ ବିଚାର କରିବା ଉଚିତ୍ ଯେ କେବଳ ଭଲ ସାହିତ୍ୟ ରଚନା କରିଦେଲେ ଭାଷା ବଞ୍ଚେ ନାହିଁ । ସଂସ୍କୃତ ଭାଷାରେ କେତେ ଯେ ମହାନ୍ ଗ୍ରନ୍ଥ ରଚିତ ହୋଇଛି । ଅଦ୍ୟାବଧି ମଧ ରଚନା କରାଯାଉଛି । କିନ୍ତୁ ଏହା ଏକ ମୃତ ଭାଷା । ଗ୍ରୀକ୍, ଲାଟିନ୍ ଆଦି ଭାଷାରେ କେତେ ଯେ ସାହିତ୍ୟ, ଦର୍ଶନ, ପୁରାଣ ଆଦି ରଚିତ ହୋଇଛି, କିନ୍ତୁ ଏହି ଭାଷା ଦ୍ୱୟ ମଧ୍ୟ ମୃତ । କାରଣ ଏଗୁଡିକ କଥିତ ଭାଷା ନୁହନ୍ତି । ତେଣୁ ଗୁଡାଏ ବହି ଲେଖିଦେଲେ କିମ୍ବା ଗୁଡାଏ ପତ୍ରିକା ବାହାର କରିଦେଲେ ଭାଷା ବଞ୍ଚେ ନାହିଁ । ଭାଷା ବଞ୍ଚେ ଲୋକଙ୍କ ମୁହଁରେ ।

ଏହିଭଳି ଆହୁରି କେତୋଟି ଦିଗକୁ ଏଠାରେ ଆଲୋଚନା କରାଯାଇପାରେ । ସାଂପ୍ରତିକ କାଳରେ ଭାରତୀୟ ପ୍ରାନ୍ତୀୟ ଭାଷାମାନଙ୍କ ସମ୍ପର୍କରେ ନାନାଦି ତର୍କ, ଆଲୋଚନା, ବିମର୍ଶ ପ୍ରାୟ ସବୁବେଳେ ହେଉଛି । କାରଣ ଏହି ଭାଷାଗୁଡିକରେ ଇଂରାଜୀ ଭାଷା କାୟା ବିସ୍ତାର କରିବାକୁ ବସିଛି । ବଙ୍ଗଳା, ହିନ୍ଦୀ, କନ୍ନଡ଼, ତାମିଲ୍ ଆଦି କେତୋଟି ହାତଗଣତି ଭାଷାକୁ ଛାଡ଼ିଦେଲେ ଅନ୍ୟ ଭାଷାର ଅବସ୍ଥା ଦିନକୁ ଦିନ ଶୋଚନୀୟ ହୋଇ ପଡୁଛି । ଏସବୁର ମୂଳ କାରଣ ହେଉଛି ଇଂରାଜୀ ମାଧ୍ୟମ ସ୍କୁଲମାନଙ୍କ ପ୍ରଚେଷ୍ଟା ଓ ଯଥେଚ୍ଛାଚାର ଅଭିବୃଦ୍ଧି । ଦଶବର୍ଷ ପୂର୍ବରୁ ଏପରି ସ୍କୁଲ କାଁ ଭାଁ କେବଳ ସହରରେ ଗଢ଼ି ଉଠୁଥିଲା । ଏବେ କିନ୍ତୁ ଗ୍ରାମାଞ୍ଚଳ ଓ ଗ୍ରାମ୍ୟ ସହରରେ ଇଂରାଜୀ ମାଧ୍ୟମିକ ସ୍କୁଲମାନଙ୍କରେ ବହୁ ସଂଖ୍ୟାରେ ବିକାଶ ଘଟୁଛି । ପିଲାମାନଙ୍କ ବାପାମାଆ କିମ୍ବା ଅଭିଭାବକମାନଙ୍କ ମନରେ ଗୋଟିଏ ଭୁଲ ଧାରଣା ବସା ବାନ୍ଧିଛି ଯେ ଇଂରାଜୀ ପାଠରୁ ପଢ଼ାଟି ଆରମ୍ଭ କଲେ ପିଲାଟିର ଭବିଷ୍ୟତ ଉଜ୍ଜ୍ୱଳ ହେବ । ସେ ଚାକିରି ପାଇବ । ବୈଷୟିକ ଅନୁଷ୍ଠାନମାନଙ୍କରେ ପାଠ ପଢ଼ି ବଡ଼ ବଡ଼ କମ୍ପାନୀମାନଙ୍କରେ ଚାକିରି କରି ଅଧିକ ଦରମା ପାଇବ । ଇଂରାଜୀରୁ ପାଠ ପଢ଼ା ଆରମ୍ଭ ନକଲେ ସେ ସ୍ମାର୍ଟ ହୋଇ ପାରିବ ନାହିଁ । ଏହା ସାଧାରଣ ଲୋକଙ୍କର ଏକ ଭ୍ରମ ଧାରଣା ଓ ଧୀରେ ଧୀରେ ଏହି ଭ୍ରମ ଧାରଣା ସମସ୍ତଙ୍କ ମସ୍ତିଷ୍କକୁ ଦିଗ୍‌ଭ୍ରଷ୍ଟ କରିଦେଉଛି ।

ଭାଷା ସଂପର୍କରେ ଲୋକମାନ୍ୟ ବାଳ ଗଙ୍ଗାଧର ତିଳକଙ୍କ ମନ୍ତବ୍ୟ ଥିଲା ବିସ୍ଫୋରକ । ସେ କହିଥିଲେ ଗୋଟିଏ ବିଦେଶୀ ଭାଷା ଶିକ୍ଷା ଲାଗି ଏପରି ବାଧ୍ୟବାଧକତା ଭାରତ ଛଡ଼ା ଆଉ କେଉଁ ଦେଶରେ ଦେଖାଯାଏ ନାହିଁ । କୋଡ଼ିଏ ପଚିଶ ବର୍ଷ ଧରି ଇଂରାଜୀ ଭାଷା ମାଧ୍ୟମରେ ଆମେ ଯାହା ଶିକ୍ଷା କରିପାରୁ, ମାତୃଭାଷା ମାଧ୍ୟମରେ ଆମେ ତାହା ସହଜରେ ସାତ ଆଠ ବର୍ଷ ମଧ୍ୟରେ ଶିକ୍ଷାଲାଭ କରିପାରିବୁ (British rule in India Ramgopal, Page-229) । ଇଂରାଜୀ ଭାଷା ଭାରତୀୟ ସ୍କୁଲ ତଥା ଓଡ଼ିଶାର ସ୍କୁଲ କଲେଜମାନଙ୍କରେ ଶିକ୍ଷା ଦିଆଯାଉଥିବାରୁ ଛାତ୍ରଛାତ୍ରୀମାନଙ୍କର ବହୁ ଶକ୍ତି ଓ ସମୟ ନଷ୍ଟ ହେଉଛି । ଛାତ୍ରଛାତ୍ରୀମାନଙ୍କର ଚିନ୍ତାର ବିକାଶ ଓ ଭାବର ସଂପ୍ରସାରଣ ପକ୍ଷେ ଅସୁବିଧା ଦେଖାଦେଉଛି । ଯାହାଫଳରେ ପିଲାମାନେ ଭାବଠାରୁ ଦୂରେଇ ଯାଉଛନ୍ତି । ମାତୃଭାଷା ମାଧ୍ୟମରେ ଶିକ୍ଷା ଦିଆଗଲେ ଏହିଭଳି ଅସୁବିଧା ଦେଖାଦିଅନ୍ତା ନାହିଁ । ମନସ୍ତତ୍ତ୍ୱବିତ୍‌ମାନେ କହିଥାନ୍ତି ପିଲାଟିଏ ଯଦି ଆରମ୍ଭରୁ ଦଶବର୍ଷ ପର୍ଯ୍ୟନ୍ତ କେବଳ ମାତୃଭାଷା ମାଧ୍ୟମରେ ଅଧ୍ୟୟନ କରିବ ତା'ପରେ ଅନ୍ୟ ଯେକୌଣସି ଭାଷାକୁ ଆୟତ୍ତ କରିବା ପାଇଁ ପ୍ରୟାସ କରିବ, ତା' ପକ୍ଷେ ସେହି ଭାଷାକୁ ଆୟତ୍ତ କରିବା କଷ୍ଟକର ହେବନାହିଁ କିନ୍ତୁ ପିତାମାତା

ଅଭିଭାବକମାନେ କ'ଣ କରୁଛନ୍ତି? ପ୍ରଥମରୁ ପିଲାଟିକୁ ଇଂରାଜୀ ମାଧ୍ୟମ ସ୍କୁଲମାନଙ୍କରେ ପାଠ ପଢ଼ାଇ ନିଜର ମାତୃଭାଷାରେ ଦୁର୍ବଳ କରି ଦେଉଛନ୍ତି । ନା ସେ ଭଲ କରି ନିଜ ଭାଷାକୁ କହୁଛି ନା ଭଲକରି ଇଂରାଜୀ ଭାଷାକୁ ଆୟତ୍ତ କରିପାରୁଛି । ଅବଶ୍ୟ ଦରଖଣ୍ଡିଆ ଭାବରେ ଇଂରାଜୀ କହୁଛି ଓ ଲେଖୁଛି । ପିଲାକୁ ଏହିପରି ଏକ ସଂକଟ ଭିତରକୁ ଠେଲି ଦେଇ ପିତାମାତା ଓ ଅଭିଭାବକମାନେ ତାକୁ ବିକଳାଙ୍ଗ କରି ଦେଉଛନ୍ତି ।

କ୍ରମେ ରାଜ୍ୟର ମେଧାବୀ ପିଲାମାନେ ମାତୃଭାଷାଠାରୁ ସଂପୂର୍ଣ୍ଣ ଦୂରେଇ ଯାଇ ହୁଏତ ଅଧିକ ରୋଜଗାର କରିବେ, କିନ୍ତୁ ସେମାନଙ୍କ ମଧ୍ୟରେ ମଣିଷ ପଣିଆର ବିକାଶ ଘଟିବ ତ? ଯାହା ସ୍ୱଭାବ କବି ଗଙ୍ଗାଧର ମେହେର କହିଯାଇଛନ୍ତି–

'ମାତୃଭୂମି ମାତୃଭାଷାରେ ମମତା ଯା ହୃଦେ ଜନମି ନାହିଁ
ତାକୁ ଯଦି ଜ୍ଞାନୀ ଗଣରେ ଗଣିବା ଅଜ୍ଞାନ ରହିବେ କାହିଁ ' ॥

ଏହି ପିଲାମାନେ ହୋଇଯିବେ ଏକ ଦେଶଦର୍ଶୀ, ବେତାଳିଆ, ଗୋଟିଏ ଗୋଟିଏ ଛିନ୍ନପକ୍ଷ ମୈନାକ । ଏମାନେ ଉତ୍ତରପିଢ଼ି ପାଇଁ ମହାସଂକଟର କାରଣ ହୋଇଯିବେ । କାହିଁକିନା ଯେଉଁ ଭାଷାଟି ସଂସ୍କାର, ସଂସ୍କୃତି, ଦେଶ, ଜାତୀୟତା ଆଦିକୁ ଯୋଡ଼ି ପାରିଥାନ୍ତା, ସେହି ଭାଷାକୁ ସେମାନଙ୍କ ପିଲାଛୁଆ ଆଦୌ ଶିଖି ପାରିବେ ନାହିଁ । ଘଣ୍ଟା ଘଣ୍ଟା ଧରି କମ୍ପ୍ୟୁଟର ପାଖରେ ବସି ରହୁଥିବା ଏ ପିଲାମାନେ ନା ଭାଗବତ ପଢ଼ିବେ ନା ରାମାୟଣ ନା ଫକୀର ମୋହନ, ଗୋପୀନାଥ ଆଦିଙ୍କୁ, ଯାହା ତାଙ୍କ ପାଇଁ ଗର୍ବ ଓ ଗୌରବର ବିଷୟ ହୁଅନ୍ତା, ତାହା ନ କରି ସେମାନେ ଅର୍ଥ ସର୍ବସ୍ୱ, ସଂସ୍କାରହୀନ, ଦେଶ, ଜାତି ବିବର୍ଜିତ ମଣିଷ ହୋଇ ବାହାରିବା ସାର ହେବ । ଯାହାଙ୍କ ଭିତରେ ମାଆ, ମାତୃଭୂମି ଓ ମାତୃଭାଷା ପ୍ରତି ଟିକିଏ ବି ଦରଦ ବୋଧ ନଥିବ । ସେତେବେଳେ ଅର୍ଥାତ୍ ଏ ପିଢ଼ିର ପରବର୍ତ୍ତୀ ପିଢ଼ିରେ କ'ଣ ହେବ ଏ ଭାଷାର ଅବସ୍ଥା ଆଜହୁଁ ଏଜାତି କଳ୍ପନା କରିବା ଉଚିତ୍ ।

ଏହିଭଳି ଆଉ ଗୋଟିଏ କଥା ହେଉଛି ଆମ ଲୋକଙ୍କର ନିଜ ମାତୃଭାଷା ପ୍ରତି ହୀନମନ୍ୟଭାବ । ଦେଶରେ ଓଡ଼ିଆ ଜାତି ବୋଧେ ପ୍ରଥମ ଜାତି ଯେଉଁଠି ଉଭୟ ସରକାରୀ ଓ ଜନସାଧାରଣଙ୍କ ପାଖରେ ନିଜ ମାତୃଭାଷା ଏତେ ହତାଦର ହୋଇଥାଏ । ଆମ ଲୋକେ ରେଳ ଗାଡ଼ିରେ ଚଢ଼ି ସାରିଲା ପରେ ଓଡ଼ିଆ ଭାଷାକୁ ପାଶୋରି ଦେଇ ଛାତିକୁ ଟିକିଏ ଫୁଲାଇ ଲହରାଇ ଲହରାଇ ହିନ୍ଦୀ କିମ୍ବା ଇଂରାଜୀ କହିବା ଆରମ୍ଭ କରିଦିଅନ୍ତି । ଏହା କୌଣସି ତାଚ୍ଛଲ୍ୟର କଥା ନୁହେଁ, ନିରାଟ ସତ କଥା । କିନ୍ତୁ ଆପଣ ଦେଖିଥିବେ ଜଣେ ବଙ୍ଗାଳି ହୁଅନ୍ତୁ କିମ୍ବା ତାମିଲ ଲୋକ ହୁଅନ୍ତୁ, ସେମାନେ ଯେଉଁଠିକୁ (ନିଜ ରାଜ୍ୟ ଭିତରେ କିମ୍ବା ରାଜ୍ୟ ବାହାରେ) ଯାଆନ୍ତି ସେଠାରେ ପ୍ରଥମେ ନିଜ ମାତୃଭାଷାରେ କଥା ହୁଅନ୍ତି କିନ୍ତୁ ଆମ ଲୋକେ ଠିକ୍ ଓଲଟା । ଏବେତ ଆମ ଯୁବସମାଜ ଆଉ ଓଡ଼ିଆ ଭାଷାରେ କଥା ହେଉ ନାହାନ୍ତି । ଏମାନଙ୍କ ଦୃଷ୍ଟିରେ ଓଡ଼ିଆ ଭାଷା ସତେ ଏତେ ଗନ୍ଧିଆ, ନିକଚ୍ଛିଆ । ଦରଖଣ୍ଡିଆ ହିନ୍ଦୀ ନୋହିଲେ ଇଂରାଜୀରେ କଥା ହେବାକୁ ଏହାଙ୍କୁ ସୁଖ ଲାଗୁଛି । କି ଦୁର୍ଭାଗ୍ୟ ସତେ ଏ ଜାତିର । ମଧୁବାବୁ କହିଥିଲେ–

'ଇଷ୍ଟ ଦେବୀ ମାତୃଭାଷା ମାତୃ ଜାତି
ତାଙ୍କ ହତାଦରେ ଦେଶ ଆତ୍ମଘାତୀ' ॥

ନିଜ ମାତୃଭାଷା ପ୍ରତି ହତାଦର କରି ଆଜି ଏ ଜାତି ନିଜ ପରିଚୟ ହଜାଇବାକୁ ବସିଛି । ଆମ ସରକାରୀ ସ୍ତରରେ ଭାଷାପ୍ରତି ଟିକିଏ ମଧ ଉଦାର ମନୋଭାବ ନାହିଁ । ସରକାରୀ ସ୍ତରରେ ଯଦି ସକାରାତ୍ମକ ମାନସିକତାରେ ଭାଷାପ୍ରତି ସ୍ୱତନ୍ତ୍ର ବିଚାର କରାଯାଏ, ତାହେଲେ ନିଶ୍ଚିତ ଭାବରେ କିଞ୍ଚିତ ପରିବର୍ତ୍ତନ ହେବ ।

ଶବ୍ଦ ଆହରଣରେ ଆମ ଭାଷା ବହୁ ପଛରେ । ପଶ୍ଚିମ ଓଡ଼ିଶାର ଆଞ୍ଚଳିକ ଭାଷା, ଦକ୍ଷିଣ ଓଡ଼ିଶାର ଆଞ୍ଚଳିକ ଭାଷା ବା ଉତ୍ତର ଓଡ଼ିଶାର ଆଞ୍ଚଳିକ ଭାଷାରୁ ସବୁଠାରୁ ଅଧିକ ଆଦିବାସୀ ବଣପାହାଡ଼ ଘେରା ଅଞ୍ଚଳରେ ବାସ

କରନ୍ତି । ବିଭିନ୍ନ ପ୍ରକାର ଆଦିବାସୀଙ୍କର ସ୍ୱତନ୍ତ୍ର ଭାଷା ରହିଛି । ଏହି ଭାଷାଗୁଡିକରୁ ମଧ୍ୟ ଶବ୍ଦ ଗ୍ରହଣ କରାଯାଇ ପାରନ୍ତା । କିନ୍ତୁ ଆମ ଚିନ୍ତାଧାରା ନ୍ୟୁନ । କାଳେ ଆମେ ଆଦିବାସୀ ହୋଇଯିବା । କିନ୍ତୁ ଆଜି ବିଚାର କରିବାକୁ ହେବ । ଆଜିର ଆବଶ୍ୟକତା ଅନୁଯାୟୀ ତର୍ଜମା କରି ଆମର ସଂକୁଚିତ ଚିନ୍ତାଧାରାକୁ ପ୍ରସାରିତ କରିପାରିଲେ ଆମ ଓଡ଼ିଆ ଭାଷା ଆହୁରି ସମୃଦ୍ଧ ହୋଇପାରିବ । ବିଶ୍ୱର ପ୍ରତ୍ୟେକ ସମୃଦ୍ଧଶାଳୀ ଭାଷା ଆହଣରେ ରୁଦ୍ଧିମନ୍ତ ହୋଇଥାଏ । ଏଠାରେ ଇଂରାଜୀ ଭାଷାକୁ ବିଚାର କରାଯାଇପାରେ । ଇଂରାଜୀ ଭାଷା କୋଷରେ ପୃଥିବୀର ବିଭିନ୍ନ ପ୍ରାନ୍ତର କିଛି ବସ୍ତୁ କୌଶଳ ଇତ୍ୟାଦିର ନୂତନ ଶବ୍ଦଗୁଡିକୁ ଅଦ୍ୟାବଧି ଗ୍ରହଣ କରାଯାଉଛି । ଏହାକୁ ପାଶ୍ଚାତ୍ୟ ଭାଷା ସମୀକ୍ଷାରେ ଭାଷାର ଉନ୍ନତିକରଣ କୌଶଳ କୁହାଯାଇଥାଏ । ତେଣୁ ରାଜ୍ୟ ସରକାରଙ୍କ ଶିକ୍ଷା ବିଭାଗ ଏବଂ ଭାଷାକୁ ସମୃଦ୍ଧ କରିବା ପାଇଁ ସଂସ୍କୃତି ବିଭାଗରେ ଯେଉଁ ଭାଷାବିତ୍, ଶିକ୍ଷାବିତ୍ ଓ ବୁଦ୍ଧିଜୀବୀମାନେ ଓଡ଼ିଶା ସରକାରାଙ୍କ ଅଧୀନରେ କର୍ମରତ, ସେମାନଙ୍କୁ ଯଦି ସରକାର ବ୍ୟବହାର କରି ଓଡ଼ିଆ ଭାଷାରେ ଡାକ୍ତରୀ ବିଦ୍ୟା, ଆଇନବିଦ୍ୟା, ବୈଷୟିକ ଜ୍ଞାନକୌଶଳ, ଗଣିତ, ବିଜ୍ଞାନ, ବାଣିଜ୍ୟ ଆଦି କ୍ଷେତ୍ରରେ ବ୍ୟବହାର ହେଉଥିବା ବିଭିନ୍ନ ଇଂରାଜୀ ଶବ୍ଦ ଓ ଭାଷାର ସଠିକ୍ ଓ ସହଜରେ ଓଡ଼ିଆ ଭାଷାରେ ଅନୁବାଦ କରାଇ ଛାତ୍ରଛାତ୍ରୀମାନଙ୍କ ମନରେ ଆଗ୍ରହ ସୃଷ୍ଟି କରାଇବାର ପ୍ରୟାସ ହେବା ଉଚିତ୍ । ଇଂରାଜୀ ଭାଷାରେ ମାତ୍ର ୨୬ ଗୋଟି ଅକ୍ଷର ଅଛି । କିନ୍ତୁ ତାର ବ୍ୟାକରଣ, ବନାନ ଓ ଉଚ୍ଚାରଣ ଏତେ ସହଜ ଭାବରେ ତିଆରି କରାଯାଇଛି ଯେ, ଯେକୌଣସି ବ୍ୟକ୍ତି ସେହି ଭାଷାକୁ ଶିଖିବା ପାଇଁ ସହଜ ବୋଧ ମନେ କରନ୍ତି । ଠିକ୍ ସେହିପରି ଆମ ଓଡ଼ିଆ ଭାଷାକୁ ସହଜ ଓ ସରଳ କରିପାରିଲେ ଏହା ସର୍ବଜନାଦୃତ ଓ ବ୍ୟବହାର ଯୋଗ୍ୟ ହୋଇପାରିବ । ଭାରତରେ ଅନେକ ଭାଷା ନିଜ ଭାଷାକୁ ସମୃଦ୍ଧ କରିବା ପାଇଁ ସଂସ୍କୃତ, ବିଭିନ୍ନ ଆଦିବାସୀ ଭାଷା, ହିନ୍ଦୀ ଏପରିକି ଅନ୍ୟ ରାଜ୍ୟମାନଙ୍କର ଭାଷାରୁ ଅନେକ ଶବ୍ଦ ନିଜ ଭାଷାରେ ସଂଯୋଗ କରି ନିଜ ଭାଷାକୁ ସମୃଦ୍ଧ କରି ପାରିଛନ୍ତି । ଆମେ କେବଳ ଓଡ଼ିଆ କହିଲେ ଆମ ଭାଷାର ସମୃଦ୍ଧ ହୋଇ ପାରିବ ନାହିଁ । ବରଂ ଏଥିପ୍ରତି ନିଷ୍ଠା ଓ ସମ୍ମାନର ସହ ବିଶେଷ ଭାବେ ଠିକ୍ ଭୁଲ ବିଚାର କରି ନୂତନ ଚିନ୍ତାଧାରାଗୁଡିକୁ ଗ୍ରହଣ କରି ଓଡ଼ିଆ ଭାଷାକୁ ସମୃଦ୍ଧ କରିବାକୁ ଚେଷ୍ଟା କଲେ ଆମେ ଯଥାର୍ଥ ଭାବେ ଓଡ଼ିଆ ଭାଷାର ମାନବୃଦ୍ଧିରେ ସହାୟକ ହୋଇପାରିବା ।

ଭାଷା ପ୍ରସାରଣ ତଥା ସମୃଦ୍ଧିକରଣର ଏକ ଦିଗ ହେଉଛି ଗଣମାଧ୍ୟମ । ସମ୍ବାଦପତ୍ର, ଦୂରଦର୍ଶନ, ରେଡ଼ିଓ, ଚଳଚ୍ଚିତ୍ର ଆଦି ହେଉଛି ଗଣମାଧ୍ୟମର ମୁଖ୍ୟ ଅଙ୍ଗ । ଭାଷା ଏଗୁଡିକ ମାଧ୍ୟମରେ ମଧ୍ୟ ବିକାଶ ଲାଭ କରିଥାଏ । କିଛି ଆମ ଗଣମାଧ୍ୟମଗୁଡିକ ଆଧୁନିକୀକରଣ ନାଁରେ ଏମିତି ବିକଳାଙ୍ଗ ହୋଇଯାଉଛି ଯେ ତାହା ଆମ ଧାରଣା ବାହାରେ । ସଂପ୍ରତି ସମ୍ବାଦପତ୍ରଗୁଡିକରେ ବ୍ୟବହୃତ ଭାଷା ତୀକ୍ଷ୍ଣ ଏକନିଷ୍ଠ ନୁହେଁ କି ଲୌକିକ ମଧ୍ୟ ନୁହେଁ । ଖାଲି ଶିଥିଳ ଓ ଖାମଖିଆଲି ଭାବେ ବ୍ୟବହୃତ । ଦିନଥିଲା ଓଡ଼ିଆ ସମ୍ବାଦପତ୍ର ବହୁ ନୂଆଶବ୍ଦ ଓଡ଼ିଆ ଭାଷାକୁ ଆଣୁଥିଲେ । 'ରାଜ୍ୟପାଳ', 'ଲୋକପାଳ', 'ଜିଲ୍ଲାପାଳ' ପ୍ରଭୃତି ଶବ୍ଦଗୁଡିକ ଆମକୁ କିଏ ଦେଇଥିଲା ? ଏଇ ସମ୍ବାଦପତ୍ର । ବର୍ତ୍ତମାନ ଓଡ଼ିଶାରେ କେତେ ଯେ ସମ୍ବାଦପତ୍ର ପ୍ରକାଶ ପାଇଲାଣି ଏବଂ ପ୍ରତିଦିନ ଏହି ସମ୍ବାଦପତ୍ରଗୁଡିକରେ ବହୁ ନଉତନ ଶବ୍ଦର ସମ୍ଭାର ଦେଖିବାକୁ ମିଳୁଛି । କିନ୍ତୁ ସଠିକ୍ ଶୈଳୀରେ ଓ ଢ଼ଙ୍ଗରେ ସମ୍ବାଦ ପରିବେଷଣ ମାଧ୍ୟମରେ ଭାଷାର ବିକାଶ ହୋଇପାରୁ ନାହିଁ । ଦୂରଦର୍ଶନ, ରେଡ଼ିଓ, ଚଳଚ୍ଚିତ୍ରଗୁଡିକରେ ମଧ୍ୟ ଓଡ଼ିଆ ଭାଷାର ଦୁର୍ଦ୍ଦଶା ସେଇଆ । ବିଶେଷ କରି ରେଡ଼ିଓ ଓ ଦୂରଦର୍ଶନରେ ସଂଯୋଜନା କାର୍ଯ୍ୟକ୍ରମରେ କି ଧରଣର ଭାଷା ବ୍ୟବହୃତ ହୁଏ ? ଓଡ଼ିଆ, ଇଂରାଜୀ, ହିନ୍ଦୀ, ବଙ୍ଗାଳୀ ଆଦି ସବୁ ମିଶ୍ରଣର ଏକ ଉଭଟ ସଂକଟ ଭାଷା ଆମେ ଶୁଣୁ । ଆମେ ଆମ ଭାଷା, ସଂସ୍କୃତିକୁ ସମୃଦ୍ଧ କରିବାକୁ ଯାଇ କେମିତି ବିକଳାଙ୍ଗ କରି ଦେଉଛେ, ଏହାହିଁ ତାର ଜ୍ୱଳନ୍ତ ଉଦାହରଣ ।

ଓଡ଼ିଆ ଭାଷା ଏହିଭଳି ଏକ ସଂକଟ ସମୟ ଦେଇ ଗତି କରୁଥିବା ବେଳେ ନିକଟ ଅତୀତରେ କେତେଜଣ ଭାଷାତତ୍ତ୍ୱବିତ୍ ନିଜର ଅକ୍ଲାନ୍ତ ପରିଶ୍ରମ ବଳରେ ଗବେଷଣା କରି ଏହି ଭାଷା (ଓଡ଼ିଆ)ର ଶାସ୍ତ୍ରୀୟ ମାନ୍ୟତା ପାଇଁ କେନ୍ଦ୍ର ସରକାରଙ୍କୁ ଯେଉଁ ସୁପାରିସ୍ କରିଛନ୍ତି, ତାହା ନିଶ୍ଚୟ ଆମ ପାଇଁ ଗୌରବର କଥା । କିନ୍ତୁ ଆମକୁ ଅନେକ କିଛି କରିବାର ଅଛି । ପ୍ରଥମେ ଆମକୁ ମୂଳସ୍ତରକୁ ଗୁରୁତ୍ୱ ଦେବାକୁ ପଡିବ । ପ୍ରତ୍ୟେକ ଲୋକଙ୍କର ମାନସିକତାରେ ସଚେତନତା ଆଣିବା ସହିତ ଭୁଲଧାରଣାକୁ ଦୂର କରିବାକୁ ହେବ । ସରକାରୀ ହେଉ ଅବା ବେସରକାରୀ ପ୍ରତ୍ୟେକ ଶିକ୍ଷାନୁଷ୍ଠାନମାନଙ୍କରେ ପଞ୍ଚମ ଶ୍ରେଣୀ ପର୍ଯ୍ୟନ୍ତ ପିଲାମାନେ କେବଳ ଓଡ଼ିଆ ଭାଷାରେ ଶିକ୍ଷା ଅଧ୍ୟୟନ କରିବେ । ପ୍ରତି ଜିଲ୍ଲାମାନଙ୍କରେ ଗୋଟିଏ ଗୋଟିଏ ଭାଷା, ଅନୁଷ୍ଠାନ ଗଢ଼ା ହେଉ । ଏହି ଅନୁଷ୍ଠାନମାନଙ୍କରେ ଭାଷାବିତ୍‌ମାନେ ଉପଦେଷ୍ଟା ହେବେ । ଭାଷା ବିଜ୍ଞାନୀ, ଭାଷା ଶାସ୍ତ୍ରୀ, ଭାଷା ବିଶାରଦମାନେ ସେମାନଙ୍କୁ ଦିଗ୍‌ଦର୍ଶନ ଦେବେ । ସବୁଠାରୁ ଗୁରୁତ୍ୱ କଥା ହେଉଛି ସକଳ ଭାଷାନୁଷ୍ଠାନ ସମାଜ ଓ ଶିକ୍ଷାନୁଷ୍ଠାନ ସହିତ ଅଙ୍ଗାଙ୍ଗୀ ଭାବରେ ଜଡ଼ିତ ରହି ଭାଷାର ବିକାଶ ନିମିତ୍ତ ଗୁରୁଦାୟିତ୍ୱ ବହନ କରିବେ । ଖାଲି ଓଡ଼ିଆ ଭାଷାର ସୁରକ୍ଷା, ବ୍ୟାପକ ପ୍ରଚଳନ ଓ ବିକାଶ ନିମିତ୍ତ ଆଇନ ଗଢ଼ିଦେଲେ ହେବନାହିଁ । ଭାଷାକୁ ଆଧୁନିକ ସମାଜ ଉପଯୋଗୀ କଲେ ଓଡ଼ିଆ ଭାଷା ନିଶ୍ଚିତ ଭାବେ ତିଷ୍ଠି ରହିବ । ଏଥିରେ ସନ୍ଦେହ ନାହିଁ ।

ଓଡ଼ିଆ ବିଭାଗ
ରେଭେନ୍ସା ବିଶ୍ୱବିଦ୍ୟାଳୟ, କଟକ



# ସମ୍ବଲପୁରରେ ଓଡ଼ିଆ ଭାଷା ଆନ୍ଦୋଳନ ଓ ଭାଷାପ୍ରେମୀ ଶ୍ରୀପତି ମିଶ୍ର

ଶିବ ପ୍ରସାଦ ତ୍ରିପାଠୀ

ଶିମଳା ଯାତ୍ରା ପୁସ୍ତକର ପ୍ରଣେତା, ସୁସାହିତ୍ୟିକ, ସାମ୍ବାଦିକ ତଥା ସମ୍ବଲପୁରରେ ଓଡ଼ିଆ ଭାଷା ସୁରକ୍ଷା ଆନ୍ଦୋଳନର ସାରଥି ଶ୍ରୀପତି ମିଶ୍ର ଜଣେ ଅନନ୍ୟ ସାଧାରଣ ପ୍ରତିଭାଧର ଏବଂ ଅବିସ୍ମରଣୀୟ ବ୍ୟକ୍ତିତ୍ୱର ଅଧିକାରୀ ଥିଲେ । ଏହି ପୁସ୍ତକ ପ୍ରଣୟନ କରି ସେ ସମ୍ବଲପୁର ଇତିହାସରେ ଏକ ନୂତନ ଅଧ୍ୟାୟ ସନ୍ନିବେଶିତ କରିଛନ୍ତି । ତଦାନୀନ୍ତନ ବ୍ରିଟିଶ ଶାସନାଧୀନ ସମ୍ବଲପୁର ଭୂଖଣ୍ଡ ଓ ବିଭିନ୍ନ ତୀର୍ଥସ୍ଥାନ ସମ୍ବନ୍ଧରେ ଅତ୍ୟନ୍ତ ସାବଲୀଳ, ସୁପାଠ୍ୟ ଏବଂ ଗତିଶୀଳ ବର୍ଣ୍ଣନା ମାଧ୍ୟମରେ ସେ ଏକ ଆକର୍ଷଣୀୟ ପୃଷ୍ଠଭୂମି ପ୍ରସ୍ତୁତ କରି ନୂତନ ଗବେଷଣାର ପଥ ଉନ୍ମୁକ୍ତ କରିଛନ୍ତି ।

### ଜନ୍ମ, ପରିବାର ଓ ଶିକ୍ଷା

ଶ୍ରୀପତି ମିଶ୍ର ୧୮୭୩ରେ ସମ୍ବଲପୁର ସହରର ପଟ୍ଟନାୟକ ପଡ଼ାରେ ଉତ୍କଳୀୟ ବ୍ରାହ୍ମଣ ସଂପ୍ରଦାୟର ଏକ ସୁଖ୍ୟାତ ପରିବାରରେ ଜନ୍ମଗ୍ରହଣ କରିଥିଲେ । ତାଙ୍କ ପିତାଙ୍କର ନାମ ବଳରାମ ମିଶ୍ର ଏବଂ ମାତାଙ୍କର ନାମ କଉଡ଼ି ଦେବୀ । ବଳରାମ ମିଶ୍ର ଜଣେ ସୁପଣ୍ଡିତ ଓ ବିଦ୍ୱାନ ଥିଲେ । ସେ ତତ୍କାଳୀନ ଚନ୍ଦ୍ରପୁର ଜମିଦାର ବଂଶର କୁଳପୁରୋହିତ ଭାବରେ ଦୀର୍ଘକାଳ ପର୍ଯ୍ୟନ୍ତ ଦାୟିତ୍ୱ ନିର୍ବାହ କରି ସୁନାମ ଓ ପ୍ରଶଂସା ଅର୍ଜନ କରିଥିଲେ । ମାତା ପାଞ୍ଚକଉଡ଼ି ଦେବୀ ସୁନାମଧନ୍ୟ ପଣ୍ଡିତ ଚିନ୍ତାମଣି ନନ୍ଦ ବିଦ୍ୟାଭୂଷଣଙ୍କ କନ୍ୟା । ବଳରାମ ମିଶ୍ରଙ୍କ ଜ୍ୟେଷ୍ଠପୁତ୍ର ଶ୍ରୀପତି ମିଶ୍ରଙ୍କ ବିବାହ ସମ୍ବଲପୁର ସହରର ନନ୍ଦପଡ଼ା ନିବାସୀ ବିଶିଷ୍ଟ ଜ୍ୟୋତିର୍ବିଦ ପଣ୍ଡିତ ଭାଗୀରଥି ମିଶ୍ରଙ୍କ କନ୍ୟା ଦ୍ରୌପଦୀଙ୍କ ସହ ହୋଇଥିଲା । ଶ୍ରୀପତିଙ୍କର ଦୁଇଭାଇ ଥିଲେ ଦାଶରଥି ମିଶ୍ର ଏବଂ ଦୀନବନ୍ଧୁ ମିଶ୍ର । ତାଙ୍କର ଏକମାତ୍ର ଭଉଣୀଙ୍କର ନାମ ଥିଲା ଶ୍ରୀମତୀ ମିଶ୍ର । ତୁଳଣ୍ଡିର ଗୌନ୍ତିଆ ପୁରୁଷୋତ୍ତମଙ୍କ ସହିତ ତାଙ୍କର ବିବାହ ହୋଇଥିଲା । ଶ୍ରୀପତି ମିଶ୍ରଙ୍କର ସାତଜଣ ପୁତ୍ରକନ୍ୟା ଥିଲେ । ସେମାନଙ୍କର ନାମ ଥିଲା ସୌଦାମିନୀ, ପ୍ରଫୁଲ୍ଲ କୁମାର, ବିପିନ ବିହାରୀ, କୁମୁଦିନୀ, ବିନୋଦିନୀ, କିଶୋରୀ ମୋହନ ଏବଂ ଦେବହୂତି । ଶ୍ରୀପତି ମିଶ୍ରଙ୍କ ପୂର୍ବଜଗଣ କୁଳପୁରୋହିତ, ଜ୍ୟୋତିର୍ବିଦ୍ୟା ବିଶାରଦ ତଥା ବିଦ୍ୱାନ ଥିଲେ । ସେହିମାନଙ୍କ ପ୍ରତ୍ୟକ୍ଷ ଅଥବା ପରୋକ୍ଷ ପ୍ରଭାବରେ ଶ୍ରୀପତି ମିଶ୍ର ଜଣେ ସୁଲେଖକ ଓ ଚିନ୍ତାନାୟକ ଭାବରେ ପ୍ରତିଭାତ ହୋଇଥିଲେ ।

ସମ୍ବଲପୁର ଜିଲ୍ଲା ସ୍କୁଲରୁ ଶ୍ରୀପତି ମିଶ୍ର ୧୮୯୧ରେ ଏଣ୍ଟ୍ରାନ୍ସ ପରୀକ୍ଷାରେ କୃତିତ୍ୱର ସହ ଉତ୍ତୀର୍ଣ୍ଣ ହୋଇଥିଲେ । ସେହିବର୍ଷ ସହପାଠୀ ବାଳମୁକୁନ୍ଦ ବହିଦାର ଏବଂ ଚନ୍ଦ୍ରଶେଖର ବେହେରା ମଧ୍ୟ ଏଣ୍ଟ୍ରାନ୍ସ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇଥିଲେ । ଏଣ୍ଟ୍ରାନ୍ସ ପରୀକ୍ଷା ଫଳରେ ତାଙ୍କର ନାମ ଶ୍ରୀପତି ବଳରାମ ମିଶ୍ର ଲେଖା ଥିଲା ।

ଏହି ସ୍କୁଲ ଅଧୁନା ଚନ୍ଦ୍ରଶେଖର ବେହେରା ଜିଲ୍ଲା ସ୍କୁଲ ନାମରେ ନାମିତ । ଉଚ୍ଚଶିକ୍ଷା ବ୍ୟବସ୍ଥା ଉପଲବ୍ଧ ନହେବାରୁ ଶ୍ରୀପତି ମିଶ୍ର ସୋନପୁରରେ ଶିକ୍ଷା ପରିଦର୍ଶକ ଭାବରେ କାର୍ଯ୍ୟାରମ୍ଭ କରିଥିଲେ । ସେସମୟରେ ଶିକ୍ଷା ଓ ଶିକ୍ଷକର ମାନ ସୁପ୍ରତିଷ୍ଠିତ ଥିଲା । କିଛିକାଳ ଏହି କାର୍ଯ୍ୟ

ନିର୍ବାହ କରି ସେ ଲୋକପ୍ରିୟତା ଅର୍ଜନ କରିଥିଲେ । ସମ୍ବଲପୁର ଭାଷା ଆନ୍ଦୋଳନର ନେତାମାନଙ୍କର ଆହ୍ୱାନ ଓ ନିମନ୍ତ୍ରଣ କ୍ରମେ ସେ ଚାକିରି ପରିତ୍ୟାଗ କରି ଭାଷା ଆନ୍ଦୋଳନରେ ସାମିଲ ହୋଇଥିଲେ ।

### ଶିମଳା ଯାତ୍ରା: ଏକ ଅନବଦ୍ୟ କୃତି

ଶ୍ରୀପତି ମିଶ୍ରଙ୍କ ଦ୍ୱାରା ପ୍ରଣୀତ ଶିମଳା ଯାତ୍ରା ପୁସ୍ତକ ଏକ ଉଚ୍ଚକୋଟୀର ଭ୍ରମଣ ବୃତ୍ତାନ୍ତ ତଥା ଅନବଦ୍ୟ ସାହିତ୍ୟକୃତି । ଏହି ବର୍ଣ୍ଣାଢ଼୍ୟ ସାହିତ୍ୟକୃତିରେ ସମ୍ବଲପୁରର ଭାଷା ସୁରକ୍ଷା ଆନ୍ଦୋଳନର ଆଦ୍ୟ ଇତିହାସ ସ୍ଥାନିତ । ଅମର କବି ଗଙ୍ଗାଧର ଶୀର୍ଷକ ପ୍ରବନ୍ଧରେ ଆସାମର ମାନ୍ୟବର ରାଜ୍ୟପାଳ ସୁସାହିତ୍ୟିକ ଜାନକୀବଲ୍ଲଭ ପଟ୍ଟନାୟକ ସମ୍ବଲପୁରରେ ଓଡ଼ିଆ ଭାଷା ସୁରକ୍ଷା ଆନ୍ଦୋଳନ ସମ୍ପର୍କରେ ଅବତାରଣା କରିଛନ୍ତି । ସେ ଲେଖିଛନ୍ତି, ସମ୍ବଲପୁରରେ ଓଡ଼ିଆ ଭାଷାର ପୁନଃପ୍ରଚଳନ ପାଇଁ ଯେଉଁ ବୀର ଯୋଦ୍ଧାମାନେ କାର୍ଯ୍ୟ କରୁଥିଲେ, ସେମାନଙ୍କ ମଧ୍ୟରୁ ଚାରିଜଣ ସମ୍ବଲପୁରର ଏକ ଜନସଭାରେ ମନୋନୀତ ହୋଇ ନାଗପୁର ଯାଇଥିଲେ, ତତ୍କାଳୀନ ଲାଟ୍‌ଙ୍କ ସହିତ ଆଲୋଚନା କରିବା ପାଇଁ । କିନ୍ତୁ ସେତିକିରେ ସନ୍ତୁଷ୍ଟ ନହୋଇ ସେମାନେ ବଡ଼ଲାଟ୍ ଲର୍ଡ କର୍ଜନଙ୍କୁ ଭେଟିବା ପାଇଁ ସିମଳା ଗଲେ । ଏହି ଚାରିଜଣଙ୍କ ସହିତ ଆଉ ଜଣେ ବ୍ୟକ୍ତି ସୁଲେଖକ ଓ ଶିକ୍ଷକ ଶ୍ରୀପତି ମିଶ୍ର ମଧ ଯାଇଥିଲେ । ଏହି ପାଞ୍ଚଜଣ ହେଲେ ବିହାରୀ ଦାସ ମହନ୍ତ, ବ୍ରଜମୋହନ ପଟ୍ଟନାୟକ, ବଳଭଦ୍ର ସୂପକାର, ମଦନ ମୋହନ ମିଶ୍ର ଓ ଶ୍ରୀପତି ମିଶ୍ର । ସେମାନଙ୍କର ମନର ଭାବ ପ୍ରକାଶ କରି ଶ୍ରୀପତି ମିଶ୍ର ତାଙ୍କର ଶିମଳା ଯାତ୍ରା ପୁସ୍ତକରେ ଉଲ୍ଲେଖ କରିଛନ୍ତି, ସେସମୟର ଶିମଳା ଯାତ୍ରା ସେମାନଙ୍କ ପକ୍ଷରେ ବହୁ ଶ୍ରମ ସାପେକ୍ଷ ଓ ବ୍ୟୟ ସାପେକ୍ଷ ଥିଲା । କିନ୍ତୁ ସ୍ୱଦେଶପ୍ରେମରେ ଉଦ୍‌ବୁଦ୍ଧ ସେମାନେ ଟିକିଏ ହେଲେ ବିଚଳିତ ହୋଇନଥିଲେ । ଓଡ଼ିଆ ଭାଷା ପ୍ରତି ସେମାନଙ୍କର କିପରି ଅଭିମାନ ଶ୍ରୀପତି ମିଶ୍ରଙ୍କ ନିମ୍ନୋକ୍ତ ଉକ୍ତିରୁ ଜଣାପଡ଼େ– ସଂସାରେ ଆମମାନଙ୍କ ବିବେଚନାରେ ଯାହା ଦୁର୍ଲ୍ଲଭ, ବରଂ ତାହା ତ୍ୟାଗ କରିବୁଁ, କିନ୍ତୁ ମାତୃଭାଷାର ସୁଗଠିତ ଅଙ୍ଗାବରଣୀର ଅଞ୍ଚଳରୁ ଖଣ୍ଡିଏ ସୂତ୍ରସୁଦ୍ଧା ଛିନ୍ନ କରିବାକୁ ଦେବୁ ନାହିଁ । ଏହିଥିରୁ ଜଣାଯିବ କି ଅସୀମ ମାତୃଭାଷା ଓ ସ୍ୱଦେଶପ୍ରେମ ସେମାନଙ୍କୁ ଉଦ୍‌ବୁଦ୍ଧ କରିଥିଲା ।

ସମ୍ବଲପୁରରେ ଭାଷା ଆନ୍ଦୋଳନ ସମ୍ପର୍କିତ ଏକ ସଂକ୍ଷିପ୍ତ ତାରିଖ ବିହୀନ ଉପସ୍ଥାପନା ଏ ସଂପର୍କିତ ସମସ୍ତ ଆଲୋଚନା ଓ ଗବେଷଣାର ମୂଳଭିତ୍ତି । ଏହି କାର୍ଯ୍ୟ ସେ କରି ନଥିଲେ ସମ୍ବଲପୁରରେ ଓଡ଼ିଆ ଭାଷା ଆନ୍ଦୋଳନର ଇତିହାସ ଲୁପ୍ତପ୍ରାୟ ହୋଇଥାନ୍ତା, ଏଥିରେ ଦ୍ୱିରୁକ୍ତିର ଅବକାଶ ନାହିଁ ।

ଶ୍ରୀପତି ମିଶ୍ରଙ୍କ ବର୍ଣ୍ଣନା ଶୈଳୀ ଓ ଭାଷା ବିନ୍ୟାସ ପାଠକମାନଙ୍କର ଚିତ୍ତହରଣ ନିମନ୍ତେ ସମ୍ପୂର୍ଣ୍ଣ ଭାବରେ ସକ୍ଷମ । ଶିମଳା ଯାତ୍ରା ପୁସ୍ତକ ୧୯୦୫ରେ ଲିଖିତ ଏବଂ ୧୯୧୮ରେ ପ୍ରକାଶିତ ହୋଇଥିବା ବେଳେ ସେହି କାଳରେ ତାଙ୍କର ବଳିଷ୍ଠ ଓ ବର୍ଣ୍ଣାଢ଼୍ୟ ଭାଷା ତଥା ଶବ୍ଦ ସଂଯୋଜନା ଯୁଗପତ୍ ବିସ୍ମୟ ସୃଷ୍ଟି କରେ । ବାଗ୍ମୀ ବିଶ୍ୱନାଥ କରଙ୍କ ଦ୍ୱାରା କଟକରେ ଉତ୍କଳ ସାହିତ୍ୟ ପ୍ରେସ୍‌ରେ ମୁଦ୍ରିତ ହୋଇ ଏହି ପୁସ୍ତକ ପ୍ରକାଶ ପାଇଥିଲା ।

ଏହି କାଳଜୟୀ ପୁସ୍ତକର ପ୍ରକାଶନ ପୂର୍ବରୁ ଓଡ଼ିଆ ଭାଷା ବିକାଶର ଅନ୍ୟତମ କର୍ଣ୍ଣଧାର ମଧୁସୂଦନ ରାଓ ଏହାର ପାଣ୍ଡୁଲିପି ପାଠ କରିଥିଲେ ଓ ସ୍ୱୀୟ ଅଭିମତ ପ୍ରଦାନ କରି ଲେଖିଥିଲେ, । "have read this manuscript (simla jatra) with great pleasure. There are very few books of this class in Oriya literature and the rank in it's class which may be assigned to this book is certainly high. The descriptions are lively and picturesque and the style is lucid and spirited... I strongly recommend it's publication and hope it will have a wide circulation."

ଦୁଇବର୍ଷ କାଳ ପ୍ରକାଶିତ ମାସିକ ପତ୍ରିକା ନବଯୁଗ ସମେତ ତାଙ୍କର ଲେଖାମାନ ବିଭିନ୍ନ ପତ୍ରପତ୍ରିକାରେ ପ୍ରକାଶ

ପାଉଥିଲା । ଶିମଳା ଯାତ୍ରା ବ୍ୟତୀତ ଭ୍ରମଣ ବୃତ୍ତାନ୍ତର ପ୍ରତିବିମ୍ବ ଏବଂ ସମ୍ବଲପୁର ଅଞ୍ଚଳର ଗଡ଼ଜାତ ଶୀର୍ଷକ ଦୁଇଟି ପୁସ୍ତକ ସେ ଲେଖିଥିଲେ ମଧ୍ୟ ଶେଷୋକ୍ତ ଦୁଇଟିଯାକ ପୁସ୍ତକର ପାଣ୍ଡୁଲିପି ମଧ୍ୟ ଦୁଷ୍ପ୍ରାପ୍ୟ ।ତାଙ୍କ ରଚିତ ହରିଶ୍ଚନ୍ଦ୍ର ନାଟକ ସମ୍ବଲପୁର ରଜାବଖରୀରେ ମଞ୍ଚସ୍ଥ ହୋଇଥିଲେ ମଧ୍ୟ ପୁସ୍ତକାକାରରେ ପ୍ରକାଶିତ ହୋଇ ନଥିବା ଜଣାଯାଏ । ସେ ସମ୍ବଲପୁରର ଭାଷା ଆନ୍ଦୋଳନର ଇତିହାସକୁ ସଞ୍ଜୀବିତ କରି ରଖିପାରିଥିଲେ ମଧ୍ୟ ଅନେକ ନିଜସ୍ୱ କୃତି ଲୋପ ପାଇଗଲା, ଏହା ହିଁ ବିଡ଼ମ୍ବନା ।

### ସମ୍ବଲପୁରରେ ଭାଷା ଆନ୍ଦୋଳନ

୧୮୯୫ ଜାନୁୟାରୀ ୧୯ ତାରିଖରେ ସମ୍ବଲପୁରରେ ଓଡ଼ିଆ ଭାଷାର ଉଚ୍ଛେଦ କରାଯାଇ ହିନ୍ଦୀ ଭାଷାର ପ୍ରଚଳନ କରାଯାଇଥିଲା ଓ ବଳିଷ୍ଠ ଭାଷା ସୁରକ୍ଷା ଆନ୍ଦୋଳନର ପରିଣତି ସ୍ୱରୂପ ୧୯୦୩ରେ ଓଡ଼ିଆ ଭାଷାର ପୁନଃପ୍ରଚଳନ କରାଯାଇ ଥିଲା ।

ଏକ ଜନସଭାରେ ମନୋନୀତ ହୋଇ ମହନ୍ତ ବିହାରୀ ଦାସଙ୍କ ନେତୃତ୍ୱରେ ଏକ ୫ ଜଣିଆ ପ୍ରତିନିଧିଦଳ ବଡ଼ଲାଟ ଲର୍ଡ଼ କର୍ଜନଙ୍କ ସହ ସାକ୍ଷାତ ଓ ସ୍ମାରକପତ୍ର ପ୍ରଦାନ ନିମନ୍ତେ ଶିମଳା ଅଭିମୁଖେ ଯାତ୍ରା କଲେ । ଏହି ପ୍ରତିନିଧି ଦଳରେ ଶ୍ରୀପତି ମିଶ୍ରଙ୍କୁ ମଧ୍ୟ ସାମିଲ କରାଯାଇଥିଲା । ମହନ୍ତ ବିହାରୀ ଦାସ, ବଳଭଦ୍ର ସୂପକାର, ବ୍ରଜମୋହନ ପଟ୍ଟନାୟକ, ମଦନ ମୋହନ ମିଶ୍ର ଓ ୩୦ ବର୍ଷ ବୟସ୍କ ଯୁବକ ଶ୍ରୀପତି ମିଶ୍ର ୧୯୦୧ ସେପ୍ଟେମ୍ବର ୧୧ ତାରିଖ ଦିନ ସମ୍ବଲପୁରରୁ ଯାତ୍ରାରମ୍ଭ କରି ୧୬ ତାରିଖ ଦିନ ଶିମଳାରେ ଶ୍ରୀଗଣେଶ ଚତୁର୍ଥୀ ଦିନ ପହଞ୍ଚିଲେ ।

ଲର୍ଡ଼ କର୍ଜନ ସେହି ସମୟରେ ଶିମଳାସ୍ଥିତ ବଡ଼ଲାଟଙ୍କ ଶୈଳ ନିବାସ ଭାଇସ ରିଗାଲ ଲଜ୍‌ରେ ଅବସ୍ଥାପନ କରୁଥିଲେ । ୧୭ ତାରିଖ ଦିନ ସେମାନେ ଜାଣିବାକୁ ପାଇଥିଲେ ଯେ ଦୁଇଦିନ ପରେ ଫ୍ରେଜର୍ ସାହେବ ଏହି ସମସ୍ୟାର ଅନୁଧ୍ୟାନ ଲାଗି ସମ୍ବଲପୁର ଯାତ୍ରା କରିବେ । ଏହା ପରେ ଶିମଳାରୁ ୧୮ ତାରିଖ ଦିନ ପ୍ରତିନିଧି ଦଳ ପ୍ରତ୍ୟାବର୍ତ୍ତନ କରି ୨୪ ତାରିଖ ଦିନ ସମ୍ବଲପୁରରେ ପହଞ୍ଚିଲେ । ୧୯୦୧ର ଜନଗଣନା ରିପୋର୍ଟ ଭାଷା ଆନ୍ଦୋଳନ ପ୍ରତି ସହାୟକ ହୋଇଥିଲା । ଜୁନ ୨୭ ତାରିଖ ଦିନ ଫ୍ରେଜର ସାହେବ ସମ୍ବଲପୁରରେ ପହଞ୍ଚିଲେ ଓ ବିଭିନ୍ନ ସ୍ତରରେ ଆଲୋଚନା ପୂର୍ବକ ସମ୍ବଲପୁରରେ ଓଡ଼ିଆ ଭାଷାର ପୁନଃପ୍ରଚଳନ ନିମନ୍ତେ ସୁପାରିଶ କଲେ । ୧୯୦୨ ଜୁନ୍ ମାସରେ ସମ୍ବଲପୁରରେ ଓଡ଼ିଆ ଭାଷାର ପୁନଃପ୍ରଚଳନ ନିମନ୍ତେ ବିଜ୍ଞପ୍ତି ପ୍ରକାଶ ପାଇଲା ଏବଂ ୧୯୦୩ ଜାନୁୟାରୀ ପହିଲାରୁ ସମ୍ବଲପୁରରେ ଓଡ଼ିଶା ଭାଷା ପୁନଃ ସଂସ୍ଥାପିତ ହେବା ପରେ ୧୯୦୫ ଅକ୍ଟୋବର ୧୬ ତାରିଖ ଦିନ ବଙ୍ଗପ୍ରଦେଶ ଅନ୍ତର୍ଗତ ଓଡ଼ିଶା ଡିଭିଜନରେ ସାମିଲ ହେଲା ।

### ଫ୍ରେଜର ସାହେବ ଓ ତାଙ୍କର ଭୂମିକା

ସମ୍ବଲପୁରରେ ଓଡ଼ିଆ ଭାଷା ସୁରକ୍ଷା ଆନ୍ଦୋଳନର ସଫଳତା ସ୍ୱଳ୍ପ ଓଡ଼ିଆ ଜାଣିଥିବା ଓଡ଼ିଆ ଭାଷାପ୍ରେମୀ ଫ୍ରେଜର ସାହେବଙ୍କ ଆଗ୍ରହ ଓ ଆନ୍ତରିକତା ଯୋଗୁଁ ସମ୍ଭବ ହୋଇପାରିଥିଲା । ନଚେତ ବ୍ରିଟିଶ ଶାସନାଧୀନ କାଳରେ ଶାସକୀୟ ବା ପ୍ରଶାସନିକ ଭାଷା ବଦଳାଇ ଦେବା ସହଜ ନ ଥିଲା । ସେ ୧୯୦୧ରେ ସମ୍ବଲପୁର ଆସି ସମ୍ବଲପୁରରେ ଓଡ଼ିଆ ଭାଷାର ପୁନଃପ୍ରଚଳନ ନିମନ୍ତେ ସୁପାରିଶ କରିବା ପରେ ୧୯୦୨ରେ ଫ୍ରେଜର ପ୍ରିଣ୍ଟିଂ କମ୍ପାନୀ ଦ୍ୱାରା ଫ୍ରେଜର ପ୍ରେସ୍ ଏବଂ ଫ୍ରେଜର କ୍ଲବ ମଧ୍ୟ ପ୍ରତିଷ୍ଠିତ ହେଲା ।

ଫ୍ରେଜର ସାହେବ ନାମରେ ପରିଚିତ ସାର୍ ଏଣ୍ଡ୍ରିଉ ହେଣ୍ଡରସନ ଲିଥ୍ ଫ୍ରେଜର ୧୮୪୮ରେ ଜନ୍ମ ଗ୍ରହଣ କରିଥିଲେ । ୧୮୭୧ରେ ୨୩ ବର୍ଷ ବୟସରେ ସେ ଇଣ୍ଡିଆନ ସିଭିଲ ସର୍ଭିସ୍ (ଆଇ.ସି.ଏସ୍.) ଅଧିକାରୀ ଭାବରେ ସର୍ବପ୍ରଥମେ ବରଗଡ଼ର ସବଡିଭିଜନାଲ ଅଫିସର ଭାବରେ କାର୍ଯ୍ୟାରମ୍ଭ କରିଥିଲେ । ୧୮୮୧ରେ ଅବକାରୀ କମିଶନର ଓ ୧୮୮୭ରେ କୃଷି ନିର୍ଦ୍ଦେଶକ ପଦରେ ନିଯୁକ୍ତ ହେବା ପରେ ନାଗପୁରରେ ମଧ୍ୟପ୍ରଦେଶ (ସେଣ୍ଟ୍ରାଲ ପ୍ରଭିନ୍ସ)ର ଚିଫ୍ କମିଶନରଙ୍କ ସଚିବ ଓ ପରେ ୧୮୯୧ରେ କମିଶନର ପଦରେ ନିଯୁକ୍ତ ହୋଇଥିଲେ । ୧୮୯୮ରେ ସେ ଘରୋଇ

ବିଭାଗର କାମଚଳା ସଚିବ ଓ ୧୮୯୯ରେ ଘରୋଇ ବିଭାଗର କାମଚଳା ସଚିବ ତଥା ୧୮୯୯ରେ ମଧ୍ୟପ୍ରଦେଶର ଚିଫ୍ କମିଶନର ପଦରେ ଅଧିଷ୍ଠିତ ହୋଇଥିଲେ ।

ଫ୍ରେଜର ସାହେବ ଦି ରାଜା ଏଣ୍ଡ ରୟତ୍ ପୁସ୍ତକରେ ସମ୍ବଲପୁରବାସୀଙ୍କ ସମ୍ବନ୍ଧରେ ବହୁବିଧ ପ୍ରସଙ୍ଗର ଅବତାରଣା କରିଛନ୍ତି । ଫ୍ରେଜର ସାହେବ ଅବସର ଗ୍ରହଣ କରି ଜନ୍ମଭୂମି ଇଂଲଣ୍ଡକୁ ପ୍ରତ୍ୟାବର୍ତ୍ତନ କରିବା ପରେ ୧୯୧୯ ଫେବୃୟାରୀ ମାସ ୨୬ ତାରିଖରେ ତାଙ୍କର ପରଲୋକ ପ୍ରାପ୍ତି ଘଟିଥିଲା । ଏଥିପୂର୍ବରୁ ୧୯୧୮ରେ ଶିମଳା ଯାତ୍ରା ପୁସ୍ତକ ପ୍ରକାଶ ପାଇଥିଲା ।

ଏହି ଯାତ୍ରା ଥିଲା ଏକ ସଫଳ ଯାତ୍ରା । ଭାଷାର ସୁରକ୍ଷା ନିମନ୍ତେ ଏଭଳି କଷ୍ଟ ସ୍ୱୀକାର କରିବା ଥିଲା ବିରଳ ଘଟଣା । ଶିମଳାରେ ସମ୍ବଲପୁରର ପ୍ରତିନିଧିମାନଙ୍କୁ ଦେଖି ଚିପ୍ କମିଶନରଙ୍କ ସଚିବ ଏଚ୍.ଏ.କ୍ରମ୍ପ ସାହେବ ଆଶ୍ଚର୍ଯ୍ୟ ହୋଇଯାଇଥିଲେ । ସେମାନେ କେବଳ ତୀର୍ଥାଟନରେ ଯାଇ ନଥିଲେ କିମ୍ବା କାହାରିଠାରୁ ଗସ୍ତ ଖର୍ଚ୍ଚ ନେଇ ନଥିଲେ ।

**ଭାଷା ଆନ୍ଦୋଳନ ପରେ**

ସମ୍ବଲପୁରରେ ଭାଷା ସୁରକ୍ଷା ଆନ୍ଦୋଳନର ସଫଳତା ସମଗ୍ର ଓଡ଼ିଶାର ଆଖି ଝଲସାଇ ଦେଇଥିଲା । କଟକ ଓ ବ୍ରହ୍ମପୁର ଅଞ୍ଚଳରେ ନବୀନ ଜାଗରଣ ସୃଷ୍ଟି ହୋଇଥିଲା । ଏହି ସଫଳତା ଥିଲା ଉତ୍କଳ ସମ୍ମିଳନୀ ଗଠନର ମୂଳଉତ୍ସ । ସମ୍ବଲପୁରରେ ଓଡ଼ିଆ ଭାଷାର ପୁନଃପ୍ରଚଳନ ପରେ ଉତ୍କଳ ସମ୍ମିଳନୀ ଗଠିତ ହୋଇଥିଲା ଓ ଏହି ସଂଗଠନ ଓଡ଼ିଆ ଭାଷାର ସୁରକ୍ଷା ତଥା ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ଦିଗରେ ବିଭିନ୍ନ କାର୍ଯ୍ୟକ୍ରମ ଗ୍ରହଣ କରିଥିଲା । ସମ୍ବଲପୁରର ନିଜସ୍ୱ ନେତୃତ୍ୱରେ ପରିଚାଳିତ ଏହି ଆନ୍ଦୋଳନ ସମ୍ପର୍କରେ ଡକ୍ଟର ହରେକୃଷ୍ଣ ମହତାବ ଲେଖିଛନ୍ତି ସମ୍ବଲପୁରରେ ଓଡ଼ିଆ ଭାଷାର ପ୍ରବର୍ତ୍ତନ ପାଇଁ ସମ୍ବଲପୁର ନିଜେ ହିଁ ନେତୃତ୍ୱ ନେଇଛି । ସେ ନେତୃତ୍ୱ ଅନ୍ୟ କେଉଁଆଡୁ ଆସିନାହିଁ । ଏହା ହିଁ ଓଡ଼ିଆ ଜାତିର ଇତିହାସରେ ସମ୍ବଲପୁରର ଗୌରବମୟ ସ୍ଥାନ ।

ଶ୍ରୀପତି ମିଶ୍ରଙ୍କ କୃତଜ୍ଞତା ଭାବର ବହୁଳ ନିଦର୍ଶନ ଶିମଳା ଯାତ୍ରା ପୁସ୍ତକରେ ପ୍ରକାଶ ପାଇଛି । ବ୍ରଜମୋହନ ପଟ୍ଟନାୟକ ୧୯୦୭ରେ କଲିକତା କୃଷି ଶିଳ୍ପ ପ୍ରଦର୍ଶନୀକୁ ସମ୍ବଲପୁର ଜିଲ୍ଲାବୋର୍ଡ଼ର ପ୍ରତିନିଧି ଭାବରେ ଯାଇଥିଲେ । ସେଠାରେ ସେ ବି ସୂଚିକା ରୋଗରେ ଆକ୍ରାନ୍ତ ହୋଇ ଇହଲୀଳା ସମ୍ବରଣ କରିଥିଲେ । ଶ୍ରୀପତି ମିଶ୍ର ଶିମଳା ଯାତ୍ରା ପୁସ୍ତକକୁ ବ୍ରଜମୋହନ ପଟ୍ଟନାୟକଙ୍କ ସ୍ମୃତି ଉଦ୍ଦେଶ୍ୟରେ ଉତ୍ସର୍ଗ କରିଥିଲେ ଏବଂ ପରଲୋକଗତ ବ୍ରଜମୋହନ ପଟ୍ଟନାୟକଙ୍କ ପ୍ରତି ଶୀର୍ଷକରେ ଏକ ମର୍ମସ୍ପର୍ଶୀ ଉତ୍ସର୍ଗପତ୍ର ପ୍ରକାଶ କରିଥିଲେ ।

ଉଭୟ ଇଂରାଜୀ ଏବଂ ଓଡ଼ିଆ ଭାଷାରେ ତାଙ୍କର ବ୍ୟୁତ୍ପତ୍ତି ରହିଥିଲା । ଭାଷା ଆନ୍ଦୋଳନ ପରବର୍ତ୍ତୀ କାଳରେ ମଧ୍ୟ ସେ ନିୟମିତ ଲେଖାଲେଖି କରୁଥିଲେ ଓ ସଭାସମିତିରେ ଯୋଗଦାନ କରୁଥିଲେ । ଏହି ସମୟରେ ଶ୍ରୀପତି ମିଶ୍ର ବହୁ ସଂଘର୍ଷମୟ, ନିଃସ୍ୱାର୍ଥପର ଓ ନିରଳସ କାର୍ଯ୍ୟକଳାପରେ ଜଡ଼ିତ ରହି ସାମାଜିକ ଦାୟିତ୍ୱ ନିର୍ବାହ କରିବା ସହ ଆଜୀବନ ସାଧନାର ସୋପାନରେ ରହିଲେ । ସେ ବିଭିନ୍ନ ଅଞ୍ଚଳ ପରିଭ୍ରମଣ କରି ଜ୍ଞାନାର୍ଜନ ଓ ସାମାଜିକ ସ୍ଥିତି ସମ୍ପର୍କରେ ଅନୁଧ୍ୟାନ କରିଥିଲେ । ଏହି ସମୟରେ ତାଙ୍କର ଅନେକ ସଂକ୍ଷିପ୍ତ ଭ୍ରମଣ ବୃତ୍ତାନ୍ତ ଅଧୁନା ଲୁପ୍ତ ବିଭିନ୍ନ ପତ୍ରିକାରେ ପ୍ରକାଶ ପାଇଥିଲା ।

୧୯୦୫ ସେପ୍ଟେମ୍ବର ମାସରେ ସମ୍ବଲପୁରରେ ଉତ୍କଳ ଦର୍ପଣ ପ୍ରେସ ପ୍ରତିଷ୍ଠିତ ହୋଇଥିଲା । ପଣ୍ଡିତ ଶୁକଦେବ ପଣ୍ଡା, ଶ୍ୟାମସୁନ୍ଦର ପୂଜାରୀ, ନଟବର ପୂଜାରୀ ଓ ମହନ୍ତ ବିହାରୀ ଦାସଙ୍କ ଜ୍ୟେଷ୍ଠଭ୍ରାତା ବଳରାମ ତ୍ରିପାଠୀ ଅଂଶଧନ କ୍ରୟପୂର୍ବକ ଏହି ପ୍ରେସ୍ ପ୍ରତିଷ୍ଠା କରିଥିଲେ । ସେହି ସମୟରେ ଫ୍ରେଜର ପ୍ରିଣ୍ଟିଂ କମ୍ପାନୀ ସମ୍ବଲପୁରର ଏକମାତ୍ର ମୁଦ୍ରଣାଳୟ ଥିଲା । ଉତ୍କଳ ଦର୍ପଣ ପ୍ରେସରୁ ଶ୍ରୀପତି ମିଶ୍ରଙ୍କ ସମ୍ପାଦନାରେ ପ୍ରଥମ ଦ୍ୱିଭାଷୀ ପତ୍ରିକା ଉତ୍କଳ ଦର୍ପଣ ପ୍ରକାଶ ପାଇଲା । ଏହି ପତ୍ରିକାରେ ଇଂରାଜୀ ଏବଂ ଓଡ଼ିଆ ଭାଷାରେ ଲେଖା ଓ ସମ୍ବାଦମାନ ପ୍ରକାଶ ପାଉଥିଲା । ସମ୍ବଲପୁରର ପ୍ରଥମ ସାପ୍ତାହିକ ଭାବରେ

ଶ୍ରୀପତି ମିଶ୍ର ପରିଗଣିତ ହେଉଥିଲେ । ଜଣେ ନିର୍ଭୀକ ଓ ଦକ୍ଷ ସାମ୍ବାଦିକ ଭାବରେ ସେ ପ୍ରଶଂସା ଭାଜନ ହୋଇଥିଲେ । ଶ୍ରୀପତି ମିଶ୍ର ଅତ୍ୟନ୍ତ ଦୁଃସାହସୀ, ପରାକ୍ରମୀ ତଥା ସ୍ୱାଭିମାନୀ ଥିଲେ ।

ବହୁ ଘାତ ପ୍ରତିଘାତ ମଧ୍ୟରେ ୧୯୦୫ରୁ ୧୯୦୮ ପର୍ଯ୍ୟନ୍ତ ଉତ୍କଳ ଦର୍ପଣ ନିୟମିତ ଭାବରେ ପ୍ରକାଶ ପାଇଥିଲା । ତେବେ ଅନେକ ମାଲିମକଦ୍ଦମାରେ ଛନ୍ଦି ହୋଇଗଲେ ଶ୍ରୀପତି ମିଶ୍ର । ଉପଯୁକ୍ତ ଓ ଆବଶ୍ୟକୀୟ ପ୍ରୋତ୍ସାହନ ଅଭାବରୁ କ୍ରମେ ବନ୍ଦ ହୋଇଗଲା ଉତ୍କଳ ଦର୍ପଣ । ଜନସାଧାରଣଙ୍କୁ ଆଉ ସମାଜର ଛବି ଦେଖାଇ ପାରିଲା ନାହିଁ ।

ଏହାପରେ ସେ ଗାଙ୍ଗପୁର ଶାସନର ନିମନ୍ତ୍ରଣ ଓ ଆଗ୍ରହ କ୍ରମେ ସୁନ୍ଦରଗଡ଼ ଯାଇ ଶିକ୍ଷକ ଭାବରେ କାର୍ଯ୍ୟ କଲେ । ପୂର୍ବରୁ ସୋନପୁରର ଶିକ୍ଷା ପରିଦର୍ଶକ ଭାବରେ ଶିକ୍ଷା କ୍ଷେତ୍ରରେ ତାଙ୍କର ସୁନାମ ରହିଥିଲା । ଏହି ସମୟରେ ସେ ସୁନ୍ଦରଗଡ଼ରେ ଅବସ୍ଥାନପୂର୍ବକ ଗାଙ୍ଗପୁରର ନାବାଳକ ରାଜାଙ୍କର ଗୃହଶିକ୍ଷକ ଦାୟିତ୍ୱ ନିର୍ବାହ କରୁଥିଲେ । ଏହି କାଳରେ ସେ ବହୁ ଗଡ଼ଜାତ ଅଞ୍ଚଳ ପରିଭ୍ରମଣ କରି ପ୍ରଶାସନିକ ବ୍ୟବସ୍ଥା ଓ ଜନଜୀବନ ବିଶେଷତଃ ଆଦିବାସୀ ଜୀବନଯାତ୍ରା ସମ୍ପର୍କିତ ପ୍ରତ୍ୟକ୍ଷ ଜ୍ଞାନ ଅର୍ଜନ କରିଥିଲେ । ଗାଙ୍ଗପୁର ରାଜ୍ୟରେ ପ୍ରାଥମିକ ଶିକ୍ଷାର ବିକାଶ କ୍ଷେତ୍ରରେ ସେ ବହୁବିଧ କାର୍ଯ୍ୟ କରିଥିଲେ ।

୧୯୨୨ରେ ସମ୍ବଲପୁରରେ ଶ୍ରୀପତି ମିଶ୍ରଙ୍କ ପିତା ବଳରାମ ମିଶ୍ରଙ୍କ ଦେହାନ୍ତ ହେଲା । ପିତୃ ବିୟୋଗ ଜନିତ କାରଣରୁ ସେ ସମ୍ବଲପୁରରୁ ଫେରି ଆସିଲେ । ସେହି ସମୟରେ ଫ୍ରେଜର୍ ପ୍ରେସ୍ ଚାଲୁଥିଲା ଏବଂ ସମ୍ବଲପୁର ସମେତ ଅନ୍ୟାନ୍ୟ ଅଞ୍ଚଳରେ ମଧ୍ୟ ମୁଦ୍ରଣ କ୍ଷେତ୍ରରେ ଖ୍ୟାତି ଅର୍ଜନ କରିଥିଲା । ମହନ୍ତ ବିହାରୀ ଦାସ ଫ୍ରେଜର ପ୍ରିଣ୍ଟିଂ କମ୍ପାନୀର ନିର୍ଦ୍ଦେଶକ ଥିଲେ । ସେ ଶ୍ରୀପତି ମିଶ୍ରଙ୍କୁ ଡାକି ଆଣି ଫ୍ରେଜର ପ୍ରେସ୍‌ର ପରିଚାଳନା ଦାୟିତ୍ୱ ଅର୍ପଣ କଲେ । ଶ୍ରୀପତି ମିଶ୍ରଙ୍କ ଘର ନିକଟରେ ପ୍ରତିଷ୍ଠିତ ହୋଇଥିଲା ଫ୍ରେଜର୍ ପ୍ରେସ୍ । ପୁନଶ୍ଚ ଫ୍ରେଜର୍ ନାମ ପ୍ରତି ମଧ୍ୟ ଶ୍ରୀପତି ମିଶ୍ରଙ୍କର ଆସକ୍ତି ରହିଥିଲା । ମହନ୍ତ ବିହାରୀ ଦାସ ନିଜେ ଜଣେ ସୁସାହିତ୍ୟିକ ହୋଇଥିଲେ ମଧ୍ୟ ଶିମଳା ଯାତ୍ରାର ବିବରଣୀ ଲେଖି ନଥିଲେ ଓ ସେହି ଦାୟିତ୍ୱ ଶ୍ରୀପତି ମିଶ୍ର ନିର୍ବାହ କରିଥିଲେ ଓ ଫଳସ୍ୱରୂପ କାଳଜୟୀ ଭ୍ରମଣ ବୃତ୍ତାନ୍ତ ଶିମଳା ଯାତ୍ରା ପ୍ରଣୀତ ହୋଇଥିଲା ।

ଶ୍ରୀପତି ମିଶ୍ର ଦୀର୍ଘ ଆଠବର୍ଷ କାଳ ଫ୍ରେଜର ପ୍ରେସ୍‌ର ପରିଚାଳନା ଦାୟିତ୍ୱ ସମ୍ପନ୍ନ କରିଥିଲେ । ସେ ଆମାଶୟ ରୋଗରେ ପୀଡ଼ିତ ହୋଇ କାର୍ଯ୍ୟରୁ ଅବ୍ୟାହତି ନେଇ ସମ୍ବଲପୁର ବାସ ଭବନରେ ବିଶ୍ରାମ ଗ୍ରହଣ କଲେ । ସମସ୍ତ ପ୍ରକାର ଚିକିତ୍ସା ସତ୍ତ୍ୱେ ତାଙ୍କର ଏହି ବିଶ୍ରାମ ମହାବିଶ୍ରାମରେ ପରିଣତ ହେଲା । ୧୯୩୦ ଅଁଳା ନବମୀ (ଅକ୍ଟୋବର ୩୦) ଦିନ ତାଙ୍କର ମହାପ୍ରୟାଣ ଘଟିଲା ଓ ଏଥିସହ ସମ୍ବଲପୁରରେ ଏକ ଯୁଗାବସାନ ଘଟିଲା । ପୂର୍ବରୁ ଅନ୍ୟ ଶିମଳାଯାତ୍ରୀଙ୍କର ଦେହାବସାନ ଘଟିସାରିଥିଲା ।

ବଡ଼ବଜାର
ସମ୍ବଲପୁର– ୭୬୮୦୦୩





# ସ୍ୱତନ୍ତ୍ର ଓଡ଼ିଶାର ଦ୍ୱିତୀୟ ଶତାବ୍ଦୀରେ ଓଡ଼ିଆ ଭାଷା

**ଅଜିତ ମହାନ୍ତି**

ଆଜିର ବିଶ୍ୱରେ ପ୍ରାୟ ୬୯୦୦ଟି ଭାଷା, ତହିଁରୁ ଅନ୍ୟୂନ ୩୦୦୦ଟି ଭାଷା ନିକଟ ଭବିଷ୍ୟତରେ ବିଲୁପ୍ତ ହୋଇଯିବାର ସମ୍ଭାବନା ଅଧିକ । ପ୍ରତ୍ୟେକ ଦୁଇ–ତିନି ସପ୍ତାହର ବ୍ୟବଧାନରେ ପୃଥିବୀର ବିଭିନ୍ନ କୋଣରେ ଗୋଟିଏ ଭାଷା ଲୁପ୍ତ ହୋଇଯାଉଛି, ସେ ଭାଷାର ଶେଷ ଭାଷାଭାଷୀର ମୃତ୍ୟୁରେ ଭାଷାର ଅନ୍ତ । ତା'ପରେ ହୁଏତ ସେ ଭାଷାର ନାଆଁଟିଏ ଥିବ ଇତିହାସ ପୃଷ୍ଠାରେ, କିନ୍ତୁ ସେ ଭାଷା ସହିତ ହଜିଯିବ ସେ ଭାଷାର ସାମୂହିକ ଚେତନାରେ ସାଇତା ହୋଇଥିବା ଜ୍ଞାନର ଭଣ୍ଡାର, ପରିବେଶକୁ ପୁଷ୍ଟ କରିବାର ନିଜସ୍ୱ ଜ୍ଞାନ, ପରିବେଶର ଗଛ ଲତା, ଚେରମୂଳି ଏବଂ ଜୀବଜଗତକୁ ଆଉ ଚିହ୍ନି ହେବ ନାହିଁ । ସେ ଭାଷାର ହଜାର ହଜାର ବର୍ଷର ସାଇତା ସଂସ୍କୃତି, ଲୋକକଥା, ବିଜ୍ଞତା ସବୁ ହଜିଯିବେ । ଭାଷାଟିଏ ହଜିଗଲେ ମାନବ ସମାଜ କେବଳ ଦରିଦ୍ର ହୁଏ ନାହିଁ, ବିପନ୍ନ ମଧ୍ୟ ହୁଏ, କାରଣ ଭାଷାଗତ ଓ ସାଂସ୍କୃତିକ ବିବିଧତା ସହିତ ହ୍ରାସ ହୁଏ ଜୈବ–ବିବିଧତା, ଯାହା ମାନବ ଜାତି ପାଇଁ ଅଶୁଭ । ଗତ ସତୁରୀ–ଅଶୀ ବର୍ଷରେ ଲୋପ ପାଇଛନ୍ତି ୫୦୦ରୁ ଅଧିକ ଭାଷା । ବର୍ତ୍ତମାନ ୧୮ଟି ଭାଷାର ଅଛନ୍ତି ଜଣେ ମାତ୍ର ଭାଷାଭାଷୀ, ୧୪୪ଟି ଭାଷାରେ ୧୦ରୁ କମ୍, ୪୩୭ଟି ଭାଷାରେ ଶହେରୁ କମ୍ ଏବଂ ୧୫୩୭ଟି ଭାଷାରେ ହଜାରେରୁ କମ୍ ଭାଷାଭାଷୀ । ଏ ଭାଷାମାନ ଆଉ ପରିପିଢ଼ିକୁ ସଂପ୍ରସାରିତ ହେଉନାହାନ୍ତି, ଅଳ୍ପ ଦିନରେ ଏ ଭାଷାସବୁ ମରିଯିବେ । ଭାଷା ମୃତ୍ୟୁ ସ୍ୱାଭାବିକ ନୁହେଁ । ଭାଷାର ସ୍ଥିତି ଜୈବିକ ନୁହେଁ– ସାମାଜିକ, ସାଂସ୍କୃତିକ । ସାମାଜିକ, ବ୍ୟବହାରିକ ଅବହେଳାରୁ ଭାଷା ମରିଯାଏ । ସମାଜର ଦୈନନ୍ଦିନ ଚଳଣି, ସାମାଜିକ–ସାଂସ୍କୃତିକ ପରିବେଶ, ଶିକ୍ଷା, ପ୍ରଶାସନ ଓ ଅନ୍ୟାନ୍ୟ ବ୍ୟବହାରିକ କ୍ଷେତ୍ରରେ ଗୋଟିଏ ଭାଷାର ବ୍ୟବହାର, ପ୍ରାଥମିକତା ଏବଂ ଅଗ୍ରାଧିକାର ନ ରହିଲେ ସେ ଭାଷା ଉପେକ୍ଷିତ ଏବଂ ଦୁର୍ବଳ ହୋଇଯାଏ । ଯାହା ଫଳରେ ବ୍ୟବହାରିକ କ୍ଷେତ୍ରରେ ଏହାକୁ ଅଧିକରୁ ଅଧିକ ଅବହେଳା କରାଯାଏ । ଉପେକ୍ଷାର କାଳଚକ୍ରରେ ପଡ଼ି ଭାଷାସବୁ ଲୁପ୍ତ ହୋଇଯାଆନ୍ତି ।

ନିଜର ସ୍ୱତନ୍ତ୍ର ଐତିହ୍ୟ ଯୋଗେ ଶାସ୍ତ୍ରୀୟ ମାନ୍ୟତା ପ୍ରାପ୍ତ ହୋଇଥିବା ସାଢ଼େ ଚାରିକୋଟି ଭାଷାଭାଷୀ–ଓଡ଼ିଆଙ୍କ ମନରେ ଆଜି ହୁଏତ ଭାଷା–ମୃତ୍ୟୁର ଆଶଙ୍କା ନ ଥାଇପାରେ । କିନ୍ତୁ ସ୍ୱତନ୍ତ୍ର ଓଡ଼ିଶା ଗଠନର ବାର୍ଷିକ ଅବସରରେ ଭାଷା ବିଷୟରେ ଚିନ୍ତା କରିବା ଜରୁରୀ କାରଣ ଭାଷା–ଭାଷୀ ସଂଖ୍ୟା ଓ ଐତିହ୍ୟ ଥାଇ ମଧ୍ୟ ଭାଷାସବୁ ସୁରକ୍ଷିତ ନୁହନ୍ତି । ଲାଟିନ୍ ଭାଷା ଏସବୁ ଶକ୍ତି ସତ୍ତ୍ୱେ ବିଲୁପ୍ତ । ଇରାନର ପାର୍ସି ଭାଷା ଓ ଆମ ଦେଶର ସଂସ୍କୃତ ଭାଷାଗୁଡ଼ିକ ଖୁବ୍ ସୁରକ୍ଷିତ ନୁହନ୍ତି କାରଣ ବ୍ୟବହାରିକ ସ୍ତରରେ ଏଗୁଡ଼ିକ ଖୁବ୍ ସଂକୁଚିତ । ଯେକୌଣସି ଭାଷାର ଜୀବନ ଶକ୍ତି ସେ ଭାଷାଭାଷୀଙ୍କର ଭାଷା–ପ୍ରାଣ, ମାନସିକତା ଓ ଭାଷା ପ୍ରତି ପ୍ରତିବଦ୍ଧତାରେ ପ୍ରତିଫଳିତ ହୁଏ । ଭାଷା ପ୍ରୀତି କେବଳ ଅନ୍ତର୍ନିହିତ ନିଷ୍ଠା ବା ଭକ୍ତିରେ

ନଥାଏ । ଭାଷା-ମାନସିକତା ଓ ପ୍ରତିବଦ୍ଧତା ପ୍ରକାଶିତ ହୁଏ ସାଧାରଣ ଜୀବନର ସ୍ୱାଭାବିକ ଚଳଣି ଏବଂ ଆଧୁନିକ ପ୍ରଗତିରେ ଭାଷାର ଗୁରୁତ୍ୱରେ । 'ମୁଁ ଜଣେ ଓଡ଼ିଆ' – ଏ ଭାବନା ଭାଷା-ମାନସିକତାର ଏକ ମୁଖ୍ୟ ଦିଗ ନିଶ୍ଚୟ କିନ୍ତୁ ଭାଷା ପ୍ରତି ପୂର୍ଣ୍ଣ ପ୍ରତିବଦ୍ଧତା ସେତିକିରୁ ଆସେନାହିଁ । ସମାଜର ସାଧାରଣ ଜୀବନରେ ଅର୍ଥନୈତିକ ଓ ସାମୂହିକ ପ୍ରଗତିରେ ଭାଷାର ଗୁରୁତ୍ୱ ଏବଂ ଏହାର ଉପାଦେୟତା ବିବେଚନା ଯୋଗେ ହିଁ ଭାଷା-ମାନସିକତାର ପ୍ରକୃତ ସ୍ଥିତି ଓ ପ୍ରଭାବ ଜଣାପଡ଼େ । ସାଧାରଣ ଭାଷା ବ୍ୟବହାରକାରୀ ମନରେ ଭାଷା ପ୍ରତି ଆଗ୍ରହ ସୃଷ୍ଟି ହୁଏ ଭାଷାର ମୂଲ୍ୟାଙ୍କନରେ, ଯଦି ସମାଜର ଗୁରୁତ୍ୱପୂର୍ଣ୍ଣ କ୍ଷେତ୍ରରେ ଶିକ୍ଷାରେ, ପ୍ରଶାସନିକ ଓ ଅର୍ଥନୈତିକ ବ୍ୟବସ୍ଥାରେ, ଭାଷାର ଉପଯୋଗିତା ଥାଏ ତେବେ ଭାଷାପ୍ରତି ପ୍ରତିବଦ୍ଧତା ରହିବ । ଶିକ୍ଷା, କର୍ମଜୀବନ ତଥା ଅର୍ଥନୈତିକ ପ୍ରଗତି ପାଇଁ ଭାଷାର ଉପାଦେୟତା ଯଥେଷ୍ଟ ନ ହେଲେ ଭାଷା ହୁଏତ ଆତ୍ମ-ପରିଚୟର ଭିତ୍ତି ହୋଇପାରେ କିନ୍ତୁ ଏହାର ଅନ୍ୟାନ୍ୟ ପ୍ରୟୋଗ ଓ ପ୍ରାଥମିକତା କ୍ରମଶଃ ହ୍ରାସ ପାଏ । ଭାଷାଭାଷୀଙ୍କର ନିଜ ଭାଷା ପ୍ରତି ନିଷ୍ଠା ଏକତରଫା ନୁହେଁ, ଜୀବନ, ଜୀବିକା ଓ ଭବିଷ୍ୟତ ପାଇଁ ଭାଷାର ଉପାଦେୟତାରେ ବିଶ୍ୱାସ ରହିବା ଜରୁରୀ ।

ଯେକୌଣସି ସମାଜରେ ଭାଷାମାନଙ୍କ ମଧ୍ୟରେ କ୍ଷମତା ଦ୍ୱନ୍ଦ୍ୱ ଏବଂ ଏକ ଅଦୃଶ୍ୟ ଠେଲାପେଲା । କେତେକ ଭାଷା ଅଧିକ ଶକ୍ତିଶାଳୀ ଓ ପ୍ରଭାବପୂର୍ଣ୍ଣ ହୋଇପଡ଼ନ୍ତି କାରଣ ସେଗୁଡ଼ିକ ରାଷ୍ଟ୍ରୀୟ ସ୍ତରରେ ଶିକ୍ଷା, ପ୍ରଗତି ଓ ଅର୍ଥନୀତି କ୍ଷେତ୍ରରେ ଅଧିକ ମାନ୍ୟତା ପାଇଥାଆନ୍ତି ବିଭିନ୍ନ ଐତିହାସିକ ଓ ରାଜନୈତିକ କାରଣରୁ । ଏ ପ୍ରକାର ମାନ୍ୟତା ଓ କ୍ଷମତା ଦୃଷ୍ଟିରୁ ଇଂରାଜୀ ଆମ ଦେଶରେ ସବୁଠାରୁ ପ୍ରଭାବଶାଳୀ ଭାଷା । ସଂବିଧାନ ଅନୁସାରେ ହିନ୍ଦୀ ରାଷ୍ଟ୍ରୀୟ ପ୍ରଶାସନରେ ସରକାରୀ ଭାଷା ଏବଂ ଇଂରାଜୀ ପ୍ରାରମ୍ଭରୁ ୧୫ ବର୍ଷ ପାଇଁ ଏବଂ ପରେ ଅନିର୍ଦ୍ଦିଷ୍ଟ କାଳ ପାଇଁ ଏକ ସହଯୋଗୀ ସରକାରୀ ଭାଷା । ମାତ୍ର, ହିନ୍ଦୀକୁ ଜାତୀୟ ଭାଷାର ମାନ୍ୟତା ସଂବିଧାନରେ ନାହିଁ । ହିନ୍ଦୀ ସମେତ ୨୨ଟି ଆଞ୍ଚଳିକ ଭାଷା ସଂବିଧାନର ଅଷ୍ଟମ ଅନୁସୂଚୀରେ ରାଜ୍ୟସ୍ତରୀୟ ସରକାରୀ ଭାଷା ଭାବରେ ସ୍ୱୀକୃତ । ଅନ୍ୟାନ୍ୟ ଆଦିବାସୀ ଓ ସଂଖ୍ୟାଲଘୁ ଭାଷାମାନେ ସାଂବିଧାନିକ ସ୍ତରରେ ଜାତୀୟ ମାନ୍ୟତା ପାଇ ନାହାନ୍ତି । ତେଣୁ ଭାଷାମାନେ ତିନି ଥାକରେ ବିଭକ୍ତ– ସର୍ବୋଚ୍ଚ ସ୍ତରରେ ଇଂରାଜୀ, ମଧ୍ୟମ ସ୍ତରରେ ହିନ୍ଦୀ ଓ ଅନ୍ୟାନ୍ୟ ଅନୁସୂଚିତ ଭାଷାମାନ ଏବଂ ସର୍ବନିମ୍ନ ଥାକରେ ଜନଜାତି ଓ ସଂଖ୍ୟାଲଘୁ ଭାଷାମାନ । ତେଣୁ ମଝି ବରଡ଼ା ଭଳି ଓଡ଼ିଆ ଭାଷା ପ୍ରଭାବ ଦୃଷ୍ଟିରୁ ମଝି ଥାକରେ ଅଛି । ଜାତୀୟ ସ୍ତରରେ ଇଂରାଜୀ ଭାଷାର ପ୍ରାଧାନ୍ୟ ଯୋଗେ ହିନ୍ଦୀ ସମେତ ପ୍ରାଦେଶିକ ଏବଂ ଆଞ୍ଚଳିକ ମୁଖ୍ୟ ଭାଷାମାନ କ୍ରମଶଃ ଶିକ୍ଷା ଏବଂ ଅନ୍ୟାନ୍ୟ ସାମାଜିକ ଅର୍ଥନୈତିକ କ୍ଷେତ୍ରରୁ ବିସ୍ଥାପିତ ହେବାରେ ଲାଗିଛନ୍ତି ଏବଂ ଏସବୁ ମୁଖ୍ୟ ଭାରତୀୟ ଭାଷାମାନଙ୍କର ଆଞ୍ଚଳିକ ପ୍ରଭାବରୁ ଜନଜାତି ଏବଂ ସ୍ଥାନୀୟ ସଂଖ୍ୟାଲଘୁ ଭାଷାମାନ ମଧ୍ୟ ଲୁପ୍ତ ହେବାରେ ଲାଗିଛନ୍ତି । ଏ ପ୍ରକାର ଭାଷାମାନଙ୍କ ଠେଲାପେଲାରେ ଏବଂ ଅଧିକ କ୍ଷମତାସମ୍ପନ୍ନ ଭାଷା ତଥା ଇଂରାଜୀ ପ୍ରଭାବରେ ଓଡ଼ିଆ ଭାଷାର ସ୍ଥିତି ଏବଂ ଓଡ଼ିଆ ମାତୃଭାଷୀ ପରିବାରମାନଙ୍କରେ ଭାଷା ପ୍ରତି ନିଷ୍ଠା ଓ ଆନୁଗତ୍ୟ ନିଶ୍ଚୟ ଚିନ୍ତନୀୟ ।

ଓଡ଼ିଆ ପଢ଼ିବା, ଲେଖିବା ଏବଂ ଜନଜୀବନର ବିଭିନ୍ନ କ୍ଷେତ୍ରରେ ଓଡ଼ିଆର ପ୍ରୟୋଗରୁ ଭାଷା ଆନୁଗତ୍ୟ ଅନୁମାନ କରିହେବ । ଆମ ପିଲାଏ ଓଡ଼ିଆ ପଢ଼ି-ଲେଖି ଶିଖୁଛନ୍ତି ବା ଓଡ଼ିଆ କହି ପାରୁଛନ୍ତି କି? ବୟସ୍କମାନେ ଦୈନନ୍ଦିନ ଜୀବନରେ ଓଡ଼ିଆର ଯଥେଷ୍ଟ ବ୍ୟବହାର କରୁଛନ୍ତି କି ? ଘର ଆଗରେ ନିଜର ନାମଫଳକଟିଏ ଲଗାଇଲାବେଳେ ବା ବିବାହ-ବ୍ରତରେ ନିମନ୍ତ୍ରଣ ପତ୍ରଟିଏ ଛାପିଲାବେଳେ, ବହିଟିଏ କିଣିଲାବେଳେ, ବା ଦୈନିକ ଖବରକାଗଜ ମଗାଇଲା ବେଳେ ଆମେ ଓଡ଼ିଆକୁ ପ୍ରାଧାନ୍ୟ ଦେଉଛୁ କି? ଓଡ଼ିଆ ଭାଷା ପ୍ରତି ଆନୁଗତ୍ୟ ଓ ଭାଷାର ଭବିଷ୍ୟତ ଚିନ୍ତା କଲାବେଳେ ଏସବୁ ବ୍ୟବହାରିକ ପ୍ରଶ୍ନ ଆଗକୁ ଆସିବ ନିଶ୍ଚୟ, କାରଣ 'ମୁଁ ମୋ ଭାଷାକୁ ଭଲପାଏ', ଏକଥା କେବଳ ଘୋଷଣାର କଥା ନୁହେଁ । ଭାଷାପ୍ରତି ପ୍ରତିବଦ୍ଧତା

ପ୍ରକାଶିତ ହୁଏ ଭାଷାର ବ୍ୟବହାରରେ ଏବଂ ଗୋଟିଏ ପିଢ଼ିରୁ ଅନ୍ୟ ପିଢ଼ିକୁ ଭାଷାର ସଂପ୍ରସାରଣରେ ।

ବର୍ତ୍ତମାନ ଆମ ରାଜ୍ୟରେ ଛଅରୁ ଅଠର ବର୍ଷ ବିଦ୍ୟାଳୟ ବୟସର ପିଲାଙ୍କ ଭିତରୁ ପ୍ରାୟ ୪୯ ଲକ୍ଷ ଇଂରାଜୀ– ମାଧ୍ୟମ ବିଦ୍ୟାଳୟରେ । ଏମାନଙ୍କ ବ୍ୟତୀତ ଲକ୍ଷ ଲକ୍ଷ କୁନି ପିଲା ବିଭିନ୍ନ ପ୍ରକାରର ନର୍ସରୀ, କିଣ୍ଡର ଗାର୍ଡ଼େନ ବା ଖେଳ ନଥିବା 'ପ୍ଲେ' ସ୍କୁଲମାନଙ୍କରେ ଅବୋଧ ଇଂରାଜୀ ନର୍ସରୀ ରାଇମ୍ ଘୋଷୁଛନ୍ତି । ଅନୁମାନ କରାଯାଏ ଯେ ଗତ ୧୦–୧୫ବର୍ଷ ଭିତରେ ଇଂରାଜୀ ମାଧ୍ୟମ ବିଦ୍ୟାଳୟରୁ ବାହାରି ରାଜ୍ୟ ବା ରାଜ୍ୟ ବାହାରେ କାମ କରୁଥିବା ବୟସ୍କ ଓଡ଼ିଆମାନଙ୍କ ମଧ୍ୟରୁ ଅନ୍ୟୂନ ୨୨ ଲକ୍ଷ ହୁଏ ତ ଓଡ଼ିଆ ଲେଖି–ପଢ଼ି ଜାଣନ୍ତି ନାହିଁ ଏବଂ ଅନେକ ଓଡ଼ିଆ କହି ଜାଣନ୍ତି ନାହିଁ । ତେଣୁ ଏ କଥା କହିହେବ ଯେ ବର୍ତ୍ତମାନର ଓଡ଼ଆ ଲୋକମାନଙ୍କ ମଧ୍ୟରୁ ନିରକ୍ଷର ଲୋକଙ୍କୁ ବାଦ୍‌ଦେଲେ, ସାତବର୍ଷରୁ ଉର୍ଦ୍ଧ୍ୱ ଓଡ଼ିଆଙ୍କ ମଧ୍ୟରେ ୭୧ ଲକ୍ଷରୁ ଅଧିକ ପାଠୁଆ ବ୍ୟକ୍ତି ଓଡ଼ଆ ପଢିବାକୁ ଅସମର୍ଥ ।

୧୯୩୬ ମସିହାରେ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ସମୟରେ ରାଜ୍ୟର ଜନସଂଖ୍ୟା ଥିଲା ଏକକୋଟି ୩୧ ଲକ୍ଷ, ଯାହା ବର୍ତ୍ତମାନ ଚାରିକୋଟି ୬୦ ଲକ୍ଷରେ ପହଞ୍ଚିଛି । ୨୦୩୬ ମସିହା ବେଳକୁ ଓଡ଼ିଶାର ଜନସଂଖ୍ୟା ହେବ ପ୍ରାୟ ପାଞ୍ଚକୋଟି ୭୭ ଲକ୍ଷ । ସେମାନଙ୍କ ମଧ୍ୟରେ ଥିବେ ଏକ କୋଟି ୫୬ ଲକ୍ଷରୁ ଅଧିକ ବିଦ୍ୟାଳୟ ଶିକ୍ଷା ବୟସର ଅର୍ଥାତ୍ ଛଅରୁ ୧୮ ବର୍ଷ ବୟସର ପିଲା । ସେମାନଙ୍କ ମଧ୍ୟରୁ କେତେ ପିଲା ଇଂରାଜୀ–ମାଧ୍ୟମ ବିଦ୍ୟାଳୟରେ ଥିବେ ତାହା ତଥ୍ୟ ଭିତ୍ତିରେ ଅନୁମେୟ । ବର୍ତ୍ତମାନ ଜାତୀୟ ଓ ରାଜ୍ୟସ୍ତରରେ ୪୦ ପ୍ରତିଶତ ପିଲା ଇଂରାଜୀ–ମାଧ୍ୟମ ବିଦ୍ୟାଳୟରେ ଏବଂ ଏହାର ବାର୍ଷିକ ଅଭିବୃଦ୍ଧି ହାର ୧୦ ପ୍ରତିଶତ । ବେସରକାରୀ ଇଂରାଜୀ – ମାଧ୍ୟମ ବିଦ୍ୟାଳୟମାନ ରାଜ୍ୟର ଗାଁଗଣ୍ଡା ଓ ସହରତଳି ଅଞ୍ଚଳମାନଙ୍କରେ ଛତୁ ଫୁଟିଲାଭଳି ମାଡି ଚାଲିଛନ୍ତି ଏବଂ ବ୍ୟବସାୟିକ ଭିତ୍ତିରେ ଏମାନେ ସ୍ଥାନୀୟ ପରିବେଶ ଓ ଆର୍ଥିକ କ୍ଷମତାକୁ ଦୃଷ୍ଟିରେ ରଖି ସ୍ୱଳ୍ପଦେୟର ତଥା ନିମ୍ନମାନର ଇଂରାଜୀ–ମାଧ୍ୟମ ଶିକ୍ଷାର ପ୍ରସାର କରିଚାଲିଛନ୍ତି । ତତ୍ ସହିତ, ସାଧାରଣ ଜନତାଙ୍କ ଆୟ ଓ ଆର୍ଥିକ ଅବସ୍ଥାରେ ଆଶାନୁରୂପ ଉନ୍ନତି ହେଲେ ଏକଥା ଅନୁମାନ କରିହେବ ଯେ ଇଂରାଜୀ–ମାଧ୍ୟମ ପିଲାଙ୍କ ସଂଖ୍ୟାର ବାର୍ଷିକ ଅଭିବୃଦ୍ଧି ହାର ଦ୍ରୁତ ଗତିରେ ବଢ଼ିବ । ତେବେ,ସାଂପ୍ରତିକ ଅଭିବୃଦ୍ଧି ହାର ଭିତ୍ତିରେ ମଧ୍ୟ ହିସାବ କଲେ ଏକଥା ସ୍ପଷ୍ଟ ଯେ ଆଗାମୀ ଦଶନ୍ଧି ଭିତରେ ପ୍ରାୟ ଶତପ୍ରତିଶତ ଓଡ଼ିଆ ପିଲା ଥିବେ ଇଂରାଜୀ–ମାଧ୍ୟମ ବିଦ୍ୟାଳୟମାନଙ୍କରେ । ଏ ଧାରା ଯଦି ଅବ୍ୟାହତ ରହେ ଏବଂ ଓଡ଼ିଆ–ମାଧ୍ୟମ ବିଦ୍ୟାଳୟମାନଙ୍କର ଗୁଣାତ୍ମକ ମାନରେ ଯଥେଷ୍ଟ ଉନ୍ନତି ନ ହୁଏ, ତେବେ କେବଳ ଇଂରାଜୀ–ମାଧ୍ୟମ ବିଦ୍ୟାଳୟ ଉପଲବ୍ଧ ନଥିବା ଦୂରନ୍ତ ମଫସଲ ଅଞ୍ଚଳ ବ୍ୟତୀତ ଅନ୍ୟ ଅଞ୍ଚଳରେ ଓଡ଼ିଆ–ମାଧ୍ୟମ ବିଦ୍ୟାଳୟର ପିଲା ନଥିବେ ଅର୍ଥାତ୍ ସ୍ୱତନ୍ତ୍ର–ଓଡ଼ିଶାର ଶହେ ବର୍ଷରେ ଓଡ଼ିଆ ମାଧ୍ୟମ ଶିକ୍ଷାରେ ଛାତ୍ରଛାତ୍ରୀ ନଥିବେ । ଏହା ଏକ ଦୁଃସ୍ୱପ୍ନ ଭଳି ମନେ ହୋଇପାରେ, କିନ୍ତୁ ଏହା ତଥ୍ୟଭିତ୍ତିକ ପୂର୍ବାନୁମାନ ।

ଇଂରାଜୀ–ମାଧ୍ୟମ ଶିକ୍ଷା ସ୍ରୋତରେ ଓଡ଼ିଆ ଭାଷାର ପଢ଼ାଲେଖା ସଂକୁଚିତ ହେବ ନିଶ୍ଚୟ ଏବଂ ଏହା ସହିତ କଥିତ ଓଡ଼ିଆର ସଂପ୍ରସାରଣ ମଧ୍ୟ ବ୍ୟାହତ ହେବ । ବାପା–ମାଆଙ୍କ ଇଂରାଜୀ–ମାଧ୍ୟମ ଶିକ୍ଷା ପ୍ରତି ଆକର୍ଷଣ ଫଳରେ ବର୍ତ୍ତମାନ ଲକ୍ଷ ଲକ୍ଷ ମାଧ୍ୟମିକ ଓ ଉଚ୍ଚ ବର୍ଗର ପିଲାଙ୍କ ପ୍ରାରମ୍ଭିକ ବିକାଶରେ ଓଡ଼ିଆ ଭାଷାର ବ୍ୟବହାର ଓ ଶିକ୍ଷା ହ୍ରାସ ପାଉଛି । ଓଡ଼ିଆ ବାପା–ମାଆ ପିଲାଙ୍କ ସହିତ ଓଡ଼ିଆରେ କଥା ହେବା ପ୍ରାୟତଃ କମିଯାଉଛି, କାରଣ ସେମାନେ ଇଂରାଜୀ–ମାଧ୍ୟମ ଶିକ୍ଷାରେ ଯୋଗଦେବେ । ପିଲାଙ୍କ ଗପ–ଗୀତ, ଟିଭି କାର୍ଯ୍ୟକ୍ରମ, ଛପା ବହି, ଖବରକାଗଜ ଇତ୍ୟାଦି ପ୍ରାୟ ଇଂରାଜୀରେ । 'ଆ ଜହ୍ନ ମାମୁ ସରଗ ଶଶୀ' ବଦଳରେ ପିଲାଏ 'ଟ୍ୱିଙ୍କଲ୍ ଟ୍ୱିଙ୍କଲ୍ ଲିଟଲ ଷ୍ଟାର' ଶିଖିଲେଣି । ଏକକ ପରିବାରମାନଙ୍କରେ ପିଲା ନିତିଦିନିଆ ବାଲ୍ୟ ଅନୁଭବରେ

ଜେଜେ ମା', ଜେଜେ ବାପାମାନେ ଆଉ ନାହାନ୍ତି । ଫଳରେ ଓଡ଼ିଆ କାହାଣୀ, ପୁରାଣ କଥା, ଢ଼ଗଢ଼ମାଳୀ ଇତ୍ୟାଦି ପିଲାଙ୍କ ପାଇଁ ଦୁର୍ଲଭ । ନିଜ ପରିବେଶର ଗଛ, ଲତା, ପନିପରିବା ଇତ୍ୟାଦିର ଓଡ଼ିଆ ନାଁ ମାନେ ଇଂରାଜୀ ଶବ୍ଦମାନଙ୍କ ଭିତରେ ଲୁଚି ଗଲେଣି । ଭାଷା ବଂଚେ ଗୋଟିଏ ପିଢିରୁ ଅନ୍ୟ ପିଢ଼ିକୁ ସଂପ୍ରସାରଣରେ । ତେଣୁ ଯେଉଁ ଗତିରେ ଏ ପ୍ରକାର ସଂପ୍ରସାରଣ ହ୍ରାସ ପାଉଛି ତାହା ଉଦ୍‌ବେଗଜନିତ ।

ବୟସ୍କମାନଙ୍କ କ୍ଷେତ୍ରରେ ମଧ୍ୟ ଓଡ଼ିଆ ପାଠକଙ୍କ ସଂଖ୍ୟା ଦ୍ରୁତ ଗତିରେ ହ୍ରାସ ପାଉଛି । ଓଡ଼ିଆ ଖବରକାଗଜ ପଢ଼ା ମଧ୍ୟ କମୁଛି । ଓଡ଼ିଶାରେ ବଡ, ମଧ୍ୟମ ଓ କ୍ଷୁଦ୍ର ଧରଣର ରାଜ୍ୟ ତଥା ଆଞ୍ଚଳିକ ସ୍ତରୀୟ ଘୋଷିତ ଖବରକାଗଜ ପ୍ରକାଶନର ସଂଖ୍ୟା ୪୪ ଲକ୍ଷ ପଚାଶ ହଜାର ଏବଂ ପ୍ରକୃତ ପାଠକମାନଙ୍କ ପାଇଁ ଘରେ ପହଞ୍ଚୁଥିବା ଖବରକାଗଜ ଏହାଠାରୁ ଅନେକ କମ୍ । ତଥାପି, ସମସ୍ତ ପ୍ରକାଶିତ ଖବରକାଗଜଗୁଡିକର ହାରାହାରି ପାଠକ ପ୍ରାୟ ସଂଖ୍ୟା ଷାଠିଏରୁ ଅଶି ଲକ୍ଷ । ଅର୍ଥାତ୍ ଓଡ଼ିଶାରେ ସାତବର୍ଷରୁ ଅଧିକ ବୟସର ସ୍ୱାକ୍ଷରମାନଙ୍କ ମଧ୍ୟରୁ ମାତ୍ର ୨୭ ପ୍ରତିଶତ ଦୈନିକ ଖବରକାଗଜ ପଢ଼ନ୍ତି ।

ତେଣୁ ସବୁ ଦୃଷ୍ଟିରୁ ବିଚାର କଲେ, ଓଡ଼ିଆ ଭାଷାର ବ୍ୟବହାର ଖୁବ୍ ଉଦ୍‌ବେଗଜନକ ଭାବରେ କମିବାରେ ଲାଗିଛି । ବୋଧହୁଏ ଆଉ କେତୋଟି ବର୍ଷ ପରେ ଶିକ୍ଷିତ ଓଡ଼ିଆ ଯୁବକ ଯୁବତୀ ଓଡ଼ିଆରେ ଛପା ଖବରକାଗଜ, ବହି, ନାମ ଫଳକ, ନିମନ୍ତ୍ରଣ ପତ୍ର ଇତ୍ୟାଦି ପଢ଼ିପାରିବେ ନାହିଁ, ଓଡ଼ିଆରେ ମୁଦ୍ରିତ ଲେଖା ଓ ସାହିତ୍ୟରେ ଅନୁରାଗ କମିବ । ସ୍ୱତନ୍ତ୍ର ଓଡ଼ିଶାର ଶହେ ବର୍ଷରେ ବର୍ତ୍ତମାନର ଯୁବପିଢ଼ିର ବାପା-ମାଆଙ୍କର ପିଲାମାନେ ଆଉ ଓଡ଼ିଆ କହିପାରିବେ ନାହିଁ, ବୁଝିବେ ନାହିଁ ମଧ୍ୟ । କେବଳ ହୁଏତ ନିମ୍ନ ବର୍ଗର ପରବାର ଓ ଗ୍ରାମୀଣ ଅଞ୍ଚଳରେ କିଛିଟା କଥିତ ଓଡ଼ିଆ ବ୍ୟବହୃତ ହେବ ଏବଂ ଉତ୍ତରପୁରୁଷକୁ ସଂପ୍ରସାରଣ ହେବ । ଏହା ଫଳରେ, କଥିତ ଓଡ଼ିଆ ଭାଷା ଅନେକାଂଶରେ ଲିଖିତ ଓଡ଼ିଆଠାରୁ କ୍ରମଶଃ ଦୂରେଇ ଯିବ । ଶାସ୍ତ୍ରୀୟ ମାନ୍ୟତା ପରେ ମଧ୍ୟ ଯଦି ସାମଗ୍ରିକ ଭାବରେ ଓଡ଼ିଆ ଭାଷାର ବ୍ୟବହାର , ପ୍ରୟୋଜନ, ଉପାଦେୟତା ପ୍ରତିଷ୍ଠିତ ନ ହୁଏ ଏବଂ ଶିକ୍ଷା କ୍ଷେତ୍ରରେ ଓଡ଼ିଆର ପ୍ରୟୋଗରେ ଅଭିବୃଦ୍ଧି ନ ହୁଏ , ତେବେ ବର୍ତ୍ତମାନର ଧାରାରେ ଚାଲିଲେ, ଆଉ କିଛି ବର୍ଷ ପରେ, ଓଡ଼ିଆ ହୁଏତ ଏକ କଥିତ ଭାଷା ହୋଇଯାଇପାରେ – ଏହା ଓଡ଼ିଆ ଭାଷୀ ଓ ଓଡ଼ିଆ ଭାଷାପ୍ରେମୀଙ୍କ ଲାଗି ଏକ ଅପ୍ରୀତିକର ସମ୍ଭାବନା ଏବଂ ଏକ କ୍ରୁର ବାସ୍ତବତା ।

ଏଚ.ଆଇ.ଜି-୬୭
ଫେଜ୍-୮, ଶୈଳଶ୍ରୀ ବିହାର
ଭୁବନେଶ୍ୱର-୭୫୧୦୨୧



# ସମ୍ବଲପୁର ଓଡ଼ିଆ ଭାଷା ସୁରକ୍ଷା ଆନ୍ଦୋଳନରେ କବି ଗଙ୍ଗାଧର ମେହେର

ପବିତ୍ର ମୋହନ ବାରିକ

ଓଡ଼ିଆ ଭାଷା ଓ ସାହିତ୍ୟର ସୁରକ୍ଷା ଦିଗରେ ଉଲ୍ଲେଖନୀୟ କାର୍ଯ୍ୟ ସଂପାଦିତ କରିଥିବା ଉତ୍କଳ ଜନନୀର କେତେଜଣ ବରେଣ୍ୟ ବରପୁତ୍ରମାନଙ୍କ ମଧ୍ୟରେ ସ୍ୱଭାବ କବି, ଗଙ୍ଗାଧର ମେହର ଅନ୍ୟତମ ଯଶସ୍ୱୀ ସ୍ରଷ୍ଟା । ଓଡ଼ିଆ ଭାଷା ସୁରକ୍ଷା ଆନ୍ଦୋଳନର ଜଣେ ସୁନାମଧନ୍ୟ କର୍ଣ୍ଣଧାର । ଓଡ଼ିଆ ଭାଷାର ବିଲୋପ ନିମନ୍ତେ ଆରମ୍ଭ ହୋଇଥିବା ଚକ୍ରାନ୍ତ ଓ ଷଡ଼ଯନ୍ତ୍ର ବିରୁଦ୍ଧରେ ଶ୍ରୀ ଗଙ୍ଗାଧର ମେହରଙ୍କ ନିରବଚ୍ଛିନ୍ନ ସଂଗ୍ରାମକୁ ଏ ଜାତି କେବେ ଅସ୍ୱୀକାର କରିପାରିବ ନାହିଁ । ମାତୃଭୂମି ଓ ମାତୃଭାଷାକୁ ଭଲ ପାଉଥିବା ସେ ଜଣେ ସ୍ୱାଭିମାନୀ ଓଡ଼ିଆ । ଓଡ଼ିଆ ଭାଷା ପ୍ରତି ଥିଲା ତାଙ୍କର ଗଭୀର ଶ୍ରଦ୍ଧା, ନିବିଡ଼ ମମତା ଓ ଭାବଗତ ସଂପର୍କ । ଓଡ଼ିଆ ଭାଷା ଜନନୀର ସୁପୁତ୍ର ରୂପେ ସେ ନିଜକୁ ଗୌରବାନ୍ୱିତ ଅନୁଭବ କରୁଥିଲେ । ତାଙ୍କ ହୃଦୟରେ ମାତୃଭାଷା ଓଡ଼ିଆ ପ୍ରତି ଯେଉଁ ଆବେଗିକ ଭାବ ସୃଷ୍ଟି ହୋଇଥିଲା, ତାହାର ସ୍ପଷ୍ଟ ପ୍ରମାଣ ଦିଏ ତାଙ୍କର ସ୍ୱରଚିତ କବିତାବଳୀ । ସମୃଦ୍ଧ ଓଡ଼ିଆ ଭାଷାକୁ ନିଶ୍ଚିହ୍ନ କରି ଦେବା ପାଇଁ ଯେଉଁ ହୀନ ଉଦ୍ୟମ ଆରମ୍ଭ ହୋଇଥିଲା, ତାହାର ଦୃଢ଼ ପ୍ରତିବାଦ କରିଥିଲେ ଗଙ୍ଗାଧର ମେହର । ମାତୃଭାଷା ଓଡ଼ିଆର ସମ୍ମାନ, ଗୌରବ, ଶ୍ରେଷ୍ଠତ୍ୱ ତଥା ଉତ୍କର୍ଷତା ବଜାୟ ରଖିବା ପାଇଁ ସେ ନିଜର ଅମର ସଂଗୀତ ମାଧ୍ୟମରେ ସମସ୍ତ ଓଡ଼ିଆଙ୍କୁ ଏକତ୍ରିତ କରିବା ପାଇଁ ପ୍ରୟାସ କରିଥିଲେ । ଏକ ପ୍ରାଚୀନ ଭାଷା ରୂପେ ଓଡ଼ିଆକୁ ଯେଉଁ ସମ୍ମାନ, ପ୍ରଶଂସା ଓ ପ୍ରତିଷ୍ଠା ମିଳିବା କଥା ଏଥିରୁ ତାକୁ ବଞ୍ଚିତ କରାଯାଇଥିବାରୁ ତାଙ୍କର କବିପ୍ରାଣକୁ ଦାରୁଣ ଆଘାତ ଦେଇଥିଲା । ପ୍ରକୃତି କବି ଗଙ୍ଗାଧର ମେହର ଓଡ଼ିଆ ଭାଷାର ମର୍ଯ୍ୟାଦା ରକ୍ଷା ନିମନ୍ତେ ସମଗ୍ର ଓଡ଼ିଆ ଭାଷାଭାଷୀ ନାଗରିକମାନଙ୍କୁ ଆକୁଳ ଆବେଦନ କରିଥିଲେ । କବିଙ୍କ ଦୃଷ୍ଟିକୋଣରେ ଗୋଟିଏ ଜାତିର ସାମାଜିକ, ସାଂସ୍କୃତିକ ତଥା ଆଧ୍ୟାତ୍ମିକ ପରିଚୟର ଶ୍ରେଷ୍ଠ ମାଧ୍ୟମ ମାତୃଭାଷା । ମାତୃଭାଷାର ସାମଗ୍ରିକ ବିକାଶ ବିନା କୌଣସି ଜାତି କେବେ ସଫଳତାର ଶୀର୍ଷ ସୋପାନକୁ ଅତିକ୍ରମ କରିପାରିବ ନାହିଁ । ଏଥିରେ କବିଙ୍କର ଦୃଢ଼ ବିଶ୍ୱାସ ଥିଲା । ଦରଦୀ ହୃଦୟରେ ଜାତି ତଥା ଭାଷା ପ୍ରାଣ କବି ଗଙ୍ଗାଧର ମେହର ବିନମ୍ର ନିବେଦନ କରିଥିଲେ ସତୀର୍ଥ ଓଡ଼ିଆ ନାଗରିକମାନଙ୍କୁ । ମାତୃଭୂମି ଓ ମାତୃଭାଷା ପ୍ରତି ଥିଲା ତାଙ୍କର ଗଭୀର ସମ୍ମାନବୋଧ । ଅନ୍ୟମାନଙ୍କର ହୃଦୟରେ ଏଥିପ୍ରତି ଶ୍ରଦ୍ଧା ଓ ଆଗ୍ରହ ସୃଷ୍ଟି କରିବା ନିମନ୍ତେ ସେ କେବେହେଲେ ଅବହେଳା କରି ନାହାନ୍ତି । ଓଡ଼ିଆମାନଙ୍କ ହୃଦୟରେ ମାତୃଭାଷା ପ୍ରୀତି ସୃଷ୍ଟି କରିବା ନିମନ୍ତେ ସେ ପ୍ରଶଂସନୀୟ ପ୍ରୟାସ ଆରମ୍ଭ କରିଥିଲେ । ଓଡ଼ିଆ ଭାଷା ସଂକଟମୟ ପରିସ୍ଥିତି ଦେଇ ଗତି କରୁଥିବା ସମୟରେ ପ୍ରତ୍ୟେକ ଓଡ଼ିଆଙ୍କୁ ଗଙ୍ଗାଧର ମେହର ଏହି ଭାଷାକୁ ସୁରକ୍ଷା ଦେବାକୁ ଆଗେଇ ଆସିବା ନିମନ୍ତେ ଆହ୍ୱାନ ଜଣାଇଥିଲେ । ପ୍ରତ୍ୟେକ ସନ୍ତାନ ତା'ର ମାତୃ ପ୍ରତିମ ମାତୃଭାଷାର ସମ୍ମାନ ରକ୍ଷା କରିବା ନିମନ୍ତେ

ସଂକଳ୍ପବଦ୍ଧ ହେବା ବାଞ୍ଛନୀୟ । କବି ଗଙ୍ଗାଧର ମେହେର ନିଜ ଅନୁଭବକୁ ଅନୁଭବି ଓଡ଼ିଆମାନଙ୍କ ନିକଟରେ ଉପସ୍ଥାପନ କରିଥିଲେ । ନିଜ ମାତୃଭାଷା ପ୍ରତି ଅବହେଳା ଓ ଉଦାସୀନତା ପ୍ରକାଶ କରି ପୃଥିବୀର କୌଣସି ଜାତି କେବେ ବି ସମ୍ମାନାସ୍ପଦ ଆସନ ଅଳଙ୍କୃତ କରିନାହିଁ । ଗୋଟିଏ ଜାତିର ଗୌରବ, ସ୍ୱାଭିମାନ, ସାଂସ୍କୃତିକ ବିଭବ, ତା'ର ମାତୃଭାଷା ମଧ୍ୟରେ ଅନ୍ତର୍ନିହିତ । ତେଣୁ ଗଙ୍ଗାଧର ମେହେର ଯଥାର୍ଥରେ ବର୍ଣ୍ଣନା କରିଥିଲେ–

'ଉଚ୍ଚ ହେବା ପାଇଁ କର ଯେବେ ଆଶା
ଉଚ୍ଚ କର ଆଗେ ନିଜ ମାତୃଭାଷା ।'

ମାତୃଭାଷାର ପ୍ରେମରେ ନିମଜ୍ଜିତ ହେବା ପାଇଁ ଓଡ଼ିଆମାନଙ୍କୁ ଗଙ୍ଗାଧର ମେହେର ଆହ୍ୱାନ ଜଣାଇଥିଲେ । ମାତୃଭାଷା ପ୍ରତି ଅବଜ୍ଞା କରି କୌଣସି ବ୍ୟକ୍ତି କେବେ ନିଜ ପାଣ୍ଡିତ୍ୟର ପରିଚୟ ଦେଇପାରିନାହିଁ । ତାଙ୍କ ଦୃଷ୍ଟିଭଙ୍ଗୀରେ ମାତୃଭାଷାର ଉନ୍ନତି ଓ ବିକାଶ ପ୍ରତ୍ୟେକ ଓଡ଼ିଆଙ୍କ ଶ୍ରେୟ ଓ ଧ୍ୟେୟ ହେବା ଆବଶ୍ୟକ । ନିଜ ଜାତିର ଆତ୍ମପରିଚୟ, ସ୍ୱାଭିମାନ, ସମୃଦ୍ଧ ଗୌରବମୟ ଅତୀତର ବାର୍ତ୍ତାବହ ରୂପେ ମାତୃଭାଷା ସାର୍ଥକ ଭୂମିକା ଗ୍ରହଣ କରିଥାଏ ।

ପ୍ରକୃତି କବି ଗଙ୍ଗାଧର ମେହେରଙ୍କ ମାତୃଭୂମି ଓ ମାତୃଭାଷାକୁ ନିଃସ୍ୱାର୍ଥପର ଭାବରେ ଭଲ ପାଇ ନିଜ ଦେଶ ଓ ଜାତିପ୍ରୀତିର ପ୍ରକୃତ ପରିଚୟ ପ୍ରଦାନ କରିଛନ୍ତି । ମାତୃଭୂମି ଓ ମାତୃଭାଷା ପ୍ରତି ଅବହେଳା ଓ ଅବିଚାର କ୍ଷମଣୀୟ ନୁହେଁ । ଓଡ଼ିଆ ଜାତି ଆଜି ଯେଉଁ ଘଡ଼ିସନ୍ଧି ମୁହୂର୍ତ୍ତ ଦେଇ ଗତି କରୁଅଛି, ଏଭଳି ପରିସ୍ଥିତିରେ ଗଙ୍ଗାଧର ମେହେରଙ୍କର କାଳଜୟୀ ବାର୍ତ୍ତାକୁ ଗ୍ରହଣ କରିବା ଏକାନ୍ତ ଶ୍ରେୟସ୍କର । ପ୍ରତ୍ୟେକ ଓଡ଼ିଆଙ୍କ ପ୍ରାଣରେ ମାତୃଭୂମି ଓ ମାତୃଭାଷା ପ୍ରତି ମମତା ସୃଷ୍ଟି କରିବା ନିମନ୍ତେ କାର୍ଯ୍ୟ କରିବାକୁ ସେ ସମସ୍ତଙ୍କୁ ନିବେଦନ କରିଥିଲେ । ତାଙ୍କର କାଳଜୟୀ କବିତାର ପ୍ରାଣସ୍ପର୍ଶୀ ତଥା ଯାଦୁକରୀ ଶକ୍ତି ମାଧ୍ୟମରେ ସେ ଓଡ଼ିଆ ଜାତି ଓ ଭାଷାକୁ ଏକତ୍ରିତ କରିବା ପାଇଁ ଉଦ୍ୟମ କରିଥିଲେ ।

ପ୍ରତ୍ୟେକ ଜାତି ପାଇଁ ମାତୃଭାଷା ଚିରସ୍ମରଣୀୟ । ମାତୃଭାଷାର ସମ୍ମାନ ରକ୍ଷା ପ୍ରତ୍ୟେକ ବ୍ୟକ୍ତିର ପବିତ୍ର କର୍ତ୍ତବ୍ୟ ଓ ଦାୟିତ୍ୱ । କୌଣସି ସମୟରେ କିମ୍ବା ପରିସ୍ଥିତିରେ ମାତୃଭାଷା ପ୍ରତି ଅବମାନନା କୌଣସି ସଭ୍ୟ ଜାତି ପାଇଁ କେବେ ଗ୍ରହଣୀୟ ନୁହେଁ । ପ୍ରତ୍ୟେକ ଜାତିର ଆତ୍ମପରିଚୟର ପ୍ରତୀକ ମାତୃଭାଷା । ନିଜ ମାତୃଭାଷାର ପ୍ରଚାର, ପ୍ରସାର ଓ ସମୃଦ୍ଧି ଦିଗରେ ନିଜକୁ ଉତ୍ସର୍ଗୀକୃତ ମନୋଭାବ ନେଇ ଆଗେଇ ଆସିବା ଉଚିତ । ନିଜ ମାତୃଭାଷା ପ୍ରତି ବିମୁଖତା ଥିବା ବ୍ୟକ୍ତିଠାରୁ ଘୃଣ୍ୟ ଆଉ କେହି ନାହାନ୍ତି । ଓଡ଼ିଆ ଭାଷା ଓ ସାହିତ୍ୟକୁ ବଞ୍ଚେଇ ରଖିବା ନିମନ୍ତେ ଗଙ୍ଗାଧର ମେହେରଙ୍କୁ ବହୁ ଘାତ, ପ୍ରତିଘାତ ଓ ସଂଘର୍ଷର ପଥ ଅତିକ୍ରମ କରିବାକୁ ପଡ଼ିଛି । ସେ ତାଙ୍କ ଲକ୍ଷ୍ୟ ପଥରୁ କେବେ ବିଚ୍ୟୁତ ହୋଇ ନାହାନ୍ତି । ମାତୃଭାଷାର ସୁରକ୍ଷା ଓ ସ୍ଥାୟୀତ୍ୱ ପାଇଁ ସେ ଓଡ଼ିଆ ଜାତିର ପ୍ରାଣରେ ନୂତନ ସ୍ପନ୍ଦନ ସୃଷ୍ଟି କରିଥିଲେ ।

ସମ୍ବଲପୁରରେ ଓଡ଼ିଆ ଭାଷା ପରିବର୍ତ୍ତେ ହିନ୍ଦୀ ଭାଷା ପ୍ରଚଳନ ପାଇଁ ଇଂରେଜ ସରକାର ୧୮୯୪ ଖ୍ରୀଷ୍ଟାବ୍ଦରେ ଏକ ସରକାରୀ ବିଜ୍ଞପ୍ତି ପ୍ରକାଶ କଲେ । ଏହା ଓଡ଼ିଆ ଜାତି, ଭାଷା ଓ ସାହିତ୍ୟ ପ୍ରତି ଥିଲା ଚରମ ବିଦ୍ରୂପ ତଥା ନିର୍ମମ ଅପମାନ । ଇଂରେଜ ସରକାରଙ୍କର ଏତାଦୃଶ ନିଷ୍ପତ୍ତି ଓଡ଼ିଆ ପ୍ରେମୀ ଜନସାଧାରଣଙ୍କୁ ସ୍ତବ୍ଧ ତଥା ହତୋତ୍ସାହ କରିଥିଲା । ଏହି ଅପରିଣାମ ତଥା ଅବିବେକି ନିର୍ଦ୍ଦେଶ ବିରୁଦ୍ଧରେ ସମଗ୍ର ସମ୍ବଲପୁର ଜିଲ୍ଲାରେ ପ୍ରତିବାଦର ସ୍ୱର ଉତ୍ତୋଳିତ ହୋଇଥିଲା । ସ୍ୱାଭିମାନୀ ଓଡ଼ିଆମାନେ ନିଜ ମାତୃଭାଷାର ସୁରକ୍ଷା ନିମନ୍ତେ ସଂଗ୍ରାମ ପାଇଁ ଆଗେଇ ଆସିଲେ । ଓଡ଼ିଆ ଜାତିର ଏହି ଅସମୟରେ କବି ଗଙ୍ଗାଧର ମେହେର କେବେ ନିରବଦ୍ରଷ୍ଟା ନଥିଲେ । ଏହି ଅନ୍ୟାୟର ପ୍ରତିବାଦ କରି ତାଙ୍କର ଲେଖନୀ ଚଳଚଞ୍ଚଳ ହୋଇ ଉଠିଥିଲା । 'ଭାରତୀ ରୋଦନ' ଓ 'ଉତ୍କଳ ଭାରତୀଙ୍କ ନିବେଦନ' କବିତା ରଚନା କରି 'ସମ୍ବଲପୁର ହିତୈଷିଣୀ'ରେ ୩୦.୧୦.୧୮୯୪ ଏବଂ ୬.୩.୧୮୯୫ ସଂଖ୍ୟାରେ

ଯଥାକ୍ରମେ ପ୍ରକାଶିତ କରିଥିଲେ । ଏହି କବିତା ଦ୍ୱୟ ମାଧ୍ୟମରେ କବି ଗଙ୍ଗାଧର ମେହେର ପଶ୍ଚିମ ଓଡ଼ିଶାର ରାଜା, ମହାରାଜା, ଜମିଦାର, ବୁଦ୍ଧିଜୀବୀ, ଓଡ଼ିଆ ପ୍ରେମୀ ଶ୍ରଦ୍ଧାଳୁ ବ୍ୟକ୍ତିମାନଙ୍କୁ ଓଡ଼ିଆ ଭାଷାର ଦୁର୍ଦ୍ଦିନରେ ସହଯୋଗ ନିମନ୍ତେ ବିନମ୍ର ଅନୁରୋଧ କରିଥିଲେ । ହିନ୍ଦୀ ଭାଷାର ପ୍ରଚଳନ ପାଇଁ ଇଂରେଜ କର୍ତ୍ତୃପକ୍ଷଙ୍କର ଆଦେଶ କବି ଗଙ୍ଗାଧର ମେହେରଙ୍କ କବିପ୍ରାଣକୁ ଦାରୁଣ ଆଘାତ ଦେଇଥିଲା । ତେଣୁ ସେ 'ଭାରତୀ ରୋଦନ' ପ୍ରଥମ ପଦରେ ନିଜ ହୃଦୟର ଗଭୀରତମ ପ୍ରଦେଶରେ ସୃଷ୍ଟି ହୋଇଥିବା ଅଶାନ୍ତ ବେଦନାକୁ ପ୍ରକାଶ କରିଥିଲେ ।

କବି ଗଙ୍ଗାଧର ମେହେର 'ଭାରତୀ ରୋଦନ' ମାଧ୍ୟମରେ ବରପାଲି ଜମିଦାର ନୃପରାଜ ସିଂହଙ୍କର ସହଯୋଗ ଓଡ଼ିଆ ଭାଷାର ସୁରକ୍ଷା ପାଇଁ ଆବେଦନ କରିଥିଲେ ।

ଓଡ଼ିଆ ଭାଷା ଜନନୀର ଅକୁହା ମର୍ମ ବେଦନାକୁ କବି ସଠିକ୍ ଭାବରେ ଉପଲବ୍ଧି କରିଥିଲେ । କବି ଏହି କବିତା ମାଧ୍ୟମରେ ସମସ୍ତ ଓଡ଼ିଆ ସନ୍ତାନମାନଙ୍କୁ ଏକତ୍ରିତ କରି ଭାଷା ଜନନୀର ସମ୍ମାନ ରକ୍ଷା ନିମନ୍ତେ ପ୍ରୟାସ କରିଥିଲେ । ଓଡ଼ିଆ ଭାଷା–ସାହିତ୍ୟ ପ୍ରତି ଅସୀମ ଶ୍ରଦ୍ଧା ଓ ଆଗ୍ରହ ରଖିଥିବା ହରିହର ସିଂହ ରାୟ ବାହାଦୂରଙ୍କୁ କବି ଭାଷା ଜନନୀର ମର୍ମ ବେଦନାକୁ ଅବଗତ କରାଇବାକୁ କେବେ ଅବହେଳା କରି ନଥିଲେ । ସମସ୍ତ ସଚେତନ ଓଡ଼ିଆମାନଙ୍କୁ କବି ଗଙ୍ଗାଧର ମେହେର ନିଜ ଭାଷା ବିଲୋପରେ ଯେଉଁ କୁ–ପରିଣାମ ଭୋଗିବାକୁ ପଡ଼ିବ, ସେଥିପ୍ରତି ସର୍ତକ କରାଇ ଦେଇଥିଲେ ।

ଓଡ଼ିଆ ଭାଷା–ସାହିତ୍ୟ ପ୍ରତି ସହାନୁଭୂତି ତଥା ସମବେଦନା ନଥିବା ଓଡ଼ିଆମାନଙ୍କୁ କବି 'ଭାରତୀ ରୋଦନ' କବିତା ମାଧ୍ୟମରେ ତୀବ୍ର ସମାଲୋଚନା କରିଛନ୍ତି । ନିଜ ସ୍ୱାର୍ଥରେ ନିମଜ୍ଜିତ ଥାଇ ପଦ, ମର୍ଯ୍ୟାଦା, ଆଭିଜାତ୍ୟ ଓ ଅହଂକାରରେ ଅନ୍ଧଥିବା ଓଡ଼ିଆ ବ୍ୟକ୍ତିମାନଙ୍କୁ କବି କଠୋର ଭାବରେ ନିନ୍ଦା କରିବାକୁ କେବେ ପଛେଇ ନାହାନ୍ତି । ସେହି ସ୍ୱାର୍ଥାନ୍ୱେଷୀ ଓଡ଼ିଆମାନେ ଓଡ଼ିଆ ଭାଷା ଜନନୀକୁ ଚିହ୍ନିପାରି ନଥିବାରୁ କବିଙ୍କ ମନରେ ଗଭୀର କ୍ଷୋଭ ସୃଷ୍ଟି କରିଥିଲା । କବି ଗଙ୍ଗାଧର ମେହେର ସେମାନଙ୍କ ପ୍ରତି ତାଚ୍ଛଲ୍ୟ କରି ସ୍ୱରଚିତ କବିତାରେ ଉଲ୍ଲେଖ କରିଛନ୍ତି–

'ଆଉ କେତେଗୋଟି ମହାତ୍ମା ଅଛନ୍ତି
ସ୍ୱାର୍ଥପର ସିନା ସର୍ବେ
ଆଜି ଯାଏଁ ମୋତେ ଚିହ୍ନି ନାହାନ୍ତି ସେ
ପଦ, ମଦ, ଧନ, ଗର୍ବେ ।'

ଚିର ଦୁଃଖିନୀ ଓଡ଼ିଆ ଭାଷା ସମ୍ବଲପୁରରେ ରାଜାନୁଗ୍ରହରେ ସ୍ନେହ, ଶ୍ରଦ୍ଧା ଓ ସହାନୁଭୂତି ପାଇ ଲାଳିତପାଳିତ ହୋଇ ଆସୁଅଛି । ଓଡ଼ିଆ ଭାଷା ଓ ସାହିତ୍ୟ ଏଠାରେ ଉଚ୍ଚସ୍ଥାନ ଓ ସମ୍ମାନର ଅଧିକାରୀ । ଓଡ଼ିଆ ଭାଷା ଜନନୀ ଏଠାରେ ସ୍ୱତନ୍ତ୍ର ପ୍ରତିଷ୍ଠା ଓ ଖ୍ୟାତି ଅର୍ଜନ କରିଥିଲା । ସମ୍ବଲପୁରରେ ଓଡ଼ିଆ ଭାଷାର ଇତିହାସ ଗୌରବୋଜ୍ଜ୍ୱଳ ଓ ମହିମାମଣ୍ଡିତ । କବି ଗଙ୍ଗାଧର ମେହେର ଇଂରେଜ ପ୍ରଶାସକମାନଙ୍କ ନିକଟରେ ସମ୍ବଲପୁରରେ ଓଡ଼ିଆ ଭାଷାର ସ୍ଥିତି ଓ ପ୍ରଗତି ନିମନ୍ତେ ଅନେକ ସାକ୍ଷ୍ୟ ପ୍ରଦାନ କରିଛନ୍ତି । କବି 'ଉତ୍କଳ ଭାରତୀ ନିବେଦନ'ରେ ବର୍ଣ୍ଣନା କରିଛନ୍ତି –

'ଏ କଥାରେ ଯଦି ନ ହେବ ଛାମୁଙ୍କର ପରତେ
ସାକ୍ଷୀ ମାଳମାଳ ଦେଉଛି ଶ୍ରୀ ଛାମୁରେ ପରତେ ।
ବଳରାମ, ବାଳମୁକୁନ୍ଦ ପଟ୍ଟନାୟକ ଯୁଗ
ପୂର୍ବେ ଦେଖିଥିଲେ ଏକା ସେ ଯାଇ ଅଛି ସେ ଯୁଗ ।
ଗୋପିନାଥ ଗୁରୁ ଗଲେଣି ଚଳି ଅମର ଧାମ
ସେ ଥିଲେ ମଧ୍ୟପ୍ରଦେଶରେ ରଖିଥାନ୍ତେ ମୋ ନାମ ।
ବନମାଳୀ ମିଶ୍ର ଅଛନ୍ତି ଆଜି ସାରଙ୍ଗଗଡ଼ରେ
ମୋହ ପାଇଁ ଦେଇ ପାରନ୍ତି ସାକ୍ଷ୍ୟ ପ୍ରାଣ ପଣରେ ।
ଦୀନବନ୍ଧୁ ପଟ୍ଟନାୟକ ସ୍ୱର୍ଣ୍ଣପୁର ଦେୱାନ
ଉତ୍ତମ ସାକ୍ଷ୍ୟ ମୋ ଅଟନ୍ତି ଅଛନ୍ତି ବର୍ତ୍ତମାନ ।

ଚିନ୍ତାମଣି ବିଦ୍ୟାଭୂଷଣ ବସିଛନ୍ତି ନିଶ୍ଚଳେ
ପଚାରିଲେ ତାଙ୍କୁ ମୋ କଥା ସବୁ କହିବେ ଭଲେ ।
ସତ୍ୟବାଦୀ ପାଢ଼ୀ ବୈକୁଣ୍ଠ ମିଶ୍ର ଅଛନ୍ତି ରହି
ହରିବନ୍ଧୁ ପଟ୍ଟନାୟକ ମଧ୍ୟ ପାରନ୍ତି କହି ।'

ଉତ୍କଳ ଜନନୀର ଉପରୋକ୍ତ ସୁଯୋଗ୍ୟ ବରେଣ୍ୟ ସନ୍ତାନମାନେ ମାତୃଭାଷାର ସୁରକ୍ଷା ପାଇଁ ଆଗେଇ ଆସିବା ନିମନ୍ତେ କବି ଗଙ୍ଗାଧର ମେହର ଆବେଦନ କରିଥିଲେ । କେନ୍ଦ୍ର ପ୍ରଦେଶର ଇଂରେଜ କମିଶନର ସାହେବଙ୍କୁ ମଧ୍ୟ ଅନୁରୂପ ଭାବରେ ସମ୍ବଲପୁରରେ ଓଡ଼ିଆ ଭାଷାର ସ୍ଥିତିର ସୁରକ୍ଷା ପାଇଁ ପ୍ରାର୍ଥନା କରିଥିଲେ ।

କବି ଗଙ୍ଗାଧର ମେହର ଓଡ଼ିଆ ଭାଷା ଏକ ଅସମୟ ପରିସ୍ଥିତି ମଧ୍ୟ ଦେଇ ଗତି କରୁଥିବା ସମୟରେ ପଶ୍ଚିମ ଓଡ଼ିଶାର ରାଜା ମହାରାଜାମାନଙ୍କର ନିରବତାକୁ ସମାଲୋଚନା କରିଛନ୍ତି । ଭାଷା ସାହିତ୍ୟର ସୁରକ୍ଷା ପାଇଁ କବି ନିରବଚ୍ଛିନ୍ନ ଭାବରେ ରାଜା, ମହାରାଜା, ଜମିଦାରମାନଙ୍କୁ ସମାଲୋଚନା କରି ଓଡ଼ିଆ ଭାଷା ପ୍ରତି ସେମାନଙ୍କର ଦୃଷ୍ଟି ଆକର୍ଷଣ କରିବା ନିମନ୍ତେ ଅବିରତ ଉଦ୍ୟମ କରିଛନ୍ତି । ବାମଣ୍ଡା ନରପତି, ସୁସାହିତ୍ୟିକ ତଥା ଓଡ଼ିଆ ଭାଷା ସାହିତ୍ୟର ମହାନ୍ ପୃଷ୍ଠପୋଷକ ବାସୁଦେବ ସୁଢ଼ଳ ଦେବଙ୍କୁ କବି ଓଡ଼ିଆ ଭାଷାର ଅସମୟରେ ସାହାଯ୍ୟ କରିବା ନିମନ୍ତେ ଆଗେଇ ଆସିବାକୁ ଅନୁରୋଧ କରିଥିଲେ । ନିରବତା ଭଙ୍ଗ କରିବା ନିମନ୍ତେ କବି 'ଉତ୍କଳ ଭାରତୀଙ୍କ ନିବେଦନ' ମାଧ୍ୟମରେ ରାଜା ସୁଢ଼ଳ ଦେବଙ୍କ ପ୍ରତି ଉଲ୍ଲେଖ କରିଥିଲେ –

'ସୁଢ଼ଳ ଦେବ ହେ ବିବିଧ ଗୁଣେ ହୋଇ ପଣ୍ଡିତ
ଉପାଧି ମାଳରେ ନାମକୁ କରିଅଛ ମଣ୍ଡିତ
ହୋଇଅଛ ଆଜ ଭାରତେ ରାଜବଂଶର ମୁନି
ଦେଖି ଦେଖି ମୋରଏଦଶା କିମ୍ପା ହୋଇଛ ତୁନି ।'

ବଲାଙ୍ଗୀର ପାଟଣା ଚୌହାନ ବଂଶୀୟ ରାଜା ରାମଚନ୍ଦ୍ର ଦେବ ବାଘ ଶିକାର ପ୍ରିୟ । ଓଡ଼ିଆ ଭାଷା ରୂପକ ଗାଇ ଆଜି ଗୁହାଳରେ ଶୃଗାଳ ଦ୍ୱାରା ଆକ୍ରମିତ ହେଉଅଛି । ଓଡ଼ିଆ ଭାଷାର ଅବକ୍ଷୟ ସମୟରେ ବଲାଙ୍ଗୀର ପାଟଣା ମହାରାଜା ରାମଚନ୍ଦ୍ର ଦେବଙ୍କର ସାହାଯ୍ୟ ପାଇଁ କବି ବ୍ୟାକୁଳତା ପ୍ରକାଶ କରିଛନ୍ତି । ଯଦି ଓଡ଼ିଆ ଭାଷା ରୂପକ ଗାଇ ମୃତ୍ୟୁବରଣ କରେ ଆଉ ମଧୁର କ୍ଷୀର ମିଳିବା ସମ୍ଭବପର ନୁହେଁ । ଏଥିନିମନ୍ତେ କିଛି ଉଦ୍ୟମ କରିବା ପାଇଁ ସେ ମହାରାଜା ରାମଚନ୍ଦ୍ର ଦେବଙ୍କୁ ଅନୁରୋଧ କରିଥିଲେ । ରାମଚନ୍ଦ୍ର ଦେବଙ୍କ ଉଦ୍ଦେଶ୍ୟରେ ସେ ବର୍ଣ୍ଣନା କରିଥିଲେ –

'ରାମଚନ୍ଦ୍ର ଦେବ ପାଟଣା ମହୀ ମଣ୍ଡଳେଶ୍ୱର
ବାଘ ମାରିବାକୁ ବୁଲୁଛ ବନେ ନିଶି ବାସର ।
ଗୁହାଳରେ ପଶି ଶୃଗାଳ ଖାଇଯାଉଛି ଗାଈ
ଏ ଆଡ଼କୁ କିମ୍ପା ତୁମ୍ଭର କିଛି ନଜର ନାହିଁ ।
ଏ ଗାଈଟି ମଲେ ମିଳିବ ନାହିଁ ମଧୁର କ୍ଷୀର
ଶୃଗାଳ ନ ପଶୁ ଗୁହାଳେ ଆହେ ଚୌହାନ ବୀର ।'

ଅନୁରୂପ ଭାବରେ କବି ଗଙ୍ଗାଧର କଳାହାଣ୍ଡି ନୃପତି ରଘୁ କିଶୋରଙ୍କୁ ମଧ୍ୟ ଓଡ଼ିଆ ଭାଷାକୁ ମୃତ୍ୟୁମୁଖରୁ ରକ୍ଷା କରିବା ନିମନ୍ତେ ଅନୁରୋଧ କରିଛନ୍ତି । ଓଡ଼ିଆ ଭାଷାର ଉଚ୍ଛେଦ ହେଲେ ତା'ର କୁପରିଣାମ ସମସ୍ତଙ୍କୁ ଭୋଗିବାକୁ ପଡ଼ିବ । ସମସାମୟିକ, ସମଦର୍ଶୀ, କଳାହାଣ୍ଡି ନୃପତି ରଘୁ କିଶୋରଙ୍କର ଦୃଷ୍ଟି ଆକର୍ଷଣ କରିବା ନିମନ୍ତେ ସେ ଉଲ୍ଲେଖ କରିଥିଲେ –

'ଦେଖ କିନା ରଘୁ କିଶୋର କଳାହାଣ୍ଡି ନୃପତି
ଘର ଭାତ ହାଣ୍ଡି ନୁହେଁ କି ମୁଁ ଉତ୍କଳ ଭାରତୀ ?
ସେହି ଭାତ ହାଣ୍ଡି ଆଗରେ ତୁମ୍ଭେ ଯାଉଛ ଫୁଟି
ଖାଇବାକୁ ଏବେ ପଡ଼ିବ ଶୁଖା କର୍କଶ ରୁଟି ।।'

ସାହିତ୍ୟ ଓ ସଂସ୍କୃତିର ଏକ ମହାନ୍ କ୍ଷେତ୍ର ଭାବରେ ସୁବର୍ଣ୍ଣପୁର ଗଡ଼ଜାତର ସୁଖ୍ୟାତି ବହୁ ପୂର୍ବରୁ ଅଛି । ଗଙ୍ଗାଧର ମେହରଙ୍କର ସମସାମୟିକ ସୁବର୍ଣ୍ଣପୁର ମହାରାଜା ପ୍ରତାପ ରୁଦ୍ର ଦେବ ଜଣେ ବିଚକ୍ଷଣ ସଂସ୍କୃତ ସାହିତ୍ୟ ସ୍ରଷ୍ଟା ଥିଲେ । ସାହିତ୍ୟ ଅନୁରାଗୀ ଓ ପ୍ରେମୀ ଭାବରେ ସେ ସୁପରିଚିତ । ଅନେକ କାଳଜୟୀ ସଂସ୍କୃତ

କାବ୍ୟ କବିତା ରଚନା କରି ସାହିତ୍ୟିକ ଜଗତରେ ଏକ ଇତିହାସ ସୃଷ୍ଟି କରିଥିଲେ । ଓଡ଼ିଆ ଭାଷା ସମ୍ବଲପୁରରେ ଦୟନୀୟ ପରିସ୍ଥିତିର ସମ୍ମୁଖୀନ ହେଉଥିବା ସମୟରେ ଗଙ୍ଗାଧର ମେହେର ସୁବର୍ଣ୍ଣପୁର ନରପତିଙ୍କ ସାହାଯ୍ୟ ପାଇଁ ବିନିତ ପ୍ରାର୍ଥନା କରିଥିଲେ । ସେ ନିଜସ୍ୱ ଭାଷାରେ ଉଲ୍ଲେଖ କରିଥିଲେ –

'ସ୍ୱର୍ଣ୍ଣପୁର ପତି ବସିଛ ସ୍ୱର୍ଣ୍ଣମୟ ଆସନେ
ସଂସ୍କୃତେ ମାତିଛ ମୋ କଥା କାହିଁ ପଡ଼ିବ ମନେ ।'

କବି ଗଙ୍ଗାଧର ମେହେର ସମ୍ବଲପୁର ଭାଷା ଆନ୍ଦୋଳନରେ ଗୁରୁତ୍ୱପୂର୍ଣ୍ଣ ସଂଗ୍ରାମୀ ଭୂମିକା ଗ୍ରହଣ କରିଥିଲେ । ସେ ଓଡ଼ିଆ ଭାଷା ପ୍ରତି ନିଜର ଆନ୍ତରିକତାର ପରିଚୟ ଦେବା ସଂଗେ ସଂଗେ ଜନମତକୁ ପ୍ରଭାବିତ କରିବାରେ ସମର୍ଥ ହୋଇଥିଲେ । ଓଡ଼ିଆ ଭାଷା–ସାହିତ୍ୟର ସୁରକ୍ଷା ଦିଗରେ କବି ଗଙ୍ଗାଧର ମେହେରଙ୍କର ନିଷ୍ଠାପର ଉଦ୍ୟମକୁ ଓଡ଼ିଆ ଜାତି ଶ୍ରଦ୍ଧାର ସହିତ ସ୍ମରଣ କରୁଥିବେ । ସମସ୍ତ ଘାତ, ପ୍ରତିଘାତ ଓ ସଂଘର୍ଷର ପଥକୁ ସଫଳତାର ସହିତ ସେ ଅତିକ୍ରମ କରି ଓଡ଼ିଆ ଭାଷାକୁ ବଞ୍ଚେଇ ରଖିବାରେ ଯେଉଁ ସାର୍ଥକ ଭୂମିକା ଗ୍ରହଣ କରିଥିଲେ, ସେଥିପାଇଁ ଆଜିର ପବିତ୍ର ଉତ୍କଳ ଦିବସ ଅବସରରେ ତାଙ୍କ ପ୍ରତି ଓଡ଼ିଆ ଜାତିର ବିନମ୍ର ଶ୍ରଦ୍ଧାଞ୍ଜଳି ।

ଅଧ୍ୟାପକ, ଇତିହାସ ବିଭାଗ
ସନାତନ ହରିଚନ୍ଦନ ମହାବିଦ୍ୟାଳୟ
ମଦନପୁର, ଖୋର୍ଦ୍ଧା – ୭୫୨୦୫୪



# ସରକାରୀ ଓ ସାମାଜିକ ସ୍ତରରେ ଓଡ଼ିଆ ଭାଷାର ବ୍ୟବହାର

**ଜୟନ୍ତୀ ରଥ**

୧୯୩୬ ମସିହା ଅପ୍ରେଲ ପହିଲାରେ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ହେବା ଆଧୁନିକ ଭାରତର ଇତିହାସର ଏକ ଗୁରୁତ୍ୱପୂର୍ଣ୍ଣ ଘଟଣା । ହଜାର ହଜାର ଓଡ଼ିଆ ଭାଷାପ୍ରେମୀ ଜନତାଙ୍କର ଦୀର୍ଘ ବର୍ଷ ବ୍ୟାପୀ ଅଦମ୍ୟ, ଅକ୍ଳାନ୍ତ ଆନ୍ଦୋଳନର ଏହା ଥିଲା ଫଳଶ୍ରୁତି । ଭାଷା ଭିତ୍ତିରେ ରାଜ୍ୟର ମାନ୍ୟତା ଅର୍ଜନ କରିବାରେ ଓଡ଼ିଶା ହିଁ ଥିଲା ପ୍ରଥମ ରାଜ୍ୟ । ଏହା ପରେ ପରେ ଭାଷା ସୂତ୍ରରେ ଆନ୍ଧ୍ର, କର୍ଣ୍ଣାଟକ ଓ କେରଳ ପ୍ରଦେଶ ଗଠିତ ହେଲା, ଖଣ୍ଡ ବିଖଣ୍ଡିତ ଭୂଗୋଳ ନୂତନ ରୂପରେଖ ପାଇଥିଲା ଓଡ଼ିଆ ଭାଷାକୁ ଆଧାର କରି । ସେଇ ବ୍ରିଟିଶ ଢାଞ୍ଚାକୁ ଅନୁସରଣ କରି ଆମେ ବହୁ ବର୍ଷ ଯାଏଁ ଓଡ଼ିଶାକୁ ଓରିଶା, ଓଡ଼ିଆକୁ ଓରିୟା ଲେଖି ଆସୁଥିଲୁ । ସରକାରୀ ବିଜ୍ଞପ୍ତି ଅନୁସାରେ ଏହି ଉଚ୍ଚାରଣ/ଲିଖନରେ ପରିବର୍ତ୍ତନ କରାଯାଇଛି କିଛି ବର୍ଷ ତଳେ । ସମସ୍ତ ସରକାରୀ କାର୍ଯ୍ୟାଳୟରେ ଓଡ଼ିଆ ଭାଷାର ବ୍ୟବହାର ପାଇଁ ପଦକ୍ଷେପ ନିଆଯାଇଛି । ନଥିପତ୍ରରେ ବ୍ୟବହୃତ ଇଂରାଜୀ ଶବ୍ଦଗୁଡ଼ିକର ଓଡ଼ିଆ ପ୍ରତିଶବ୍ଦ ସମ୍ବଳିତ ପୁସ୍ତକ ପ୍ରକାଶିତ ହୋଇଛି । ଭାଷାର ସୁରକ୍ଷା ପାଇଁ, ଅଭିବୃଦ୍ଧି ପାଇଁ ଓଡ଼ିଆ ଭାଷା ପ୍ରତିଷ୍ଠାନ ଉପରେ ଦାୟିତ୍ୱ ନ୍ୟସ୍ତ କରାଯାଇଛି । ସ୍ୱତନ୍ତ୍ର ଓଡ଼ିଆ ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠା ନିମନ୍ତେ ତ୍ୱରିତ ପଦକ୍ଷେପ ନିଆଯାଉଛି । ବିଦ୍ୟାଳୟ, ମହାବିଦ୍ୟାଳୟ, କାର୍ଯ୍ୟାଳୟ, ସରଣୀ, ବିପଣୀ ସବୁଠାରେ ଓଡ଼ିଆରେ ସୂଚନା ଲଗାଯାଇଛି । ତଥାପି ଏହା କହିବାରେ ଦ୍ୱିଧା ନାହିଁ ଯେ, ସରକାରୀ ସ୍ତରରେ ଓଡ଼ିଆ ଭାଷାକୁ ସମ୍ପୂର୍ଣ୍ଣ ରୂପେ ଉପଯୋଗ କରିବା ସହଜ ଲାଗୁନାହିଁ । ସ୍ୱଚ୍ଛନ୍ଦ ଲାଗୁନାହିଁ । କେତେକ ସ୍ଥଳରେ ଉପଯୁକ୍ତ ପ୍ରତିଶବ୍ଦ ମିଳୁନାହିଁ ତ କେଉଁଠି ଓଡ଼ିଆ ଅପେକ୍ଷା ଇଂରାଜୀ ଶବ୍ଦ ବ୍ୟବହାର କରିବା ଅଧିକ ସୁବିଧାଜନକ ମନେହେଉଛି । ଉଦାହରଣ ସ୍ୱରୂପ–କଳା ସାମଗ୍ରୀର ତନଖି କାମ ଚାଲିଛି କହିବା ଅପେକ୍ଷା ଆର୍ଟ ଅବ୍‌ଜେକ୍ଟର ଫିଜିକାଲ୍ ଭେରିଫିକେସନ୍ କାମ ଚାଲିଛି କହିବା ବେଶି ଅର୍ଥପୂର୍ଣ୍ଣ ମନେହୁଏ । ଏଠାରେ ତନଖି ଶବ୍ଦଟି ଫିଜିକାଲ୍ ଭେରିଫିକେସନ୍‌ର ସଠିକ୍ ଅର୍ଥ ନିରୂପଣ ସାମର୍ଥ୍ୟ ରଖୁନାହିଁ । ରାସାୟନିକ ପ୍ରକ୍ରିୟାରେ ସଂରକ୍ଷଣ କହିବା ଅପେକ୍ଷା କନ୍‌ଜରଭେସନ୍ କହିବାକୁ ସହଜ ଲାଗେ । ବର୍ଷ ବର୍ଷ ଧରି କହିବା ଫଳରେ ଅଭ୍ୟାସରେ ପଡ଼ିଯାଇଥିବା ବହୁ ଇଂରାଜୀ ଶବ୍ଦ ଆମେ ସ୍ୱତଃସ୍ଫୂର୍ତ୍ତ କହିଥାଉ, ଯଥା– ରିପୋର୍ଟ, ପ୍ରସ୍‌ପେକଟସ୍, ପ୍ରୋଗାମ ଓ ପ୍ରୋଫାଇଲ୍ ଇତ୍ୟାଦି । ଫାଇଲ୍ ପୁଟ୍ ଅପ୍ ହୋଇଛି, ନୋଟିଫିକେସନ୍ ବାହାରି ଯାଇଛି । ଏହିଭଳି ଆହୁରି ବହୁତ କଥାକୁ ସଂପୂର୍ଣ୍ଣ ଓଡ଼ିଆରେ କହିବାର ମାନସିକ ପ୍ରସ୍ତୁତି ଆମର ଆସିନାହିଁ, ଏହା ସ୍ୱୀକାର କରିବାକୁ ହେବ । ଲିଖିତ ଭାବରେ ଉଚ୍ଚସ୍ତରୀୟ ବୈଠକ, ନୀତି ନିର୍ଦ୍ଧାରଣ ବୈଠକ, ସମ୍ମିଳନୀ କକ୍ଷ, ସମ୍ମାନ, ସ୍ଥଗିତ ଏସବୁ ଶବ୍ଦ ବ୍ୟବହୃତ ହେଉଛି । ତେବେ ଫାଇନାଲ୍ ଡ୍ରାଫ୍ଟକୁ ଚୂଡ଼ାନ୍ତ ଚିଠା, ରିପ୍ରିଣ୍ଟକୁ ପୁନଃମୁଦ୍ରଣ କହିବା ପୂର୍ବରୁ ଆମକୁ କିଛି କ୍ଷଣ ଭାବିବାକୁ ପଡୁଛି । କ୍ରାଇମ୍‌ବ୍ରାଞ୍ଚ ଇନ୍‌ଭେଷ୍ଟିଗେସନ୍ , ଭିଜିଲାନ୍‌ସ ଇନ୍‌ଭେଷ୍ଟିଗେସନ୍‌କୁ ଓଡ଼ିଆରେ କ'ଣ କୁହାଯିବ, ତାହା ଆମେ ସ୍ୱତଃ ଭାବିବାକୁ ଯାଉନାହିଁ ।

କେବଳ ସରକାରୀ ସ୍ତରରେ ନୁହେଁ, ସାମାଜିକ ସ୍ତରରେ ମଧ୍ୟ ଇଂରାଜୀ ବାକ୍ୟ ବହୁଳ ବ୍ୟବହାର ଜାରି ରହିଛି । କାରଣ ଥିଲା ଝିଅଟି ବିବାହ ପରେ ଉଚ୍ଚତର ଗବେଷଣା ଅବ୍ୟାହତ ରଖିବାକୁ ଚାହିଁଲା । ବରପକ୍ଷ ଝିଅର

ଏହି ଉଚ୍ଚାକାଂକ୍ଷାକୁ ନାପସନ୍ଦ କରି କହିଲେ–ଝିଅ ପିଲା ହୋଇ ଏତେ ଗୋଟେ ଆମ୍ବିସିଅସ୍ କ'ଣ ? ବାପା ମା'ଙ୍କର ଏ ସଂକ୍ରାନ୍ତରେ ଆଲୋଚନା ଶୁଣି ଝିଅଟି କ୍ଷୁବ୍ଧ ହୋଇ କହିଲା–ଆମ୍ବିସନ୍ ଆଉ ଡ୍ରିମ୍ କ'ଣ ପୁଅମାନଙ୍କର ମନୋପଲି, ସେଥିରେ ବି ଜେଣ୍ଡର୍‌ର ଷ୍ଟାମ୍ପ୍ ବାଜିଛି ? ତା'ର ପ୍ରତିବାଦ ଯଥାର୍ଥ, ଯୁକ୍ତିସଙ୍ଗତ ଥିଲା । ତେବେ ଉଚ୍ଚ ଆଶା, ସ୍ୱପ୍ନ, ଅଧିକାର, ଲିଙ୍ଗ, ଏସବୁ ବଦଳରେ ଦୁଇଟି ବାକ୍ୟରେ ସେ ଯେଉଁ ପାଞ୍ଚଟି ଇଂରାଜୀ ଶବ୍ଦ କହିଲା, ସେଥିପାଇଁ ତାକୁ ଦୋଷ ଦିଆଯାଇପାରିବ ନାହିଁ । ଆମେ ଆମ ପିଲାମାନଙ୍କର ଭାଷାଜ୍ଞାନ ବଢ଼େଇବା ଦିଗରେ ଯତ୍ନଶୀଳ ନୋହୁଁ । ସେମାନଙ୍କୁ ଆମେ ସମ ଅର୍ଥବୋଧକ, ବିପରୀତ ଅର୍ଥବୋଧକ ଶବ୍ଦ ଶିଖାଉ ନାହୁଁ । ପର୍ବତର ପ୍ରତିଶବ୍ଦ ଗିରି, ନଦୀର ତଟିନୀ, ଉଦ୍ୟାନର କାନନ, ସୂର୍ଯ୍ୟର ମାର୍ତ୍ତଣ୍ଡ, ଏହା କେତେ ଯେ ମାଧ୍ୟମିକ ସ୍ତରର ପିଲା ଜାଣନ୍ତି । ମନେଅଛି ବହୁ ବର୍ଷ ତଳେ ଶ୍ରେଣୀରେ କଳାପଟାରେ ଶିକ୍ଷକ ଲେଖିଥିଲେ ପ୍ରବେଶର ବିପରୀତବୋଧକ ଶବ୍ଦ ପ୍ରସ୍ଥାନ । ପୁରସ୍କାରର ତିରସ୍କାର । ବାଟରେ ହାତ ଧରି ଚାଲିବାବେଳେ ବାପା ଶିଖେଇ ଥିଲେ 'ଦ'ରେ 'ବ' ଫଳା ଓ ହ୍ରସ୍ୱ ଇ କାର, 'ତ'ରେ ଦୀର୍ଘ ଈ କାର ଆଉ 'ୟ'–ଦ୍ୱିତୀୟ । 'ମ'ରେ ହ୍ରସ୍ୱ 'ଉ', 'ହ'ରେ ଦୀର୍ଘ ଊ, 'ର୍ତ'ରେ ରେଫ୍–ମୁହୂର୍ତ୍ତ । ବନାନ୍ ଶୁଦ୍ଧିର ଏଇ ସୁକୁମାର ପରିଚର୍ଯ୍ୟା ନିମନ୍ତେ ଅବସର କାହିଁ ଆଜିର ବ୍ୟସ୍ତ ଜୀବନରେ, ଘରେ, ବନ୍ଧୁ ମେଳରେ, ସାମାଜିକ ଉତ୍ସବ ଅନୁଷ୍ଠାନମାନଙ୍କରେ ଏକାଠି ହେବାବେଳେ ଆମେ ଶୁଦ୍ଧ ଓଡ଼ିଆରେ କଥା ହେବାର ନିୟମ ପାଳନ କରୁ କି, ଜାଗାଟା ଆଗେଇ ଗଲାଣି, ଦୀପଟା ଦିକି ଦିକି ଜଳୁଚି , ସ୍ୱରଟା ଗଣଗଣିଆ ଶୁଭୁଚି ଏଇଭଳି ଲୋକପ୍ରଚଳିତ କଥା ନୂଆ ପିଢ଼ିର ପୁଅଝିଅଙ୍କ ପକ୍ଷରେ ବୁଝିବା କଷ୍ଟସାପେକ୍ଷ । କାରଣ ବ୍ୟକ୍ତିଗତ ଭାବେ ଆମେ ଏଭଳି ଭାଷା ବ୍ୟବହାର କରୁନାହୁଁ । ଘର ଅଛି । କିନ୍ତୁ ଘରର ପରିବେଶକୁ ଘରୁଆ କରିବାର କଳା ଆୟତ୍ତ କରିବାର ସ୍ପୃହା ନାହିଁ । ଖାଇଚୁ ଟି ! ଯାଇଥିଲୁ ପରା । ଦେଖିଲୁ ତ – ଏହିଭଳି ପାଦ ପୂରଣ କରୁଥିବା ବଚନିକା ଆଉ ଚଳୁନାହିଁ । ଆଜିକାଲି ଏଭଳି କହିବାର ଢଙ୍ଗକୁ ପୁରୁଣାକାଳିଆ ଭାବୁଛନ୍ତି ଶିକ୍ଷିତ ବର୍ଗ । ଏଇସବୁ ଛୋଟ ଛୋଟ ଶବ୍ଦରେ ନିହିତ ଥାଏ ଆମ ଭାଷାର ଆନ୍ତରିକ ସ୍ପର୍ଶ ।

ଭାଷା କ୍ରମଶଃ ହରେଇ ଚାଲିଛି ତା'ର ସତେଜପଣ । ଏହା ଗଭୀର ଉଦ୍‌ବେଗର ବିଷୟ । ଗଭୀରତା ହରାଉଥିବା ନଦୀ ସହଜରେ ବନ୍ୟାବିପନ୍ନ ହେବାର ଆଶଙ୍କା ଥାଏ । ଠିକ୍ ସେହିପରି ଭାଷାରୁ ଯଦି ଚୁମ୍ବକୀୟ ଶକ୍ତି ହଜିଯାଏ , ତେବେ ଅଚିରେ ଅନ୍ୟ ଭାଷା କାୟା ବିସ୍ତାର କରିଯିବ ଆମ ସମାଜ ଜୀବନରେ ।

ମନେ ପଡୁଚି , କଥାରେ କଥାରେ ଢଗ ମେଲୁଥିଲା ଜେଜେ ମା' । ବୋଲହାକ କରିବା ପାଇଁ ତା' ପାଖକୁ ଆସୁଥିବା ଗୌରା ମା' ତା' ଦୁଃଖ ବଖାଣିଲା ବେଳେ ଦରଦଭରା ସ୍ୱରରେ ଜେଜେ ମା' କହୁଥିଲା–କାହାକୁ କହିବୁ, ଆପଣା ସୁନା ତ ଭେଣ୍ଡି । ଆଉ କେତେବେଳେ କହୁଥିଲା–ଗିରସ୍ତ ଅଯୋଗ୍ୟ ପଣେ, ମାଇପ ଶୁଅଇ ଚାକୁଣ୍ଡା ବଣେ । ସେତେବେଳେ ବୁଝି ନ ଥିଲି । ଆଜି ବୁଝୁଚି । ସମବେଦନା ଜଣେଇବାର ଏଭଳି ପରୋକ୍ଷ ଅଭିବ୍ୟକ୍ତି କେମିତି ଶୀତଳେଇ ଦେଇପାରେ ଡହ ଡହ ତତଲା ଦୁଃଖକୁ । ଅପ୍ରତ୍ୟାଶିତ, ମତଲବ୍ ଖୋର, ଅତିଥିଙ୍କୁ ପାଛୋଟି ନେଉ ନେଉ ଆଇ ମାଆ କହୁଥିଲା– କି ଅପୁରୁବ , ଦିନେ ନାଇଁ କି କାଳେ ନାଇଁ , ଗହ୍ଣା ପୁନେଇଁରେ ମାଇଁ ମାଇଁ । (ହୁଦେଶେ କେମିତି ମନେ ପଡ଼ିଲୁ ଆମେ,କେବେ ତ ଆସୁ ନ ଥିଲ)– ସିଧାସଳଖ ଏଭଳି କହି ଆଗନ୍ତୁକଙ୍କୁ ଅପମାନିତ କରିବା ଓଡ଼ିଆ ଘରର ବିଧି ନୁହେଁ । ପରୋକ୍ଷ, ଇଙ୍ଗିତଧର୍ମୀ କଥନିକାରେ ଭରପୂର ଆମର ଭାଷା । ଆମର ସାହିତ୍ୟ ନିତିଦିନର ଜୀବନଚର୍ଯ୍ୟାରେ ସେସବୁରେ ପ୍ରତିଫଳନ ଏବେ ଦେଖିବାକୁ ମିଳେନି । କିନ୍ତୁ ଏସବୁ ଭିତରେ ହିଁ ଛପି ରହିଛି ଆମ ଓଡ଼ିଆ ଭାଷାର ଚମକ । ମାଧୁର୍ଯ୍ୟ ।

ଏକ ପକ୍ଷରେ ବିଜ୍ଞାନର ଦ୍ରୁତ ଅଗ୍ରଗତି । କମ୍ପ୍ୟୁଟର ନିର୍ଭରଶୀଳତା, ଅପର ପକ୍ଷରେ ସଂସ୍କୃତିର ପ୍ରଧାନ ଓ ପ୍ରମୁଖ ବିଭାବ ଭାଷାର ଅବକ୍ଷୟ । ଭାଷା ପ୍ରତି ଉଦାସୀନତା ଏକ ସାଂସ୍କୃତିକ ଅପରାଧ । ଉଣା ଅଧିକେ ଆମେ ସମସ୍ତେ ଏହି ଅପରାଧର ଭାଗୀଦାର– କହିବାକୁ ଓ ଶୁଣିବାକୁ ଅପ୍ରିୟ ଲାଗିଲେ ବି ଏହା ସତ୍ୟ ।

---

ସାଇସୁଧା, ୩୬୫/୩୦୨୫, ପଟିଆ
ଶିଶୁ ବିହାର, କିଟ୍, ଭୁବନେଶ୍ୱର–୨୪

# ଓଡ଼ିଶା ପ୍ରଦେଶ, ଓଡ଼ିଆ ଭାଷା ଓ ବିଧାନସଭାରେ ଭାଷା ଆଇନ

ପବିତ୍ର ମହାରଥୀ

ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନର ମୂଳ ଆଧାର ଥିଲା ଆମର ମାତୃଭାଷା ଓଡ଼ିଆ । ଓଡ଼ିଆ ଭାଷାକୁ ମାତୃଭାଷା ମାନୁଥିବା ଭୌଗୋଳିକ ଭୂଖଣ୍ଡକୁ ଏକାଠି କରି ଓଡ଼ିଶା ରାଜ୍ୟ ଗଠନ କରାଯାଇଛି । ଏକମାତ୍ର ଉଦ୍ଦେଶ୍ୟ ଥିଲା ଯେ, ମାତୃଭୂମିର ଭାଷା ଓଡ଼ିଆ ହିଁ ସରକାରୀ ଭାଷା ଭାବେ ବ୍ୟବହାର କରାଯିବ । ମାତୃଭୂମି ପାଇଁ ମାତୃଭାଷାର ଭୂମିକା ଗୁରୁତ୍ୱପୂର୍ଣ୍ଣ, ଯାହାକି ମନୁଷ୍ୟର ସାମାଜିକ ମୂଲ୍ୟବୋଧକୁ ଅକ୍ଷୁଣ୍ଣ ରଖିବାରେ ସହଯୋଗ କରିଥାଏ । ଗୋଟିଏ ପିଢ଼ିରୁ ଆଉ ଗୋଟିଏ ପିଢ଼ିକୁ ଶିକ୍ଷା ଦେବାରେ ଏବଂ ସମାଜର ଅଙ୍ଗୀକାରବଦ୍ଧତାକୁ ସଠିକ ରାସ୍ତାରେ ନେବା ପାଇଁ ଯେଉଁ ଆବଶ୍ୟକତା ରହିଛି ତାହାକୁ ଆଗଇ ନେବାରେ ''ମାତୃଭାଷା'' ହିଁ ଏକମାତ୍ର ମାଧ୍ୟମ । ଭୌଗୋଳିକ ଦୃଷ୍ଟିକୋଣରୁ ଓ ସାମାଜିକ ବିଧି ଅନୁଯାୟୀ ସମାନ ଭାଷା ବ୍ୟବହାର କରୁଥିବା ଅଞ୍ଚଳ ଏକତ୍ର ରହିବା ହିଁ ସମାଜ ପାଇଁ ମଙ୍ଗଳକର । କିନ୍ତୁ ରାଜନୈତିକ ଓ ସାମାଜିକ ଦୃଷ୍ଟିକୋଣରୁ ଗୋଟିଏ ସମାଜକୁ ଭାଗ ଭାଗ ନ କରିବା ପର୍ଯ୍ୟନ୍ତ ତାହାର ମେରୁଦଣ୍ଡକୁ ଭାଙ୍ଗିବା ସହଜ ନୁହେଁ ବୋଲି ଭାବି ଇଂରେଜ ସରକାର ଓଡ଼ିଆ ଭାଷାଭାଷୀ ଅଞ୍ଚଳକୁ ଅଲଗା ଅଲଗା କରି ରଖୁଥିଲେ । ସେ ଜାଣିଥିଲେ ଓଡ଼ିଆ ଜାତି ଏତେ ଦୁର୍ଦ୍ଧର୍ଷ ଯେ ସେମାନଙ୍କୁ ଅସ୍ତ୍ରଶସ୍ତ୍ର ବଳରେ ଜିତିବା ଅସମ୍ଭବ । ସେମାନଙ୍କୁ ଅଲଗା ଅଲଗା କରିଦିଆଗଲେ ସେମାନଙ୍କ ମଧ୍ୟରେ ଏକତା ରହିବ ନାହିଁ ତେଣୁ ଓଡ଼ିଶାର ପଶ୍ଚିମରେ ସମ୍ବଲପୁର ଅଞ୍ଚଳକୁ ମଧ୍ୟପ୍ରଦେଶ ସହ, ଉପକୂଳ ଅଞ୍ଚଳକୁ କଲିକତା ସହ ଏବଂ ଦକ୍ଷିଣରେ ବ୍ରହ୍ମପୁର ଅଞ୍ଚଳକୁ ଆନ୍ଧ୍ର ସହ ରଖି ଶାସନ କରୁଥିଲେ । ସମ୍ବଲପୁରରେ ଯେତେବେଳେ ମାତୃଭାଷା 'ଓଡ଼ିଆ' ବଦଳରେ 'ହିନ୍ଦୀ' ଭାଷାକୁ ସରକାରୀ ସ୍ତରରେ ପ୍ରଚଳନ ପାଇଁ ବିଜ୍ଞପ୍ତି ପ୍ରକାଶ ପାଇଲା, ସେତେବେଳେ ଓଡ଼ିଆପ୍ରାଣ ବ୍ୟକ୍ତିତ୍ୱମାନେ ମାତୃଭୂମିର ଅଖଣ୍ଡତାକୁ ଅକ୍ଷୁଣ୍ଣ ରଖିବା ପାଇଁ ପଣ କଲେ । ପରାଧୀନତାର ଶିକାର ହୋଇଥିବା ଭାରତବର୍ଷର ବହୁବିଧ ସ୍ୱାଧୀନତାକୁ ଆଖି ଆଗରେ ରଖି ଭାଷାଭିତ୍ତିକ ରାଜ୍ୟ ଗଠନ କରିବାକୁ ଉଦ୍ୟମ କରି ୧୯୩୬ ମସିହାରେ ଇଂରେଜ ସରକାରଙ୍କଠାରୁ ଓଡିଶାକୁ ପ୍ରଥମ ଭାଷାଭିତ୍ତିକ ରାଜ୍ୟର ମାନ୍ୟତା ହାସଲ କରାଇଥିଲେ । ପରବର୍ତ୍ତୀ ସମୟରେ ଭାରତର ସ୍ୱାଧୀନତା ପରେ ଓଡ଼ିଆ ଭାଷାର ସ୍ୱାଧୀନତା ପାଇଁ ବହୁ ଭାବରେ ଆନ୍ଦୋଳନ ହୋଇଥିଲେ ସୁଦ୍ଧା, ଭାଷାର ସରକାରୀକରଣ ୨୦୧୮ ପର୍ଯ୍ୟନ୍ତ ହୋଇପାରିନଥିଲା ।

ମାତୃଭାଷା ହିଁ ଜଣେ ନାଗରିକର ଜନ୍ମସିଦ୍ଧ ଅଧିକାର । ସେ ଅଧିକାରରୁ କାହାକୁ ବଂଚିତ କରାଯାଇ ପାରିବ ନାହିଁ । ଭିନ୍ନ ଭିନ୍ନ ଭାବେ ଭିନ୍ନ ଭିନ୍ନ ଉପାୟରେ ଆନ୍ଦୋଳନ ହେଉଥିଲା କିନ୍ତୁ ନିର୍ଦ୍ଦିଷ୍ଟ ଭାବେ ଏହାର ପରିଚାଳନା ନୀତିଗତ ଭାବେ ହୋଇପାରିନଥିଲା । ଯାହାକି ଭାଷା ଆନ୍ଦୋଳନ, ଓଡିଶା ଦୀର୍ଘ ୮୭୮ ଦିନର ନୀତିଗତ ଆନ୍ଦୋଳନ, ନିର୍ଦ୍ଦିଷ୍ଟ ସୀମା ତଥା ଗାନ୍ଧିବାଦୀ ନୀତିରେ

ନୀରବ କଳାପତାକା ଅଭିଯାନ ''ଭାଷା ଆନ୍ଦୋଳନ''କୁ ନିର୍ଦ୍ଦିଷ୍ଟ କକ୍ଷ ପଥରେ ପହଞ୍ଚେଇ ପାରିଥିଲା ଏବଂ ଏହାର ଏକମାତ୍ର ସ୍ଲୋଗାନ ଥିଲା ''ଓଡ଼ିଆରେ ଓଡ଼ିଶାର ଶାସନ ଓ ଖିଲାପକାରୀଙ୍କୁ ଦଣ୍ଡବିଧାନ'' ।

କହିରଖେ,୧୮୪୯ରେ ରାଜସ୍ୱତ୍ୱ ଲୋପନୀତି ଅନୁସାରେ ସମ୍ବଲପୁର ଅଂଚଳ ଇଂରେଜ ଶାସନାଧୀନ ହେବାପରେ ମୂଳ ଓଡ଼ିଶାଠାରୁ ବିଚ୍ଛିନ୍ନ ହୋଇଯାଇଥିଲା । ୧୮୫୪ରେ ଛୋଟନାଗପୁର ଡିଭିଜନ ହେବାପରେ କାର୍ଯ୍ୟାଳୟର ଭାଷା ଭାବେ ହିନ୍ଦୀକୁ ଲାଗୁ କରାଯିବାରୁ ସମ୍ବଲପୁର ସମେତ ଓଡ଼ିଶାର ପଶ୍ଚିମାଞ୍ଚଳରେ ହିନ୍ଦୀଭାଷା ପ୍ରଚଳନ ହେଲା । ୧୮୬୦ରେ ଏହି ଅଞ୍ଚଳ ଓଡ଼ିଶା ଡିଭିଜନରେ ମିଶିଯିବାରୁ ଏଠାରେ ''ଓଡ଼ିଆ ଭାଷା''ର ପୁନଃପ୍ରଚଳନ ହେଲା । ଏପରିକି ୨ବର୍ଷ ପରେ ଅର୍ଥାତ୍ ୩୦ ଅପ୍ରେଲ୧୮୬୩ରେ ଏହା ମଧ୍ୟପ୍ରଦେଶ ଡିଭିଜନରେ ମିଶି ଓଡ଼ିଶା ଡିଭିଜନଠାରୁ ଅଲଗା ହୋଇଗଲେ ମଧ୍ୟ ୧୮୯୪ ପର୍ଯ୍ୟନ୍ତ ଓଡ଼ିଆର ପ୍ରଚଳନ ଥିଲା । ମଧ୍ୟପ୍ରଦେଶ ଚିଫ୍ କମିଶନର ଉଡ୍‌ବର୍ଣ୍ଣ ୧ ଜାନୁଆରୀ ୧୮୯୫ ମସିହାରେ ହିନ୍ଦୀ ପ୍ରଚଳନ ପାଇଁ ନିର୍ଦ୍ଦେଶ ଦେଲେ । ଏହାକୁ ସମ୍ବଲପୁରର ଡେପୁଟି କମିଶନର ଚେପ୍‌ମେନ୍ ସମର୍ଥନ ଜଣାଇବାରୁ ୧ ଜାନୁଆରୀ ୧୮୯୬ ଠାରୁ ହିନ୍ଦୀ ଭାଷାରେ ଅଦାଲତ ତଥା ଅନ୍ୟାନ୍ୟ କାର୍ଯ୍ୟ ପରିଚାଳିତ ହେଲା । ଏହି ନିଷ୍ପତ୍ତି ବିରୁଦ୍ଧରେ ସମ୍ବଲପୁର ମାଟିରେ ଓଡ଼ିଆ ଭାଷାର ସୁରକ୍ଷା ଆନ୍ଦୋଳନର ମୂଳଭିତ୍ତି ସ୍ଥାପନ ହେଲା । ରାଜ୍ୟପାଳ ଫ୍ରେଜର ସାହେବ ଜନସାଧାରଣଙ୍କ ଅଭିଯୋଗ ବଡ଼ଲାଟ ଲର୍ଡ ଏଲଗିନ୍‌ଙ୍କୁ ଜଣାଇଲେ ମଧ୍ୟ ବଡ଼ଲାଟ ଫ୍ରେଜରଙ୍କ ପରାମର୍ଶକୁ ପ୍ରତ୍ୟାଖ୍ୟାନ କରି ହିନ୍ଦୀଭାଷା ପ୍ରଚଳନ ପାଇଁ ନିର୍ଦ୍ଦେଶ ଦେଲେ । ଓଡ଼ିଶାରେ ବିଭିନ୍ନ ସମୟରେ ଓଡ଼ିଆ ଭାଷା ପାଇଁ ହୋଇଥିବା ଆନ୍ଦୋଳନଗୁଡ଼ିକ ସାମୂହିକ ଭାବେ ଓଡ଼ିଆ ଭାଷା ଆନ୍ଦୋଳନ ଭାବେ ଜଣା । ୧୮୬୬ ବ୍ରିଟିଶ ଶାସନ କାଳରେ ଆରମ୍ଭ ହୋଇ ୧୯୦୩ ମସିହାରେ ଏକ ବିଶାଳ ଆନ୍ଦୋଳନର ରୂପ ନେଇଥିଲା । ଏହାର ପରିଣତି ସ୍ୱରୂପ ୧୯୩୬ ମସିହାରେ ଭାଷାଭିତ୍ତିରେ ଭାରତର ପ୍ରଥମ ରାଜ୍ୟ ଭାବେ ''ଓଡ଼ିଶା'' ଗଠିତ ହୋଇଥିଲା । ଇଂରେଜ ଶାସନାଧୀନ ଓଡ଼ିଶାରେ ଓଡ଼ିଆ ଭାଷା ଆନ୍ଦୋଳନ ତିନୋଟି ପ୍ରାନ୍ତରେ ଉପକୂଳ ଓଡ଼ିଶା, ପଶ୍ଚିମ ଓଡ଼ିଶା ଓ ଦକ୍ଷିଣ ଓଡ଼ିଶାରେ ଆରମ୍ଭ ହୋଇଥିଲା । ୧୮୬୬ରେ ଆରମ୍ଭ ହୋଇଥିବା ଓଡ଼ିଆ ଆନ୍ଦୋଳନ ଓଡ଼ିଶା ଏକତ୍ରୀକରଣର ବାଟ ଫିଟାଇବା ସହିତ ଆଧୁନିକ ସାହିତ୍ୟ ରଚନାର ବାଟ ମଧ୍ୟ ଫିଟାଇଥିଲା । ଠିକ୍ ସେହି ସମୟରେ ଅର୍ଥାତ ୧୮୪୯ରେ କଟକ ଜିଲ୍ଲାରେ କଲେକ୍ଟର, ସରକାରୀ କାର୍ଯ୍ୟାଳୟ ଓ ବିଚାରାଳୟରେ ଓଡ଼ିଆ ପରିବର୍ତ୍ତେ ବଙ୍ଗଳା ଭାଷାର ବ୍ୟବହାର ଉପରେ ଗୁରୁତ୍ୱ ଦେଉଥିଲେ । ୧୮୫୧ରେ କମିଶନର ହେନେରୀ ରିକେଟ୍ସ ହିନ୍ଦୀକୁ ସରକାରୀ ଭାଷା କରିବା ପାଇଁ ଇଚ୍ଛା ପ୍ରକାଶ କଲେ । ଏହିଭଳି ହିନ୍ଦୀ, ବଙ୍ଗାଳି, ଓଡ଼ିଆ ଚାଲିବା ଭିତରେ ୧୮୭୦ରେ କାନ୍ତିଲାଲ ଭଟ୍ଟାଚାର୍ଯ୍ୟ ''ଓଡ଼ିଆ ଗୋଟିଏ ସ୍ୱତନ୍ତ୍ର ଭାଷା ନଏ'' ବୋଲି ଅଭିହିତ କଲେ । ଏହାପରେ ଓଡ଼ିଆପ୍ରାଣମାନେ ମାତୃଭୂମିର ଭାଷା, ମାତୃଭାଷା ''ଓଡ଼ିଆ''ର ସୁରକ୍ଷା ପାଇଁ ଅଣ୍ଟା ଭିଡ଼ିଲେ, ଯାହା ଫଳରେ ୧୮୭୪ରେ ରାଜେନ୍ଦ୍ରଲାଲ ମିତ୍ର ନାମକ ବେଙ୍ଗଲୀ ଲେଖକ କହିଲେ ବଙ୍ଗାଳିମାନଙ୍କଠାରୁ ଓଡ଼ିଆମାନେ ଭିନ୍ନ ନୁହନ୍ତି ।

ଏପରି ଘଡ଼ିସନ୍ଧି ମୁହୂର୍ତ୍ତରେ ମଙ୍ଗ ସମ୍ଭାଳିବା ପାଇଁ କର୍ମବୀର ଗୌରୀଶଙ୍କର '' ଉତ୍କଳ ଦୀପିକା '' ନାମକ ପତ୍ରିକା ପ୍ରକାଶ କରି ଓଡ଼ିଆ ଭାଷାରୂପକ ଗାଣ୍ଡୀବ ଧନୁରୁ ଶର ନିକ୍ଷେପ କଲେ, ଯାହାଫଳରେ ମେ ୨୦, ୧୮୬୭ରେ ''ଉତ୍କଳ ଭାଷୋଦ୍ଦିପନୀ '' ସଭା ଆରମ୍ଭ ହେଲା, ଏହି ସଭାରେ ଉତ୍କଳ ଭାଷାର ସୁରକ୍ଷା ପାଇଁ ଆଲୋଚନା ହେଲା ଏବଂ କେତେକ ବଙ୍ଗୀୟ ସମ୍ଭ୍ରାନ୍ତ ଓଡ଼ିଆ ଭାଷାର ସ୍ଥିତିକୁ ସମର୍ଥନ ଜଣାଇଲେ । ଠିକ୍ ଏହି ସମୟରେ ଓଡ଼ିଶାର କମିଶନର ରେଭେନ୍‌ସା ସାହେବ ସରକାରୀ କାର୍ଯ୍ୟାଳୟରେ ଓଡ଼ିଆ ଭାଷାର ପ୍ରଚଳନ ପାଇଁ ମତଦେଲେ । ତାଙ୍କ ପରେ ପରେ ଜନ୍ ବିମ୍‌ସ

ଓଡ଼ିଆ ଭାଷାର ସ୍ୱତନ୍ତ୍ରତା ଓ ବଳିଷ୍ଠତା ସ୍ୱୀକାର କରି ଫକୀର ମୋହନଙ୍କ ସହ ଆଲୋଚନା କରି "Comperative Grammar of the modern aryan language of India" ପୁସ୍ତକ ରଚନା କଲେ ଯାହା ଫଳରେ ଲଣ୍ଡନଠାରେ ଓଡ଼ିଆ ଭାଷା ଉପରେ ଗୋଲ୍‌ଟେବୁଲ ବୈଠକ ଆଲୋଚନାରେ ମହାରାଜା କୃଷ୍ଣଚନ୍ଦ୍ର ଗଜପତିଙ୍କ ଉପସ୍ଥିତିରେ ମଧୁବାବୁ ଉକ୍ତ ପୁସ୍ତକଟିକୁ ଓଡ଼ିଆ ଭାଷାର ପ୍ରାମାଣିକ ଗ୍ରନ୍ଥ ଭାବେ ରଖିବାରୁ ଓଡ଼ିଆ ଭାଷା ଏକ ସ୍ୱତନ୍ତ୍ର ଭାଷା ତଥା ଭାଷାଭିତ୍ତିକ ପ୍ରଥମ ରାଜ୍ୟ ଭାବେ ପରିଗଣିତ ହୋଇପାରିଲା ।

ଠିକ୍ ସେହିପରି ୧୮୬୬ରେ ଭେଙ୍କଟେଶ୍ୱର ଦେଓ ଜମିଦାରୀ କ୍ଷମତା ପାଇବା ପରେ ହଦଗଡ଼, ମୁଠା (ଟିକାବାଲି), ଚକାପାଦ, ଖଣ୍ଡମ, ଅଠର ଓ ବାରମୁଠାର ସମସ୍ତ ରୟତ, କରଡ଼ା, ରଣବା, ଗଦାପୁର, ପାଲୁର, ହୁମା, ଗଞ୍ଜା, ମହୁରୀ, ସୁରଙ୍ଗୀ, ଜରଡା, ଖଲ୍ଲିକୋଟ, ଆଠଗଡ଼, ଘୁମୁସର, ଧରାକୋଟ, ସୋରଡ଼ା, ଖେମୁଣ୍ଡି,ଚିକିଟି,ଜଳନ୍ତର, ମଞ୍ଜୁଷା, ପାରଳା ଆଦି ଅଞ୍ଚଳର ଦେଶୀୟ ରାଜା, ଭାଷାପ୍ରେମୀ ଶିକ୍ଷିତ ଓଡ଼ିଆ, ବିଭିନ୍ନ ଛୋଟବଡ଼ ସାଂସ୍କୃତିକ ଅନୁଷ୍ଠାନ ଓ ସଂଗଠନ ସଦସ୍ୟଗଣଙ୍କ ସହ ଯୋଗସୂତ୍ର ସ୍ଥାପନ କରି ସେପ୍ଟେମ୍ବର ୧୮୭୦ରେ ରସୁଲକୁଣ୍ଡା (ବର୍ତ୍ତମାନର ଭଂଜନଗର)ଠାରେ ଏକ ସଭାର ଆୟୋଜନ କଲେ । ଏହାର ନାମ ରହିଲା ''ହିତବାଦିନୀ ସଭା ''। ଏହା ହେଉଛି ଭାରତର ପ୍ରଥମ ରାଜନୈତିକ ସଂଗଠନ ।

ସୋମନାଥଙ୍କ ଅଧକ୍ଷତାରେ ଅନୁଷ୍ଠିତ ସାଧାରଣ ସଭାର ପ୍ରସ୍ତାବକ୍ରମେ ମହନ୍ତ ବିହାରୀ ଦାସ, ବ୍ରଜମୋହନ ପଟ୍ଟନାୟକ, ବଳଭଦ୍ର ସୂପକାର (ସୁଆର), ମଦନମୋହନ ମିଶ୍ରଙ୍କ ସହିତ ଯୁବକ ଶ୍ରୀପତି ମିଶ୍ର ବଡ଼ଲାଟ ଲର୍ଡ କର୍ଜନଙ୍କୁ ଭେଟି ସମ୍ବଲପୁରରେ ଓଡ଼ିଆ ପ୍ରଚଳନ ପାଇଁ ଦାବିପତ୍ର ପ୍ରଦାନ କରିବେ ବୋଲି ଶିମିଳା ଯାଇଥିଲେ । ଯାହା ପରବର୍ତ୍ତୀ ସମୟରେ ''ଶିମିଳା ଯାତ୍ରା''ନାମରେ ଖ୍ୟାତ । ତେଣୁ ଆନ୍ଦୋଳନର ଭିତ୍ତିଭୂମି ଭାଷାଭିତ୍ତିକ ବା ନିର୍ଦ୍ଦିଷ୍ଟ ସୀମାରେ ସଂକଳିତ ଥିବାରୁ ତାହାର ଫଳସ୍ୱରୂପ ଆମେ ଗୋଟିଏ ସ୍ୱତନ୍ତ୍ର ରାଜ୍ୟର ମାନ୍ୟତା ପାଇଲେ ।

ଭାରତ ସ୍ୱାଧୀନତା ପାଇବା ପୂର୍ବରୁ ଲକ୍ଷ୍ମୀନାରାୟଣ ମିଶ୍ର ୧୯୪୬ ରୁ ୧୯୫୧ ପର୍ଯ୍ୟନ୍ତ ଓଡ଼ିଶା ବିଧାନସଭାର ସଦସ୍ୟ ଥିଲେ । ୧୯୪୬ରେ ବରଗଡ଼ ନିର୍ବାଚନ ମଣ୍ଡଳୀରୁ ବିପୁଳ ଭୋଟ୍‌ରେ ବିଜୟୀ ହୋଇଥିଲେ । ନିର୍ବାଚନୀ ମଣ୍ଡଳୀ ସମେତ ଓଡ଼ିଶାର ବିଭିନ୍ନ ଅଂଚଳର ସମସ୍ୟା ବିଷୟ ଉତ୍‌ଥାପନ କରୁଥିଲେ । ଗୌନ୍ତି ଓ ଜମିଦାରୀ ପ୍ରଥା ଉଚ୍ଛେଦ ଉପରେ ଆଲୋଚନା କରି ଦୃଢ ଦାବି ରଖୁଥିଲେ, ଯାହା ଫଳରେ ୨୭.୦୯.୧୯୫୧ରେ ଏହି ପ୍ରଥା ଉଚ୍ଛେଦ ହେଲା । ଓଡ଼ିଆ ଭାଷାକୁ ପ୍ରାଦେଶିକ ଭାଷା ଭାବେ ସେ ବିଶେଷ ଗୁରୁତ୍ୱ ଦେଉଥିଲେ । ୧୯୪୮ ଏପ୍ରିଲ ବିଧାନସଭା ଅଧିବେଶନରେ ପ୍ରସ୍ତାବ ଆଣି କହିଥିଲେ କି, ୧୯୪୮ ଜୁନ୍ ପହିଲାରୁ ସମସ୍ତ ସରକାରୀ କାର୍ଯ୍ୟ ଓଡ଼ିଆରେ ହିଁ ହେଉ କିନ୍ତୁ ତାହା କିଛି ବିଧାୟକଙ୍କ ବିରୋଧାଭାସ ଯୋଗୁଁ ପ୍ରସ୍ତାବଟିକୁ ନିଜେ ଫେରେଇ ନେଇଥିଲେ । ଏହି ଆଲୋଚନା ସମୟରେ ନବକୃଷ୍ଣ ଚୌଧୁରୀ ଉପସ୍ଥିତ ଥାଇ ସବୁ ଶୁଣୁଥିଲେ । ପରବର୍ତ୍ତୀ ସମୟରେ ନବକୃଷ୍ଣ ଚୌଧୁରୀ ମୁଖ୍ୟମନ୍ତ୍ରୀ ହେବା ପରେ ୧୯୫୪ ମସିହାରେ ଭାଷା ଆଇନ ବିଧାନସଭାରେ ପାରିତ କରିଥିଲେ ।

୨୦୧୫ ମସିହାରେ ଭାଷା ଆଇନ, ୧୯୫୪ ଅନୁସାରେ କୋର୍ଟ କଚେରିର ଭାଷା ''ଓଡ଼ିଆ'' ହେଉ ବୋଲି ଟିଟିଲାଗଡର ଅଧିବକ୍ତା ଗଜାନନ ମିଶ୍ର ନୈତିକ ଆନ୍ଦୋଳନ ଆରମ୍ଭ କଲେ । ୨୦୧୧ ମସିହାରେ କଚେରିଗୁଡିକରେ ସାମ୍ବିଧାନିକ ବିଧି ଅନୁଯାୟୀ ଓଡ଼ିଆରେ କାହିଁକି ଅର୍ଜି ଲେଖାଯିବ ନାହିଁ ବୋଲି ପ୍ରତିବାଦ କଲେ ଏବଂ ଟିଟିଲାଗଡ଼ କଚେରିରେ ଓଡ଼ିଆରେ ଅର୍ଜି ଲେଖିବା ଆରମ୍ଭ କଲେ, ଯାହା କଚେରିରେ ତାହା ଗ୍ରହଣଯୋଗ୍ୟ ହେଲା ନାହିଁ । ସାମ୍ବିଧାନିକ ବିଧି ଅନୁସାରେ ଯୁକ୍ତି ଦର୍ଶାଇବା ପରେ ବି ତାହା ଗ୍ରହଣଯୋଗ୍ୟ

ହୋଇନଥିଲା । କିନ୍ତୁ ସେଥିରେ ସେ ଦବି ନ ଯାଇ ଗଜାନନ ବାବୁ ଉଚ୍ଚ ନ୍ୟାୟାଳୟର ଆଶ୍ରୟ ନେଇଥିଲେ । ସେଥିରେ ସେ ସଫଳ ହେଲେ ଏବଂ ତାଙ୍କୁ ନ୍ୟାୟ ମିଳିଲା ସତ କିନ୍ତୁ ସେ ଆହତ ଅନୁଭବ କଲେ । ଏହାକୁ ଗୋଟିଏ ଆନ୍ଦୋଳନର ରୂପ ଦେବା ପାଇଁ ଚେଷ୍ଟା କଲେ ଯେ ସାମ୍ବିଧାନିକ ବିଧି କହୁଛି ମାତୃଭାଷା ହିଁ ସରକାରୀ ଭାଷା ଏବଂ କୋର୍ଟ କଚେରିର ଭାଷା ମଧ୍ୟ, ତେବେ ଆମେ କାହିଁକି ଇଂରାଜୀରେ ନଥିପତ୍ର ତିଆରି କରିବୁ । ବହୁପ୍ରକାର ଚେଷ୍ଟା କଲାପରେ ସେ ଏହି ସମସ୍ୟାକୁ ରାଜଧାନୀକୁ ନ ନେଲେ ସରକାରୀ କଳ ମାନିବ ନାହିଁ ବୋଲି ହୃଦ୍‌ବୋଧ କଲେ । ରାଜଧାନୀରେ ଭିନ୍ନ ଭିନ୍ନ ସଂଗଠନମାନଙ୍କ ସହ ମିଶି କିଛି ଶକ୍ତି ସଂଚୟ କରି ଗୋଟିଏ ଦିନ ପ୍ରତୀକାତ୍ମକ ଭାବେ ମହାମହିମ ରାଜ୍ୟପାଳଙ୍କ ଉଦ୍ଦେଶ୍ୟରେ ଅନଶନରେ ବସିଲେ । ଆଉ କିଛି ସହୃଦୟ ବ୍ୟକ୍ତି ବି ତାଙ୍କ ସହିତ ବସିଲେ । ସେହିଦିନର ନିଷ୍ପତ୍ତି ଅନୁଯାୟୀ ଗୋଟିଏ ସଙ୍ଗଠନ ଗଠିତ ହେଲା ଏବଂ ସେହି ସଙ୍ଗଠନ ତଳେ ଆମରଣ ଅନଶନ କରିବେ ବୋଲି ଘୋଷଣା କଲେ ।

ପୂର୍ବ ଘୋଷଣା ମୁତାବକ ଜୁଲାଇ ୦୧,୨୦୧୫ରୁ ଜୁଲାଇ ୦୮,୨୦୧୫ ପର୍ଯ୍ୟନ୍ତ ଆମରଣ ଅନଶନରେ ବସିଲେ କିନ୍ତୁ ଅନଶନର ପଞ୍ଚମ ଦିନ ପରେ ଗଜାନନ ମିଶ୍ରଙ୍କ ସ୍ୱାସ୍ଥ୍ୟ ଖରାପ ହେଲା, ଯଦି ଗଜାନନ ବାବୁଙ୍କର କିଛି ଅସୁବିଧା ହୁଏ ତେବେ ଓଡ଼ିଶାର ଭୌଗୋଳିକ ଚିତ୍ର ନିଶ୍ଚିତ ପରିବର୍ତ୍ତନ ହେବାକୁ କେହି ଅଟକେଇ ପାରିବେ ନାହିଁ ବୋଲି ଅନୁଭବ ହେଲା । ଏଣୁ ଏହାର ତୁରନ୍ତ ଉପଚାର ନ କଲେ କଥା ବିଗିଡ଼ିବା ପୂର୍ବରୁ ଗୋଟେ ବାଟ କରିବାକୁ ପଡ଼ିବ । ଏଥିପାଇଁ ଗଜାନନ ବାବୁଙ୍କ ପରାମର୍ଶ ବି ନିହାତି ଆବଶ୍ୟକ ଥିବାରୁ ତାଙ୍କ ସହ ବ୍ୟକ୍ତିଗତ ଆଲୋଚନା ପରେ ଜଣାପଡିଲା ସେ ଦୁଃଖୀ ଅଛନ୍ତି, ସେ କହିଲେ ଯେ କେଉଁ ପାଣି କୁଆଡେ ଯାଉଛି ମୋର ବୁଝିବା ବାହାରେ, କେବଳ ସେତିକି ନୁହେଁ ଆଖିରୁ ଦୁଇଟୋପା ଲୁହ ଗଡ଼େଇ ଗଳା କଣ୍ଠରେ କହିଲେ, ପବିତ୍ର ଭାଇ ଆଉ ପିଲାଛୁଆଙ୍କୁ ଦେଖି ହେବନି । ଏତିକି ଶୁଣିବା ପରେ ଲେଖକର ମନଟା ବ୍ୟଥିତ ହେଲା । ସେହିଦିନ ସନ୍ଧ୍ୟା ସାତଟା ସମୟରେ ବରିଷ୍ଠ ସାମ୍ବାଦିକ ସୁଭାଷ ପଟ୍ଟନାୟକଙ୍କ ସହ କଥା ହୋଇ ସରକାରଙ୍କର କୌଣସି ଜଣେ ମନ୍ତ୍ରିମଣ୍ଡଳର ମନ୍ତ୍ରୀଙ୍କ ସହ କଥା ହେବାକୁ କହିବାରୁ ସେ ସଙ୍ଗେ ସଙ୍ଗେ ବରିଷ୍ଠ ମନ୍ତ୍ରୀ ଦେବୀ ମିଶ୍ରଙ୍କ ସହ କଥା ହେଲେ ଏବଂ ମୁଁ ଯାହା ଯାହା ଆଲୋଚନା କରିଥିଲି ତାହା ତାଙ୍କ ସହ ମଧ୍ୟ ଆଲୋଚନା କଲେ ଏବଂ ମତେ ଫୋନ୍‌ଟିକୁ ବଢ଼େଇଦେଲେ । ମୁଁ ପୁନର୍ବାର ଦେବୀ ବାବୁଙ୍କ ସହ ସମସ୍ତ ବିଷୟରେ ଆଲୋଚନା କଲି । ପରଦିନ ଆମ ସହ କଥା ହୋଇ କହିଲେ ମୁଖ୍ୟମନ୍ତ୍ରୀ ସମସ୍ତ ବିଷୟ ଶୁଣିଲେ ଏବଂ ତୁରନ୍ତ ସମାଧାନ ପାଇଁ ଚେଷ୍ଟା କରନ୍ତୁ ଏବଂ ଗୋଟିଏ ମନ୍ତ୍ରିସ୍ତରୀୟ କମିଟି ଗଠନ କରାଯାଉ ବୋଲି ନିର୍ଦ୍ଦେଶ ଦେଇଛନ୍ତି । ତା' ପରଦିନ ସକାଳ ୮ଟା ସମୟରେ ଦେବୀ ବାବୁଙ୍କ ସହ ପ୍ରାୟ ଦୁଇ ତିନିଘଣ୍ଟା ଆଲୋଚନା ହେଲା । ଗୋଟିଏ ମନ୍ତ୍ରିସ୍ତରୀୟ କମିଟି ଗଠନ କରାଯିବ ବୋଲି ମନ୍ତ୍ରୀ ଦେବୀ ମିଶ୍ର କହିବା ପରେ ତାହା ଗଜାନନ ମିଶ୍ରଙ୍କୁ ଜଣେଇ ଦିଆଗଲା । ତେଣୁ ଗଜାନନ ବାବୁ ଅନଶନରୁ ଉଠନ୍ତୁ, ସେହିଦିନ ସନ୍ଧ୍ୟାରେ ଦୁଇଜଣ ମନ୍ତ୍ରୀ ଅତନୁ ସବ୍ୟସାଚୀ ନାୟକ ଏବଂ ଅରୁଣ ସାହୁ ଆସି ଗଜାନନ ବାବୁଙ୍କୁ ଅନଶନରୁ ନିବୃତ୍ତ କଲେ ଏବଂ ମୁଖ୍ୟମନ୍ତ୍ରୀ ତୁରନ୍ତ ମନ୍ତ୍ରିସ୍ତରୀୟ କମିଟି ଗଠନ କରି ଏହାର ସମାଧାନର ବାଟ ତିଆରି ହେବ ବୋଲି ପ୍ରତିଶ୍ରୁତି ଦେଲେ । ମନ୍ତ୍ରିସ୍ତରୀୟ କମିଟି ହେଲା ଗଠନ ହେଲା । ସେହି କମିଟିରେ ମନ୍ତ୍ରିମଣ୍ଡଳରୁ ପାଞ୍ଚ ଜଣ ସଭ୍ୟ ଶଙ୍କର ପରିଡାଙ୍କ ଅବାହକତ୍ୱରେ ଭାଷା ସଂଗ୍ରାମ ସମିତିରୁ ସାତଜଣ ସଭ୍ୟ ଓ ସରକାରଙ୍କ ତରଫରୁ ଡ଼ ଭଗବାନ ପ୍ରକାଶ, ଦେବୀ ପ୍ରସନ୍ନ ପଟ୍ଟନାୟକ ଓ ବୈଷ୍ଣବ ପରିଡାଙ୍କୁ ସାମିଲ କରାଗଲା । ସେହି ମନ୍ତ୍ରିସ୍ତରୀୟ କମିଟିକୁ ଭାଷା ଆନ୍ଦୋଳନ, ଓଡିଶାର ପୂର୍ବତନ ଅଧକ୍ଷଙ୍କୁ ନେବା ପାଇଁ ଏହି ଲେଖକ ଗଜାନନ ମିଶ୍ରଙ୍କୁ ପ୍ରସ୍ତାବ ଦିଅନ୍ତେ ସେ ରାଜି ହୋଇଗଲେ ଏବଂ

ବହୁ ବାଧା ବିଘ୍ନ ସତ୍ତ୍ୱେ ଗଜାନନ ମିଶ୍ର ଲୌହମାନବ ଭଳି ହସ୍ତକ୍ଷେପ ଫଳରେ ଭାଷା ସଂଗ୍ରାମ ସମିତି ତରଫରୁ ସାତ ଜଣଙ୍କ ଭିତରେ ଭାଷା ଆନ୍ଦୋଳନ, ଓଡିଶାର ପୂର୍ବତନ ଅଧ୍ୟକ୍ଷଙ୍କ ନାମଟି ପଠେଇଲା । ସୁଭାଷ ବାବୁ ମନ୍ତ୍ରିସ୍ତରୀୟ କମିଟିର ସଭ୍ୟ ହେଲେ । ତା'ପରେ୨/୩ ଗୋଟି ମନ୍ତ୍ରିସ୍ତରୀୟ ସଭା ଭିତରେ ଭାଷା ଆଇନ ବା ଓଡ଼ିଆ ଭାଷା କେମିତି ସରକାରୀ ଭାଷା ହବ, ତାହା ବିଶେଷ ଆଲୋଚନା ନ ଥିଲା । ଏହି ସମୟରେ ସରକାର ଖବର କାଗଜ ମାଧ୍ୟମରେ ୯ ଦଫା ଏବଂ ୧୪ ଦଫା କାର୍ଯ୍ୟକ୍ରମ ଘୋଷଣା କରିଥିଲେ । ଏହାକୁ ଲକ୍ଷ୍ୟ କରି ଏହି ଲେଖକର ଆଲୋଚନା ପରେ ଗଜାନନ ମିଶ୍ର, ଭାଷା ଆନ୍ଦୋଳନ, ଓଡିଶାର ପୂର୍ବତନ ଅଧ୍ୟକ୍ଷ, ମନ୍ତ୍ରିସ୍ତରୀୟ କମିଟି ସଭାରୁ ଫେରି ଆସିଲେ । ନଟବର ଶତପଥୀଙ୍କ ସହ ଆଲୋଚନା ବି ହୋଇଥିଲା, ସେ ହଁ ବି କରିଥିଲେ କିନ୍ତୁ ସେହି ସଭାରୁ ଆସିନଥିଲେ । କିନ୍ତୁ ପରବର୍ତ୍ତୀ ମୁହୂର୍ତ୍ତରେ ଭାଷା ଆନ୍ଦୋଳନ ଓଡିଶାର କଳାପତାକା ଅଭିଯାନର ପ୍ରଥମ ଦିନରେ (ଓଡ଼ିଆ ନୂଆବର୍ଷ ପଣାସଂକ୍ରାନ୍ତି) ଅର୍ଥାତ ୧୩.୦୪.୨୦୧୬ରେ ଯୋଗ ଦେଇଥିଲେ, ଗଜାନନ ମିଶ୍ର ସେହି ମନ୍ତ୍ରିସ୍ତରୀୟ କମିଟି ଛାଡି ଆସିବା ପରେ ମନ୍ତ୍ରିସ୍ତରୀୟ କମିଟି ସେଇଠି ରହିଲା । ଭାଷା ଆନ୍ଦୋଳନର ଏକମାତ୍ର ଦାବି ''ଓଡ଼ିଆରେ ଓଡିଶା ଶାସନ, ଖିଲାପକାରୀଙ୍କୁ ଦଣ୍ଡ ବିଧାନ'' ଉପରେ ଆନ୍ଦୋଳନ ଚାଲିବ ବୋଲି ସୁଭାଷ ବାବୁ ଏବଂ ମୁଁ କଥା ହେଲୁ । ସେହି ମୁତାବକ ଲେଟର ହେଡ଼ ତିଆରିକରି ସୁଭାଷ ବାବୁ ଏବଂ ମୁଁ ମୁଖ୍ୟଶାସନ ସଚିବଙ୍କୁ ତା.୦୮.୦୪.୨୦୧୬ରେ ପତ୍ରଟି ଦେଲୁ କି ଆସନ୍ତା ଓଡ଼ିଆ ନୂଆବର୍ଷ (ପଣାସଂକ୍ରାନ୍ତି) ଭିତରେ ଯଦି ସରକାର କିଛି ପଦକ୍ଷେପ ନ ନିଅନ୍ତି ତେବେ ୧୩.୦୪.୨୦୧୬ଠାରୁ ବିଧାନସଭା ସମୁଖ ନବକୃଷ୍ଣ ଚୌଧରୀଙ୍କ ପ୍ରତିମୂର୍ତ୍ତିଠାରୁ ରାଜଭବନ ସମ୍ମୁଖ ମଧୁବାବୁଙ୍କ ପ୍ରତିମୂର୍ତ୍ତି ପର୍ଯ୍ୟନ୍ତ ପ୍ରତ୍ୟହ ସନ୍ଧ୍ୟା ୫ଘଟିକା ସମୟରେ କଳାପତାକା ପଟୁଆର ଚାଲିବ । ଭାଷା ଆନ୍ଦୋଳନ ୮୭୮ ଦିନ ପରେ ସରକାର ବିଧାନସଭାରେ ତା ୧୯.୦୯.୨୦୧୮ରିଖ ଦିନ ଭାଷା ଆଇନ ୧୯୫୪କୁ ସଂଶୋଧିତ କରି ''ଓଡ଼ିଆ''ସରକାରୀ ଭାଷା ଏବଂ ଭାଷା ଆଇନ ଖିଲାପ କରୁଥିବା କର୍ମଚାରୀ ଏବଂ ସମ୍ପୃକ୍ତ ବିଭାଗକୁ ଦଣ୍ଡବିଧାନ ବିଧିସହ ବିଧେୟକଟି ପାରିତ କଲେ, ଯାହାକି ମାତୃଭାଷାକୁ ସରକାରୀ ଭାଷା କରିବା ପାଇଁ ଦୀର୍ଘଦିନ ଆନ୍ଦୋଳନ କରି ଓଡିଶାବାସୀ ଯେଉଁ ବିଜୟ ପତାକା ଉଡ଼ାଇଲେ ତାହା ଇତିହାସରେ ଓଡିଶାର ନାମଟି ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ ହୋଇ ରହିବ । ଭାଷା ଆନ୍ଦୋଳନ, ଓଡିଶା ଚିଠି ମୁତାବକ ଅଭିଯାନ ଚାଲିବ ବୋଲି ସନ୍ଧ୍ୟାରେ ପ୍ରଦ୍ୟୁମ୍ନ ଶତପଥୀଙ୍କ ସହ ଏକ ସଭା ହେଲା । ସଭାରେ ପବିତ୍ର ମହାରଥା ,ପୂର୍ବତନ ଅଧ୍ୟକ୍ଷ ସୁଭାଷ ବାବୁ, ପ୍ରଦ୍ୟୁମ୍ନ ଶତପଥୀ, ସାଗର ଶତପଥୀ, ସୁବ୍ରତ ଛାଟୋଇ, ତୁଷାର ଶତପଥୀ, କୁଳମଣି ନାୟକ, କାହ୍ନୁ ବେଉରା, ନିତ୍ୟାନନ୍ଦ ପଟନାୟକ, କାଳି ସାମନ୍ତରାୟ, ମଧୁମିତା ସାମଲ ପ୍ରମୁଖ ଏକତ୍ର ହୋଇ କାର୍ଯ୍ୟପନ୍ଥା ନିରୂପଣ ହେଲା । ଏକମାତ୍ର ଦାବି ଉପରେ ''ଭାଷା ଆନ୍ଦୋଳନ ଦାବି କରେ, ଓଡିଶା ଶାସନ ଓଡ଼ିଆରେ'' ଏବଂ ''ଭାଷା ଆଇନ ଉଲ୍ଲଙ୍ଘନକାରୀଙ୍କୁ ଦଣ୍ଡ ବିଧାନ ଆମର ଦାବି '' । ୩୯ ଦିନ ଆନ୍ଦୋଳନ ଚାଲିବା ପରେ ସରକାର ୨୧ ମେ ୨୦୧୬ରେ ଅଧ୍ୟାଦେଶ ଆଣି ଓଡ଼ିଆରେ ଓଡ଼ିଶା ଶାସନ ପାଇଁ ବିଧିବ୍ୟବସ୍ଥା କରିବେ ବୋଲି କହିଲେ । ଯାହା ଫଳରେ ଆନ୍ଦୋଳନର ୪୦ ତମ ଦିନରେ ଭାଷା ଆନ୍ଦୋଳନ ଘୋଷଣା କଲା କି ସରକାର ଅଗଷ୍ଟ ୧୫ ,୨୦୧୬ ସୁଦ୍ଧା ସମସ୍ତ ବିଧି ବ୍ୟବସ୍ଥା ନ କରନ୍ତି ତେବେ ଆଜିଠାରୁ ସ୍ଥଗିତ ରଖୁଥିବା କଳାପତାକା ଅଭିଯାନ ପୁନର୍ବାର ଅଗଷ୍ଟ ୧୬, ୨୦୧୬ ଠାରୁ ଚାଲୁରହିବ । ଅଗଷ୍ଟ ୧୪ ସନ୍ଧ୍ୟାରେ ଯେଉଁ ନିୟମାବଳୀ ସରକାର ଘୋଷଣା କଲେ ତାହା ଓଡ଼ିଶାବାସୀଙ୍କ ପାଇଁ ଉପଯୁକ୍ତ ନ ଥିବାରୁ ଅଗଷ୍ଟ ୧୬, ୨୦୧୬ ଠାରୁ ପୁନର୍ବାର କଳାପତାକା ଅଭିଯାନ ଆରମ୍ଭ ହେଲା । ପରବର୍ତ୍ତୀ ବିଧାନସଭାରେ ବିଧେୟକଟି ପାରିତ

ହେଲା ଏବଂ କେଉଁଦିନଠାରୁ ଏହା କାର୍ଯ୍ୟକାରୀ ହେବ ତାହା ନିୟମାବଳୀ ପ୍ରଣୟନ କରିବାର କ୍ଷମତା ୧୯୫୪ ଆଇନରେ ନ ଥିବାରୁ ନିୟମାବଳୀ ପ୍ରଣୟନ କରିବା ପାଇଁ ରାଜ୍ୟ ସରକାରଙ୍କୁ କ୍ଷମତା ପ୍ରଦାନ କଲା ଏବଂ ସରକାରଙ୍କର ନିର୍ଦ୍ଦେଶ ଉପରେ କାର୍ଯ୍ୟକାରୀ ହେଉଛି କି ନାହିଁ, ସେ ନେଇ ସମୀକ୍ଷା ଓ ଅନୁଧ୍ୟାନ କରିବାକୁ ଭାଷା ଆଇନ ୧୯୫୪ ସଂଶୋଧନ ହେଲା ।

ଭାଷା ଆଇନର ସଂଶୋଧନ ହୋଇ ଦଣ୍ଡ ବିଧାନର ପ୍ରାବଧାନ ରଖାଯାଉ ବୋଲି ଭାଷା ଆନ୍ଦୋଳନ, ଓଡ଼ିଶାର ଦାବି ରଖି କଳାପତାକା ଅଭିଯାନ ଜାରି ରହିଲା । ସରକାର ଆନ୍ଦୋଳନକୁ ଆଖି ଆଗରେ ରଖି ମାତୃଭାଷା ଓଡ଼ିଆ ଭାଷାକୁ ସମୃଦ୍ଧ କରିବା, ସରକାରୀ କାର୍ଯ୍ୟ ଓ ପ୍ରଶାସନରେ ଭାଷାର ପ୍ରସାରଣ ବୃଦ୍ଧି କରିବା ପାଇଁ ପ୍ରଥମ ଥର ପାଇଁ ରାଜଧାନୀ ବାହାରେ ପୁରୀଠାରେ ତା ୨୬.୧୨.୨୦୧୭ରିଖ ଦିନ ସ୍ୱତନ୍ତ୍ର କ୍ୟାବିନେଟରେ ପର୍ଯ୍ୟଟନ ଏବଂ ସଂସ୍କୃତି ବିଭାଗରୁ ସଂସ୍କୃତି ବିଭାଗକୁ ଅଲଗାକରି ଓଡ଼ିଆ ଭାଷା ସାହିତ୍ୟ ଏବଂ ସଂସ୍କୃତି ବିଭାଗ ନାମରେ ନାମିତ କଲେ । ଏହି ବୈଠକରେ ୨୦ଟି ଗୁରୁତ୍ୱପୂର୍ଣ୍ଣ ନିଷ୍ପତ୍ତି ମଧ୍ୟରେ ସରକାରୀ ଭାଷା ଆଇନ ୧୯୫୪ରେ ସଂଶୋଧନ କରାଯାଇ ଦଣ୍ଡ ବିଧି ବିଧାନ କରିବା ପାଇଁ ମୂଳଦୁଆ ପଡିଥିଲା । କିନ୍ତୁ ସେଥିରେ ତ୍ରୁଟି ଅନୁଭୂତ ହେବାରୁ ଭାଷା ଆନ୍ଦୋଳନ , ଓଡିଶା ପ୍ରତିବାଦ କରିଥିଲା । ଭାଷା ଆନ୍ଦୋଳନ , ଓଡ଼ିଶାର ପ୍ରତିବାଦକୁ ଆଖି ଆଗରେ ରଖି୧୪.୦୩.୨୦୧୮ ମନ୍ତ୍ରିମଣ୍ଡଳ ବୈଠକରେ ତ୍ରୁଟିକୁ ସୁଧାରିଥିଲେ, ଯାହାକି ବିଧାନସଭାରେ ସଂଶୋଧନ ହୋଇଥିଲେ ତାହା ସମ୍ପୂର୍ଣ୍ଣ ହୋଇ ପାରିଥାନ୍ତା । କିନ୍ତୁ ୦୧ ମେ ୨୦୧୮ ରିଖରେ ବିଧାନସଭାରେ ଯେଉଁ ବିଲ୍ ପାରିତ କରାଗଲା । ତାହା ଭାଷା ଆନ୍ଦୋଳନ, ଓଡିଶା ଗ୍ରହଣ କରିପାରିଲା ନାହିଁ , ତେଣୁ ପୁନର୍ବାର ତା.୧୯ ସେପ୍ଟେମ୍ବର ୨୦୧୮ରିଖରେ ଭାଷା ଆଇନ ୨୦୧୮ (ଦ୍ୱିତୀୟ ସଂଶୋଧନ ) ବିଧାନସଭାରେ ପାରିତ ହେବାରୁ ଭାଷା ଆନ୍ଦୋଳନ, ଓଡିଶା ଭାଷା ଆନ୍ଦୋଳନର କଳାପତାକା ଅଭିଯାନରୁ ବିରତ ହେଲା । ବିଧାନସଭାରେ ମେ ୧ ତାରିଖ ୨୦୧୮ରେ ଯେଉଁ ଭାଷା ଆଇନ ସଂଶୋଧନ ହେଲା ତାହା ତ୍ରୁଟିଯୁକ୍ତ ହେବାରୁ ଭାଷା ଆନ୍ଦୋଳନ, ଓଡିଶା ଦୁଇମାସ ଭାଷା ଆନ୍ଦୋଳନର କଳାପତାକା ଅଭିଯାନକୁ ସ୍ଥଗିତ ରଖିଲା । ଏହା ଭିତରେ ଆମେ ପୂର୍ବତନ ମନ୍ତ୍ରୀ ଦେବୀ ମିଶ୍ରଙ୍କ ସହ ଆଲୋଚନା କରିଥିଲୁ । ସେ ମଧ୍ୟ ଆଶ୍ୱାସନା ଦେଇଥିଲେ ଯେ ଏ ବିଷୟରେ ସରକାରଙ୍କ ସହ ଆଲୋଚନା କରିବେ । ଏପରିକି ମାନ୍ୟବର ଅର୍ଥ ମନ୍ତ୍ରୀ ଶଶିଭୂଷଣ ବେହେରାଙ୍କ ସହ କଥା ହେବାରୁ ସରକାରଙ୍କ ସହ ଆଲୋଚନା ପାଇଁ ବାଟ ଫିଟାଇଲେ । ସେହିଦିନ ଦିନ ଏଗାରଟା ବେଳକୁ ସମୟ ନିର୍ଦ୍ଧାରଣ ହେଲା, ତାଙ୍କରି କୋଠରୀରେ ଆଲୋଚନା ହେଲା । ସେହି ସଭାରେ ମୁଖ୍ୟଶାସନ ସଚିବଙ୍କ ସମେତ, ଉନ୍ନୟନ କମିଶନର, ମୁଖ୍ୟମନ୍ତ୍ରୀଙ୍କର ପ୍ରମୁଖ ଶାସନ ସଚିବ ଏବଂ ସାଧାରଣ ପ୍ରଶାସନିକ ବିଭାଗର ଅଫିସର ଓ ଆଇନ ବିଭାଗର ଅଫସରମାନେ ଉପସ୍ଥିତ ଥିଲେ । ଭାଷା ଆନ୍ଦୋଳନ ତରଫରୁ ଚକ୍ରଧର ମହନ୍ତ, ପବିତ୍ର ମହାରଥୀ ( ଆବାହକ), ଜାନକୀଶ ବଡ଼ପଣ୍ଡା, ପ୍ରଦ୍ୟୁମ୍ନ ଶତପଥୀ, ନବକିଶୋର ପ୍ରଧାନ ପ୍ରମୁଖ ଯୋଗ ଦେଇଥିଲେ । ଓଡ଼ିଆରେ ଓଡ଼ିଶାର ଶାସନ ବା ସମସ୍ତ କାର୍ଯ୍ୟ ଓଡ଼ିଆରେ ହୋଇ ପାରିବ ନାହିଁ ବୋଲି ଭିନ୍ନମତ ପ୍ରକାଶ ପାଇଲା । କଥାଟି ଅଧାରେ ଅଟକି ରହିଗଲା, ଯାହାଫଳରେ ଆଉ ଗୋଟିଏ ଦିନ ଧାର୍ଯ୍ୟ କରାଯିବ ପାଇଁ ସ୍ଥିର ହୋଇ ସଭା ବିନା କିଛି ନିଷ୍ପତ୍ତିରେ ରହିଲା ।

ପରବର୍ତ୍ତୀ ଆଲୋଚନାରେ ତତ୍କାଳୀନ ଉନ୍ନୟନ କମିଶନର ଆର୍. ବାଲକ୍ରିଷ୍ଣନ୍‌ଙ୍କ ନେତୃତ୍ୱରେ ସଭାଟି ହେଲା । ଏହି ସଭାରେ ଉନ୍ନୟନ କମିଶନରଙ୍କ ନେତୃତ୍ୱରେ ଆଇନ ସଚିବ , ମୁଖ୍ୟମନ୍ତ୍ରୀଙ୍କ ପ୍ରମୁଖ ସଚିବ, ସାଧାରଣ ପ୍ରଶାସନିକ ତଥା ଆଇନ ବିଭାଗର ଅଫିସରମାନେ ଉପସ୍ଥିତ ଥିବା ବେଳେ ଭାଷା ଆନ୍ଦୋଳନ ତରଫରୁ ଜାନକୀଶ ବଡ଼ପଣ୍ଡା, ପ୍ରଦ୍ୟୁମ୍ନ ଶତପଥୀ ଓ ମୁଁ ଉପସ୍ଥିତ

ଥିଲୁ । ଏହି ସଭାରେ ଏହି ତ୍ରୁଟିପୂର୍ଣ୍ଣ ଭାଷା ଆଇନର ତର୍ଜମା ହେଲା, ଯାହାକି ସାଧାରଣ ଜନତାଙ୍କ ପାଇଁ ଦ୍ୱନ୍ଦ୍ୱ ସୃଷ୍ଟି କରୁଛି । ଆଲୋଚନା ସବୁକୁ ଶୁଣି ସାରିବା ପରେ ଆମର ଦାବିକୁ ହୃଦୟଙ୍ଗମ କରି ସଭା ପରିଚାଳନା କରୁଥିବା ତତ୍କାଳୀନ ଉନ୍ନୟନ କମିଶନର ଆର୍. ବାଲକ୍ରିଷ୍ଣନ୍ ସ୍ପଷ୍ଟ କଲେ ଯେ ମାନ୍ୟବର ମୁଖ୍ୟମନ୍ତ୍ରୀ କହିଛନ୍ତି ଏହାର ସମାଧାନର ବାଟ କରିବା ପାଇଁ । ପରବର୍ତ୍ତୀ ବିଧାନସଭାରେ ଭାଷା ଆଇନ – ୨୦୧୮(ଦ୍ୱିତୀୟ) ସଂଶୋଧନ ହୋଇ ଦଣ୍ଡ ବିଧାନ ସହ ପାରିତ ହୋଇଥିଲା । ନିୟମାବଳୀ ପାଇଁ ଦୀର୍ଘଦିନ ଅପେକ୍ଷା କରିବାକୁ ପଡିଲା, ଏହିପରି ପ୍ରାୟ ୧୦ ମାସ ଅତିକ୍ରାନ୍ତ ହୋଇଗଲା । ଆମେ ଜାଣିଲୁ ଆର୍. ବାଲକ୍ରିଷ୍ଣନ୍‌ଙ୍କୁ ମାନ୍ୟବର ମୁଖ୍ୟମନ୍ତ୍ରୀଙ୍କର ମୁଖ୍ୟ ପରାମର୍ଶଦାତା ଭାବେ ନିଯୁକ୍ତି ମିଳିଛି । ତାଙ୍କୁ ଯାଇ ଅଗଷ୍ଟ ୧୩ ତାରିଖ ଦିନ ରାଜୀବ ଭବନରେ ଦେଖା କଲୁ, କହିଲୁ ଆପଣଙ୍କ ଦ୍ୱାରା ହୋଇଥିବା ଭାଷା ଆଇନର ନିୟମାବଳୀ ଏ ପର୍ଯ୍ୟନ୍ତ ହୋଇପାରିନାହିଁ ଓ ସେ ଆଶ୍ଚର୍ଯ୍ୟ ହୋଇଯାଇଥିଲେ । ତୁରନ୍ତ ଏହା ଆଜି ହେଉ ବୋଲି ସରକାରୀ ଅଫିସରଙ୍କୁ କହିବାରୁ ତାହା ସେହିଦିନ ରାଜ୍ୟପାଳଙ୍କ ଦ୍ୱାରା ସ୍ୱୀକୃତି ଲାଭ କଲା ଏବଂ ଏହା ରାଜପତ୍ର ପ୍ରକାଶ ପାଇବା ଦିନଠାରୁ ଲାଗୁ ହେବ ବୋଲି ସ୍ପଷ୍ଟ ହେଲା । ସରକାର ତା. ୧୩ ଅଗଷ୍ଟ ୨୦୧୯ ରିଖରେ ମାନ୍ୟବର ରାଜ୍ୟପାଳଙ୍କ ଅନୁମୋଦନକ୍ରମେ ନିୟମାବଳୀ ରାଜପତ୍ର ଭାବେ ପ୍ରକାଶ କଲେ, ଯାହାକି ୧୭ ଅଗଷ୍ଟ ୨୦୧୯ ଠାରୁ ସମଗ୍ର ରାଜ୍ୟର ଭାଷା, ଓଡ଼ିଆ ସହିତ ଭାଷା ଆଇନ ଖିଲାପକାରୀଙ୍କ ବିରୋଧରେ ୧୯୬୨ (ସି .ସି.ଏ.ରୁଲ) ସରକାରୀ ଚାକିରୀ ସର୍ତ୍ତାବଳୀ ଅନୁଯାୟୀ ଦଣ୍ଡିତ ହେବେ ବୋଲି ସ୍ପଷ୍ଟ ହେଲା । ଏଥି ପାଇଁ ଭାଷା ଆନ୍ଦୋଳନ, ଓଡ଼ିଶା, ମାନ୍ୟବର ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକ ଏବଂ ମୁଖ୍ୟମନ୍ତ୍ରୀଙ୍କ ମୁଖ୍ୟ ପରାମର୍ଶଦାତା ଆର୍. ବାଲକ୍ରିଷ୍ଣନ୍‌ଙ୍କ ନିକଟରେ ସବୁଦିନ ପାଇଁ କୃତଜ୍ଞ ହୋଇ ରହିବ ।

ଆବାହକ
ଭାଷା ଆନ୍ଦୋଳନ, ଓଡ଼ିଶା



# ଓଡ଼ିଶାର ଦେଶୀୟ ଭାଷା ଓ ଓଡ଼ିଶା ସରକାର

**ବିଭୁତି ଭୂଷଣ କର**

ଭାଷାଭିତ୍ତିକ ରାଜ୍ୟ ଓଡ଼ିଶାର ସରକାରୀ ଭାଷା ଓଡ଼ିଆ ହେଲେବି କେବଳ ଯେ ଓଡ଼ିଆ ଭାଷା ହିଁ ଓଡ଼ିଶାରେ ବ୍ୟବହାର ହୁଏ, ତାହା ନୁହେଁ । କଥାରେ ଅଛି 'ବାଉନ ବଜାର ତେପନ ଗଳି ।' ଠିକ୍ ସେମିତି ପ୍ରତି ପାହୁଣ୍ଡରେ ଗୋଟିଏ ଗୋଟିଏ ଭାଷା ଯାହାକୁ ଆମେ କହୁଛେ ଦେଶୀୟ/ଦେଶଜ ଭାଷା ବା ମାତୃଭାଷା । ମା'ର ମୁଖ ନିଃସୃତ ଭାଷାକୁ ଆମେ ମାତୃଭାଷା ଭାବେ ପରିଗଣିତ କରିଥାଉ । ଏହି ମାତୃଭାଷାର ସୁରକ୍ଷା ଆମର ପ୍ରଥମ ଓ ପରମ କର୍ତ୍ତବ୍ୟ ହୋଇଥିବା ବେଳେ ସରକାରଙ୍କର ମଧ୍ୟ ଏଥିରେ ସହଭାଗିତା ସହିତ ଭିତ୍ତିଭୂମି ଓ ପ୍ରଶିକ୍ଷଣର ବେଶ୍ ଆବଶ୍ୟକତା ରହିଥାଏ । ଓଡ଼ିଆ ଜାତିର ପ୍ରତିବଦ୍ଧତା ଓ ତତ୍କାଳୀନ ନେତୃତ୍ୱଙ୍କ ଦୀର୍ଘ ଦିନର ଉଦ୍ୟମ ଇଂରେଜ ସରକାରକୁ ବାଧ୍ୟ କରିଥିଲା ଓଡିଶାକୁ ଭାଷାଭିତ୍ତିକ ରାଜ୍ୟର ମାନ୍ୟତା ଦେବା ପାଇଁ । ସେମାନେ ଜାଣିଥିଲେ ଓଡ଼ିଆମାନଙ୍କର ମାଟି-ମନସ୍କତା, ଶକ୍ତି, ସାମର୍ଥ୍ୟ, ଏକତା, ମାତୃଭୂମି ଓ ମାତୃଭାଷାର ପ୍ରଗାଢ ମମତ୍ୱବୋଧ ଏମାନଙ୍କୁ ଏକ ରଜ୍ଜୁରେ ବାନ୍ଧି ରଖିପାରିଛ । ଏପରିକି ଦେଶ ସ୍ୱାଧୀନ ହେବା ପରେ ସାମ୍ବିଧାନିକ ବିଧି ଅନୁଯାୟୀ ଓଡ଼ିଶାର ସରକାରୀ ଭାଷା ଓଡ଼ିଆ ହେବା ପାଇଁ ୧୯୪୮ ଏବଂ ୧୯୫୪ରେ ପ୍ରସ୍ତାବ ଓ ଆଇନ ପାରିତ ହେବା ପରେ ବିଧି ମୁତାବକ ସରକାରୀ ଭାଷା ଓଡ଼ିଆ ହେବା ପାଇଁ ଦୀର୍ଘ ବର୍ଷ ଲାଗିଥିଲା । ଓଡ଼ିଆ ପ୍ରାଣମାନଙ୍କର ଉଦ୍ୟମ, ଆନ୍ଦୋଳନ, ମାନ୍ୟବର ମୁଖ୍ୟମନ୍ତ୍ରୀଙ୍କ ସହ ବାରମ୍ବାର ଆଲୋଚନା, ବିଧାନସଭାରେ ବାରମ୍ବାର ଆଇନ ସଂଶୋଧନ ଭାଷା ଆନ୍ଦୋଳନର ନୀତିଗତ ଗାନ୍ଧିବାଦୀ ଆନ୍ଦୋଳନ ଫଳରେ ସରକାର ୧୭ ଅଗଷ୍ଟ ୨୦୧୯ରେ ମାନ୍ୟବର ରାଜ୍ୟପାଳଙ୍କ ହସ୍ତାକ୍ଷର ପରେ ରାଜପତ୍ର ପ୍ରକାଶିତ ହେଲା । କିନ୍ତୁ ମାତୃଭାଷାର ମମତା କାହାକୁ କେବେହେଲେ ଅଣଦେଖା କରିପାରିବ ନାହିଁ, ସେହି ଭାବରେ ଓଡ଼ିଶାର ଦେଶୀୟ (ଆଦିବାସୀ ) ଭାଷାଗୁଡିକର ସୁରକ୍ଷା ପାଇଁ ସରକାର ହାତକୁ ନେଇଛନ୍ତି । ଓଡିଶା ସରକାରଙ୍କ ଭାଷା ପ୍ରତିଷ୍ଠାନ ଦେଶୀୟ ଭାଷା ପାଇଁ ଅନେକ ପଦକ୍ଷେପ ନେଇଛନ୍ତି । ସେଥିମଧ୍ୟରୁ ଆଦିବାସୀ ଭାଷାରେ ଓଡ଼ିଆ ପାଠ୍ୟପୁସ୍ତକ ପ୍ରଣୟନ (ବଣ୍ଡା), ପ୍ରଶାସନିକ ଶବ୍ଦକୋଷ (ପରିବର୍ଦ୍ଧିତ ଓ ପରିମାର୍ଜିତ), ଆଦର୍ଶ ପୁସ୍ତକ ଅଫିସ୍ ସମ୍ବନ୍ଧିୟ ନଥି ପ୍ରସ୍ତୁତି, କଥିତ ଓଡ଼ିଆ ଶବ୍ଦକୋଷ, ଯୋଗାଯୋଗର ଭାଷା ଓଡ଼ିଆ, ଓଡ଼ିଶାର ଜନଜାତି: ଏକ ସାମାଜିକ ଓ ସାଂସ୍କୃତିକ ଅଧ୍ୟୟନ ପ୍ରଭୃତି ପୁସ୍ତକ ଭେଟି ଦେଇଥିବା ବେଳେ, ଆଦିବାସୀ ଭାଷା ଓ ସଂସ୍କୃତି ଏକାଡେମୀ, ଅନୁସୂଚିତ ଜନଜାତି ଓ ଅନୁସୂଚିତ ଜାତି ଉନ୍ନୟନ, ସଂଖ୍ୟାଲଘୁ ସମ୍ପ୍ରଦାୟ ଓ ପଛୁଆବର୍ଗ କଲ୍ୟାଣ ବିଭାଗ, ଓଡିଶା ସରକାରଙ୍କ ଦ୍ୱାରା ଦେଶୀୟ ଭାଷାର ସଂରକ୍ଷଣ ପାଇଁ ବ୍ୟାପକ ଭାବେ କାର୍ଯ୍ୟ କରିଆସୁଛନ୍ତି । ମାନ୍ୟବର ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକ ଓଡ଼ିଶାର ଦାୟିତ୍ୱ

ନେବା ପରଠାରୁ ଏହି ସବୁ ଭାଷାର ଗୁରୁତ୍ୱକୁ ଉପଲବ୍ଧି କରି ସଂସ୍କୃତି ଓ ପରମ୍ପରା , ସମାଜ ଓ ସଂସ୍କୃତି, ସାମାଜିକ ଓ ସାଂସ୍କୃତିକ, ସଂସ୍କୃତି, ଗଳ୍ପ, ପିଲାଙ୍କ ଗଳ୍ପ, ଆତ୍ମ ଜୀବନୀ, କବିତା, ଉପନ୍ୟାସ , ଜ୍ଞାନକୋଷ, ସାଂସ୍କୃତିକ ବିଶେଷତା, ମାନଚିତ୍ର ,ଶିକ୍ଷା ଓ ସଶକ୍ତି କରଣ, ଶବ୍ଦକୋଷ, ପ୍ରଶିକ୍ଷଣ ପୁସ୍ତିକା, ତ୍ରିଭାଷୀ ପ୍ରଶିକ୍ଷଣ ପୁସ୍ତିକା, ଭାଷା ପ୍ରଶିକ୍ଷଣ ସମ୍ବନ୍ଧୀୟ ଅତିରିକ୍ତ ପଠନ ପୁସ୍ତିକା, ବହୁଭାଷୀ ଶିକ୍ଷା ଆଧାରିତ ପୁସ୍ତକାବଳୀ ଏବଂ ତ୍ରି – ଭାଷୀ ଶିକ୍ଷଣ ପୁସ୍ତିକା ପ୍ରକାଶ କରି ଦେଶିୟ ଭାଷାଭାଷୀମାନଙ୍କୁ ମୁଖ୍ୟସ୍ରୋତକୁ ଆଣିବା ବ୍ୟାପକ ପ୍ରୟାସ କରିବା ସହିତ ଆଦି ଭାଷାର ସୁରକ୍ଷା ଉପରେ ପ୍ରାଧାନ୍ୟ ଦେଇଆସୁଛନ୍ତି ।

ବିଶେଷ ଭାବେ ଆଦିବାସୀ ଅଞ୍ଚଳରେ କାର୍ଯ୍ୟରତ ପ୍ରଶାସନିକ କର୍ମଚାରୀ, ସମାଜସେବୀ ତଥା ଶିକ୍ଷକମାନଙ୍କୁ ଆଦିବାସୀ ଭାଷାର ଶିକ୍ଷା ପ୍ରଶିକ୍ଷଣ, ସର୍ବେକ୍ଷଣ, ଅଧ୍ୟୟନ, ଭାଷାର ବ୍ୟାକରଣ, ଶବ୍ଦକୋଷ ସଂକଳନ, ମୁଖ୍ୟସ୍ରୋତକୁ ଆସିବାକୁ ହେଲେ ଓଡ଼ିଶାର ମୂଳ ଓ ସରକାରୀ ଭାଷା ସହିତ ସଂଯୋଗ ସ୍ଥାପନ, ସଂସ୍କୃତିର ଆଦାନ ପ୍ରଦାନ ଯେମିତି ନୃତ୍ୟ, ସାହିତ୍ୟ, କଳା, ଶିଳ୍ପ, ବାଣିଜ୍ୟ, ଲୋକ ସାହିତ୍ୟ ପ୍ରଭୃତି କର୍ମଶାଳା ମାଧ୍ୟମରେ ଦୂରତ୍ୱ କମ୍ କରିବା ପ୍ରଥମ ପ୍ରାଥମିକତା ରହିଥିବା ବେଳେ ରାଜ୍ୟ ସରକାର ଆଦିବାସୀ ଭାଷା ଓ ସଂସ୍କୃତି ଏକାଡେମୀ ମାଧ୍ୟମରେ ଭାବ ବିନିମୟ କରିବା ଉପରେ ସରକାରଙ୍କ ପକ୍ଷରୁ ବିଶେଷ ଭାବେ ଧ୍ୟାନ ଦିଆଯାଉଛି ।

ପୌରାଣିକ ଯୁଗ ସମେତ ରାମାୟଣ ଓ ମହାଭାରତ ଯୁଗକୁ ଅନୁଶୀଳନ କଲେ ଜଣାଯାଏ ଯେ, ଆଦିବାସୀ ସମାଜର ଏକ ଉନ୍ନତ ସାଂସ୍କୃତିକ ପରମ୍ପରା ରହିଆସିଛି । ଯାହାକି ଓଡ଼ିଶାରେ ପ୍ରାୟତଃ ଦେଖିବାକୁ ମିଳେ । ଯେମିତି କିମ୍ବଦନ୍ତୀ, ଲୋକ କାହାଣୀ, ଲୋକ ସଙ୍ଗୀତ, ଲୋକକଳା, ନୃତ୍ୟ ଓ ନାଟକ ମାଧ୍ୟମରେ ପ୍ରଚଳିତ ହୋଇଆସୁଛି । ଏହି ଲୋକକଳା ଓ ଲୋକ ସଙ୍ଗୀତ ମାଧ୍ୟମରେ ପ୍ରଚାରିତ ଓ ପ୍ରସାରିତ ହୋଇଆସୁଛି, କିନ୍ତୁ ସାନ୍ତାଳୀ, ସଉରା ଭାଷା ଭଳି ଲିପି ପ୍ରାୟ ଅନ୍ୟ ଭାଷାମାନଙ୍କର ଇତିହାସ ପୃଷ୍ଠାରେ ଅଲିଖିତ ଭାବରେ ରହିଆସିଛି । ଏହି ଓଡ଼ିଆ ଦେଶିୟ ଭାଷାର ସଂରକ୍ଷଣ ତଥା ପ୍ରଚାର ପ୍ରସାର ପାଇଁ ସରକାରଙ୍କର ପ୍ରାଥମିକତା ରହିଥିବା ବେଳେ କ୍ରମାଗତ ଭାବେ ପ୍ରଶାସନିକ କର୍ମକର୍ତ୍ତା ଓ ପ୍ରାଥମିକ ଶିକ୍ଷକମାନଙ୍କୁ ନିୟମିତ ତାଲିମ ପ୍ରଦାନ କରାଯାଉଛି । ଓଡ଼ିଶାର ପ୍ରଚଳିତ ଆଦିବାସୀ ଭାଷା ସମୂହର ସୁରକ୍ଷା ପାଇଁ ବ୍ୟାକରଣ, ଶବ୍ଦକୋଷ, ଲୋକ ସାହିତ୍ୟ ସହାୟକ ପୁସ୍ତିକା, ଔପଭାଷିକ ଶବ୍ଦକୋଷ, ସାନ୍ତାଳୀ-ଓଡ଼ିଆ ଅଭିଧାନ ସହିତ ପ୍ରାୟ ୨୧ଟି ଭାଷାର ସଉରା, ସାନ୍ତାଳୀ, ସାଦରୀ, ଓରାଓଁ, ମୁଣ୍ଡା, କୁଭି, କୁଇ, କୋୟା, କିସାନ, ଖଡ଼ିଆ, ଜୁଆଙ୍ଗ, ହୋ, ଗୋଣ୍ଡି, ଗଦବା, ଡିଡାୟୀ, ବଣ୍ଡା, ବିନଝାଲ, ଭୁଞ୍ଜିଆ, ଭୂମିଜ, ଭୂୟାଁ, ଭତରୀ-ଦେଶିୟ ପ୍ରଭୃତି ତ୍ରିଭାଷୀ ଶିକ୍ଷଣୀୟ ପୁସ୍ତିକା ଓ ଶବ୍ଦକୋଷ ପ୍ରକାଶିତ ହୋଇଛି ।

ନବୀନ ବାବୁ ଓଡ଼ିଶାର କାର୍ଯ୍ୟଭାର ହାତକୁ ନେବା ଦିନଠାରୁ ଅର୍ଥାତ ୨୦୦୦ ମସିହାରୁ ବାଥୁଡି ଲୋକ ସାହିତ୍ୟ, କୁଟିଆ କନ୍ଧ, ଡଙ୍ଗରିଆ କନ୍ଧ, ମାଙ୍କିଡିଆ, ହୋ ଲୋକ ସାହିତ୍ୟ, ଲୋଧା ସଂସ୍କୃତି ଓ ଲୋକ ସାହିତ୍ୟ, ଭୂମିଜ ଲୋକ ସଂସ୍କୃତି, ଧାରୁଆ ଲୋକ ସଂସ୍କୃତି, ବଣ୍ଡା ପରମ୍ପରା ଓ ଜ୍ଞାନକୌଶଳ, ହୋ ପରମ୍ପରା ଓ ଜ୍ଞାନ କୌଶଳ, ପାରେଙ୍ଗା ଭାଷା ଶିକ୍ଷଣ ପୁସ୍ତିକା, ପରଜା ଭାଷା ଶିକ୍ଷଣ ପୁସ୍ତିକା, ହଲବା ଭାଷା ଶିକ୍ଷଣ ପୁସ୍ତିକା, ଧାରୁଆ ଭାଷା ଶିକ୍ଷଣ ପୁସ୍ତିକା, ସାନ୍ତାଳ ଜ୍ଞାନକୌଶଳ, ଜୁଆଙ୍ଗ ଲୋକକଥା, ରାଜୁଆର ପରିଚିତି, ଜତାପୁ ଜୀବନଧାରା, ଟାଣ୍ଡାର ଜୀବନ, ଦେଶିୟ ଢଗ ଢ଼ମାଳି, ଓଡ଼ିଶାର ପ୍ରମୁଖ ଜନଜାତିଙ୍କ ଖାଦ୍ୟରୁଚି ଓ ଖାଦ୍ୟାଭ୍ୟାସ, ଦେଶିୟ ଜ୍ଞାନକୋଷ, ପାରେଙ୍ଗା ଜୀବନଧାରା, ଆଦିବାସୀ ଜୀବନଚର୍ଯ୍ୟା, ଆଦିବାସୀ ଚିତ୍ରକଳା, ଓଡ଼ିଶାର ପ୍ରାଚୀନତମ ଜନଜାତି, ଜୁଆଙ୍ଗ ଲୋକସାହିତ୍ୟ, କେନ୍ଦୁଝରର ବିରଳ ଜନଜାତି ଜୁଆଙ୍ଗ,

ବଣ ମୁଲକର ସଙ୍ଗୀତ, ଆଦିବାସୀ ପର୍ବପର୍ବାଣି, ବିପ୍ଳବୀ ଲକ୍ଷ୍ମଣ ନାଏକ, କୋରାପୁଟ ଅଞ୍ଚଳର ଆଦିବାସୀ ଭାଷା ଓ ସଂସ୍କୃତି, ଶାଳବନର ଜନ, କନ୍ଧମାଳର ଡମ ଓ ଲୋକ ସଂସ୍କୃତି, ବିଂଝାଲ ପ୍ରଭୃତି ପୁସ୍ତକ ମାଧ୍ୟମରେ ଓଡ଼ିଶାର ସମସ୍ତ ଦେଶୀୟ ଭାଷାର ସଂରକ୍ଷଣ ପାଇଁ କାର୍ଯ୍ୟକ୍ରମ ଚାଲୁରହିଛି ।

ପ୍ରାଥମିକ ଶ୍ରେଣୀର ଶିକ୍ଷା ପାଇଁ ଛବି ମାଧ୍ୟମରେ ଦେଶିୟ ଭାଷାର ପ୍ରଚାର ପ୍ରସାର ପାଇଁ ସରକାର ଅନେକ ପଦକ୍ଷେପ ନେଇଛନ୍ତି । ସେଥିରେ ଗଳ୍ପ, କ୍ରୀଡା, ନିତ୍ୟ ବ୍ୟବହାର୍ଯ୍ୟ ସାମଗ୍ରୀ, ଫୁଲ ଓ ଫଳ, ଜାଣିବା କଥା, ପୌରାଣିକ, ଚାଷବାସ, ଆମ ସଂସ୍କୃତି ପ୍ରଭୃତି ପିଲାମାନଙ୍କ ଶିକ୍ଷା ପାଇଁ ଅତ୍ୟନ୍ତ ମହତ୍ତ୍ୱ ରଖେ । ଅନୁରୂପ ଭାବେ ଓଡ଼ିଶାର ସମସ୍ତ ଭାଷାର ସୁରକ୍ଷା ପାଇଁ ସରକାରୀ ପ୍ରୋତ୍ସାହନ ସହିତ ଜନସଚେତନତା ମଧ୍ୟ ଆବଶ୍ୟକ । ଏ ଦିଗରେ ଓଡ଼ିଶା ସରକାରଙ୍କ ସକାରାତ୍ମକ ମନୋଭାବ ଦେଶୀୟ ଭାଷାଗୁଡିକର ସଂରକ୍ଷଣ ତଥା ପ୍ରଚାର ପ୍ରସାର ଦିଗରେ ସର୍ବାଦୌ ଆଶା ସଞ୍ଚାର କରିଛି ।

ରାଜ୍ୟ ସଭାପତି
ଉତ୍କଳ ସାମ୍ବାଦିକ ସଂଘ, ଓଡ଼ିଶା



# ଓଡ଼ିଆ ଭାଷା ସାହିତ୍ୟର ଜାଗ୍ରତ ପ୍ରହରୀ ଫକୀର ମୋହନ

ପଣ୍ଡିତ ତ୍ରିଲୋଚନ ମିଶ୍ର

ଜଣେ ସୁଦକ୍ଷ ସେନାପତି ଯେପରି ନିଜର ଉପସ୍ଥିତ ବୁଦ୍ଧି, ସାହସ, ଶକ୍ତି ଦ୍ୱାରା ଯୁଦ୍ଧକ୍ଷେତ୍ରରେ ବିଜୟର ପତାକା ଉଡାଇଥାଏ, ଠିକ୍ ସେହିପରି ବ୍ୟାସକବି ଫକୀର ମୋହନ ସେନାପତି ଆମ ମାତୃଭାଷାକୁ ବିଜୟ ମୁକୁଟ ପିନ୍ଧାଇଥିଲେ କଠିନ ସଂଗ୍ରାମ କରି । ଯଥାର୍ଥରେ ସେହିଁ ଓଡ଼ିଆ ଭାଷା ସାହିତ୍ୟର ଜାଗ୍ରତ ପ୍ରହରୀ । ମୈତ୍ରୀ ଶୁକ୍ଳଙ୍କ ରଚିତ ଫକୀର ମୋହନଙ୍କ ଆତ୍ମଜୀବନୀ ଚରିତର ବଙ୍ଗଭାଷା ଅନୁବାଦ ପୁସ୍ତକ ମୁଖବନ୍ଧରେ ବରିଷ୍ଠ ସାରସ୍ୱତ ସାଧକ ଅନ୍ନଦା ଶଙ୍କର ରାୟ ଲେଖିଥିଲେ– 'ଏପରି ଗଦ୍ୟ ଓଡ଼ିଆ ଭାଷାରେ କେହି କେବେ ଲେଖି ନାହାନ୍ତି । ଚେଷ୍ଟା କଲେ ମଧ୍ୟ ଲେଖିପାରିବେ ନାହିଁ । ଫକୀର ମୋହନଙ୍କୁ ନିଜର ଆଦ୍ୟ ଗୁରୁ ମାନୁଥିବା ଯଶସ୍ୱୀ ଲେଖକ ମନୋଜ ଦାସ 'ରେବତୀ' ଗଳ୍ପ ସମ୍ପର୍କରେ କହିଛନ୍ତି– 'ଏତେବଡ କ୍ଲାସିକ୍ ଗପ ବିଶ୍ୱ ଇତିହାସରେ ବିରଳ' । ମାତ୍ର ଚାଟଶାଳୀ ପାଠରେ ପାଠ ଡୋରି ବାନ୍ଧିଥିବା ଫକୀର ମୋହନଙ୍କ ଲେଖା ପଢି ବହୁ ସାରସ୍ୱତ ଗବେଷକ ସୁଦୂର ଇଂଲଣ୍ଡ, ଜର୍ମାନ୍, ଫ୍ରାନ୍ସ ମାଟିରୁ ତାଙ୍କ ଜନ୍ମମାଟି ବାଲେଶ୍ୱର ଜିଲ୍ଲାକୁ କ୍ରମାଗତ ଆସିଛନ୍ତି । ଏହା କ'ଣ ଓଡ଼ିଆ ଭାଷା ଓ ଓଡ଼ିଆମାନଙ୍କ ପାଇଁ ଗର୍ବର ବିଷୟ ନୁହେଁ ।

କେବଳ ଭାଷା ସଂଗ୍ରାମ ନୁହେଁ, ଓଡ଼ିଶାକୁ ଓଡ଼ିଆ ଭାଷାଭିତ୍ତିକ ସ୍ୱତନ୍ତ୍ର ପ୍ରଦେଶ ଗଠନ କରିବା ପାଇଁ ଫକୀର ମୋହନ ସେନାପତିଙ୍କ ଅବଦାନ ଅବିସ୍ମରଣୀୟ । ୧୮୬୬ ମସିହା ନଅଙ୍କ ଦୁର୍ଭିକ୍ଷରେ ଓଡ଼ିଆ ଜାତିର ମେରୁଦଣ୍ଡ ଭାଙ୍ଗିଗଲା । ଏ ସୁଯୋଗରେ ବଙ୍ଗଭାଷାବାସୀ ପଡୋଶୀମାନେ ଇଂରେଜମାନଙ୍କ କଚିରି ଦଖଲ କରିଗଲେ । ଓଡ଼ିଆ ଏକ ଭାଷା ନୁହେଁ, ଏଠାରେ ତୁରନ୍ତ ବଙ୍ଗଭାଷା ପ୍ରଚଳନ ପାଇଁ ସରକାରୀ ନିର୍ଦ୍ଦେଶନାମା ବାହାର କରିଦେଲେ । ମାତ୍ର ଦୃଢମନା ଓଡ଼ିଆ ଫକୀର ମୋହନ ଆଦୌ ବିବ୍ରତ ନ ହୋଇ ନିଜ ସଭାସମିତିରେ କହି ଚାଲିଲେ ବଙ୍ଗଭାଷାର ଜନକ ପଣ୍ଡିତ ମୃତ୍ୟୁଞ୍ଜୟ ବିଦ୍ୟାଳଂକାର ଜଣେ ଓଡ଼ିଆ ଥିଲେ । ବଙ୍ଗଭାଷା ପାଇଁ ସେ ପ୍ରଥମ ବ୍ୟାକରଣ 'ପ୍ରବୋଧ ଚନ୍ଦ୍ରିକା', ବଙ୍ଗଭାଷା ଇତିହାସ 'ରାଜାବଳି' ରଚନା କରିଥିଲେ । ଫୋର୍ଟ ଉଇଲିୟମ୍ କଲେଜର ମୁଖ୍ୟ ଅଧ୍ୟାପକ ପଦ ମଣ୍ଡନ କରି ଇଂରେଜ ପ୍ରଶାସକମାନଙ୍କୁ ବଙ୍ଗଭାଷା, ହିନ୍ଦୀ ଓ ଓଡ଼ିଆ ଭାଷା ପଢାଉଥିଲେ । ଏପରିକି ବିଶ୍ୱପ୍ରସିଦ୍ଧ ବଙ୍ଗୀୟ ମହାପୁରୁଷ ଶ୍ରୀ ଶ୍ରୀ ଚୈତନ୍ୟ ଦେବଙ୍କ ପିତା ଥିଲେ ଉତ୍କଳୀୟ ବ୍ରାହ୍ମଣ ଜଗନ୍ନାଥ ମିଶ୍ର । ଏ ସମସ୍ତ ତଥ୍ୟ ସମ୍ବଳିତ ଏକ ଦରଖାସ୍ତ ସେ ତତ୍କାଳୀନ ବାଲେଶ୍ୱର ଜିଲ୍ଲାପାଳ ବହୁଭାଷାବିତ୍ ଜନ୍ ବିମ୍ସଙ୍କୁ ଦେଇ ପ୍ରତିକାର ଲୋଡିଲେ । ଜନ୍ ବିମ୍ସ ନିଜ ମତାମତରେ ଲେଖିଲେ ତାଙ୍କ ଗବେଷଣାରୁ ସେ ଜାଣିଛନ୍ତି ଓଡ଼ିଆ ଏକ ଶ୍ରେଷ୍ଠ ଆର୍ଯ୍ୟଭାଷା । ଏ ଭାଷାକୁ ଉପେକ୍ଷା କରାଯାଇପାରିବ ନାହିଁ । ଜନ୍ ବିମ୍ସଙ୍କ ପତ୍ର ପାଇ ଓଡ଼ିଶାର କମିଶନର ଟି.ରେଭେନ୍ସା ନିଜର ଦୃଢ ସମର୍ଥନ ଜଣାଇ ଇଂରେଜ

ସରକାରଙ୍କ ପୂର୍ବ ନିର୍ଦ୍ଦେଶନାମାକୁ ଖାରଜ କରାଇଦେଲେ । ବଙ୍ଗୀୟ ଅଧିକାରୀମାନଙ୍କ ସମସ୍ତ ଚକ୍ରାନ୍ତକୁ ଏକା ସେନାପତି ଫକୀର ମୋହନ ପଣ୍ଡ କରିଦେଲେ । ସେତିକିରେ ନିରବ ନ ରହି ଓଡ଼ିଆ ବ୍ୟାକରଣ, ପାଠ୍ୟପୁସ୍ତକ, ଗଳ୍ପ, ମହାପୁରୁଷଙ୍କ ଜୀବନୀ ଉପନ୍ୟାସ ରଚନା କରି ସବୁ ସ୍ତରର ଅଭାବ ମେଣ୍ଟାଇ ଦେଲେ । ଏପରିକି ବାଲେଶ୍ୱରରେ ନିଜ ପ୍ରଚେଷ୍ଟାରେ ଛାପାଖାନା ବସାଇ ପୁସ୍ତକ ଛାପି ଓଡ଼ିଆ ବିଦ୍ୟାର୍ଥୀମାନଙ୍କ ଓ ଶିକ୍ଷକମାନଙ୍କର ଭରସାର କେନ୍ଦ୍ରବିନ୍ଦୁ ହୋଇଗଲେ । ତାଙ୍କର ଏଇ ଦୁଇଧାଡି ରଚନା ଓଡିଆ ଭାଷା ପଢିବାକୁ ସମସ୍ତଙ୍କୁ ଅନୁପ୍ରାଣିତ କରିଥିଲା । ଲେଖାଟି ଏପରି–

ଯେଉଁପାଠ ପଢିବାରେ ଦେଉ ଅଛ ମନ
ନ ବିଚାର ସେ ତ ନୁହେଁ ତୁମ୍ଭ ଗଣ୍ଠି ଧନ ।
ପଢ ଇଂରାଜୀ କେହି ମନା କରୁ ନାହିଁ
କିନ୍ତୁ ବାପା କାମକର ଜାତି କୁଳ ଚାହିଁ ।
ଘୃଣା କରୁଅଛ ମାତୃଭାଷା ପଢିବାକୁ
ହାୟ ହାୟ ଲାଜ କଥା କହିବି କାହାକୁ ।

ପ୍ରକୃତିବନ୍ଧୁ ଭବନ
ପ୍ରାଚୀ ବିହାର, କାକଟପୁର, ପୁରୀ



''ପାହିଲାଣି ଘୋର ତମସା ରଜନୀ
ଫୁଟିବ ଉତ୍କଳ ଭାଷା କମଳିନୀ''

- କବିବର ରାଧାନାଥ ରାୟ

